# HISTORY OF ENGLAND

*( In Oriya )*

**Part II.**

( From 1603 to 1938 )

BY

**A. K. Sarkar, B. A.**

*Assistant Head master*

PURI ZILLA SCHOOL

---

PUBLISHED BY

**Ch. L. N. Nanda**

THE SARASWATA BHANDAR

P. O. Chandnichauk, Cuttack.

**Revised Edition**

1939.

*Price—Annas fourteen only.*

# ସୂଚି-ପତ୍ର

## ଷ୍ଟୁଆର୍ଟ ରାଜବଂଶ



## ହାନୋଭାର ରାଜବଂଶ





# ଇଂଲଣ୍ଡର ଇତିହାସ

( ଦ୍ୱିତୀୟ ଭାଗ )

---

## ଷ୍ଟୁଆର୍ଟ ରାଜବଂଶ

( ରାଜଶକ୍ତି ସହିତ ପାର୍ଲିମେଣ୍ଟର ସଂଘର୍ଷ )

### ପ୍ରଥମ ଜେମସ୍

ଜନ୍ମ — ୧୫୬୬ । ରାଜତ୍ୱ — ( ୧୬୦୩ — ୧୬୨୫ ) = ୨୨ ବର୍ଷ

ଏଲିଜାବେଥଙ୍କ ମୃତ୍ୟୁ ଉତ୍ତାରେ **ସ୍କଟ**ଲଣ୍ଡର ରାଣୀ ମେରି ଷ୍ଟୁଆର୍ଟଙ୍କର ପୁତ୍ର ଜେମସ୍ ଇଂଲଣ୍ଡର ସିଂହାସନାରୋହଣ କଲେ । ସେ ସପ୍ତମ ହେନେରୀଙ୍କ ଜ୍ୟେଷ୍ଠା କନ୍ୟା ମାରଗାରେଟଙ୍କ ପ୍ରପୌତ୍ର ଥିବାରୁ ଇଂଲଣ୍ଡର ରାଜବଂଶ ସହିତ ତାହାଙ୍କର ସମ୍ବନ୍ଧ ଥିଲା ଏବଂ ସେହି ଅଧିକାରବଳେ ସେ ଇଂଲଣ୍ଡର ସିଂହାସନ ପ୍ରାପ୍ତ ହେଲେ । **ସ୍କଟ**ଲଣ୍ଡରେ ଗୋଟିଏ ପ୍ରବାଦ ଥିଲା ଯେ, ସେଠାର ଅଭିଷେକ ପ୍ରସ୍ତର (Stone of Scone) ଯେଉଁ ଦେଶକୁ ନୀତ ହେବ, **ସ୍କଟ**ଲଣ୍ଡର ରାଜା ସେହି ଦେଶର ସିଂହାସନ ପ୍ରାପ୍ତ ହେବେ । ପ୍ରଥମ ଏଡ୍‌ୱାର୍ଡଙ୍କ ଦ୍ୱାରା **ସ୍କଟ**ଲଣ୍ଡର ଅଭିଷେକପ୍ରସ୍ତର ଇଂଲଣ୍ଡକୁ ନୀତ ହୋଇଥିଲା । ସ୍କଟଲଣ୍ଡର ରାଜା ଷଷ୍ଠ ଜେମସ୍ ଇଂଲଣ୍ଡର ସିଂହାସନ ପ୍ରାପ୍ତ ହେବାରୁ ଉକ୍ତ ପ୍ରବାଦ ଏତେ ଦିନେ ସାର୍ଥକ ହେଲା । **ସ୍କଟ**ଲଣ୍ଡର ରାଜା ଜେମସ୍ ଇଂଲଣ୍ଡର ସିଂହାସନ ଅଧିରୋହଣ

ସିଂହାସନାରୋହଣ

କରିବାରୁ ଉଭୟ ଦେଶ ଏକ ରାଜାଙ୍କ ଅଧୀନ ହୋଇଥିଲା; କିନ୍ତୁ ଉଭୟ ଦେଶର ସ୍ୱତନ୍ତ୍ର ପାର୍ଲିମେଣ୍ଟ ଥିଲା ।

ଜେମସ୍ ଅତ୍ୟନ୍ତ ବିଦ୍ୱାନ ଓ ବୁଦ୍ଧିମାନ୍ ଥିଲେ ଏବଂ ତାହାଙ୍କର ଅନ୍ତଃକରଣ ସରଳ ଥିଲା । ଧର୍ମ ସମ୍ବନ୍ଧରେ ସେ ଅତ୍ୟନ୍ତ ଉଦାର ମତ ପୋଷଣ

ଚରିତ୍ର

କରୁଥିଲେ । କିନ୍ତୁ ସେ ଅତ୍ୟନ୍ତ ତୋଷାମୋଦପ୍ରିୟ ଥିଲେ ଓ କେତେକ ପ୍ରିୟପାତ୍ରଙ୍କ ଦ୍ୱାରା ସହଜରେ ଚାଳିତ ହେଉଥିଲେ । ସେ ଅତ୍ୟନ୍ତ ବ୍ୟାୟାମ ଓ ମୃଗୟାପ୍ରିୟ ଥିଲେ; କିନ୍ତୁ ତାଙ୍କ ଚରିତ୍ରରେ ପ୍ରକୃତିଗତ ଭୀରୁତା ଥିଲା । କଥିତ ଅଛି, ସେ ଉନ୍ମୁକ୍ତ ତରବାରି ଦର୍ଶନରେ ଭୀତ ହେଉଥିଲେ । ତାହାଙ୍କର ବିଶ୍ୱାସ ଥିଲା ଯେ, ରାଜା ଦେଶ ଶାସନ କରିବା ପାଇଁ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ; ସୁତରାଂ ରାଜା ସର୍ବଶକ୍ତିମାନ୍ । ଈଶ୍ୱରଙ୍କ ଶକ୍ତିକୁ ସୀମାବଦ୍ଧ କରିବା ଯେପରି ଦୋଷାବହ, ରାଜଶକ୍ତିର ସୀମା ନିର୍ଦ୍ଦେଶ କରିବା ମଧ୍ୟ ସେହିପରି ଦୋଷାବହ । ଜେମସ୍ ଅତ୍ୟନ୍ତ ବିଦ୍ୱାନ୍ ଓ ବୁଦ୍ଧିମାନ୍ ଥିଲେ ସତ୍ୟ; ମାତ୍ର ଅନେକ ସମୟରେ ସେ ପ୍ରିୟପାତ୍ରଙ୍କ ଦ୍ୱାରା ଚାଳିତ ହୋଇ ନିର୍ବୋଧ ତୁଲ୍ୟ କାର୍ଯ୍ୟ କରୁଥିଲେ । ସେଥିପାଇଁ ଫ୍ରାନ୍ସର ତତ୍କାଳୀନ ରାଜା ହେନରୀ ତାହାଙ୍କୁ ଖ୍ରୀଷ୍ଟିୟାନ୍ ଜଗତରେ ସର୍ବାପେକ୍ଷା ଅଧିକ "ପଣ୍ଡିତ-ମୂର୍ଖ" ଏହି ଆଖ୍ୟା ପ୍ରଦାନ କରିଥିଲେ ।

ଜେମସ୍ ସିଂହାସନ ଆରୋହଣ କରି ଏଲିଜାବେଥଙ୍କ ମନ୍ତ୍ରୀ ସାର ଉଇଲିୟମ୍ ସିସିଲଙ୍କର ପୁତ୍ର, ସାଲିସବରୀର ଆର୍ଲ ରବାର୍ଟ ସିସିଲଙ୍କୁ

ପ୍ରଧାନ ଷଡଯନ୍ତ୍ର ଓ ତାହାର ଆନୁଷଙ୍ଗିକ ଷଡଯନ୍ତ୍ର

ତାହାଙ୍କର ମନ୍ତ୍ରୀ ପଦରେ ନିଯୁକ୍ତ କରିଥିଲେ । ଏଥିରେ ଲର୍ଡ କବହାମ ଓ ସାର ୱାଲଟାର ରେଲେ ନାମକ ଦୁଇ ବ୍ୟକ୍ତି ଅସନ୍ତୁଷ୍ଟ ହୋଇ ସିସିଲଙ୍କୁ ପଦଚ୍ୟୁତ ଓ ଆରାବେଲା ଷ୍ଟୁଆର୍ଟଙ୍କୁ ଇଂଲଣ୍ଡର ସିଂହାସନ ପ୍ରଦାନ କରିବା ପାଇଁ ଗୋଟିଏ ଷଡ଼ଯନ୍ତ୍ର କରିଥିଲେ । ଏହି ସମୟରେ ୱାଟସନ ନାମକ ଏକ ଧର୍ମଯାଜକଙ୍କ ନେତୃତ୍ୱରେ କେତେକ

ରୋମାନ କାଥଲିକ ଓ ଲର୍ଡ଼ ଗ୍ରେଡ ଉଇଲଟନ ନାମକ ଏକ ବ୍ୟକ୍ତିଙ୍କ ନେତୃତ୍ୱରେ କେତେକ ପିଉରିଟାନ ମଧ୍ୟ ରାଜାଙ୍କଠାରୁ ଧର୍ମସଂକ୍ରାନ୍ତ କେତେକ ସୁବିଧା ଲାଭ କରିବା ପାଇଁ ଷଡଯନ୍ତ୍ର କରିଥିଲେ । ମାତ୍ର ଏହି ଷଡଯନ୍ତ୍ରଗୁଡ଼ିକ ଧରାପଡ଼ିବାରୁ ତାହାର ନେତାମାନେ ପ୍ରାଣଦଣ୍ଡ ପ୍ରାପ୍ତ ହୋଇଥିଲେ ।

ଏହି ସମୟରେ ଇଂଲଣ୍ଡର ଲୋକମାନେ ତିନ ପ୍ରଧାନ ଭାଗରେ ବିଭକ୍ତ ଥିଲେ । ୧ମ ଦଳ—ପିଉରିଟାନମାନେ; ସେମାନଙ୍କୁ ନୈଷ୍ଠିକ ଦେଶର ପ୍ରୋଟେଷ୍ଟାଣ୍ଟ ବୋଲି କୁହାଯାଇପାରେ; ସେମାନେ ବାଇବଲ ଦଳ ବିଳାସ, ବ୍ୟସନ, କ୍ରୀଡ଼ା, କୌତୁକ ସମସ୍ତ ତ୍ୟାଗକରି ଅତ୍ୟନ୍ତ ପବିତ୍ରଭାବରେ ଜୀବନଯାପନ କରୁଥିଲେ । ଏଲିଜାବେଥଙ୍କ ପ୍ରବର୍ତ୍ତିତ ଉପାସନା ପଦ୍ଧତିର କେତେକ ପରିବର୍ତ୍ତନ ସେମାନେ କାମନା କରୁଥିଲେ । ରାଜକ୍ଷମତା ଅପେକ୍ଷା ପାର୍ଲିମେଣ୍ଟର କ୍ଷମତା ଅଧିକ ବୋଲି ସେମାନଙ୍କର ବିଶ୍ୱାସ ଥିଲା । ୨ୟ ଦଳ—ଏପିସ୍କୋପେଲିଅନମାନେ—ସେମାନେ ଏଲିଜାବେଥଙ୍କ ପ୍ରବର୍ତ୍ତିତ ଉପାସନା ପଦ୍ଧତି ଅନୁସରଣ କରି "ହାଇ ଚର୍ଚ୍ଚ ପାର୍ଟି" ନାମରେ ଅଭିହିତ ହେଉଥିଲେ । ସେମାନଙ୍କ ଦ୍ୱାରା ଅନୁସୃତ ଇଂଲଣ୍ଡର ଗିର୍ଜାମାନ ବିଶପମାନଙ୍କ ଶାସନାଧୀନ ଥିଲା ଓ ସେମାନେ ରାଜଶକ୍ତିର ଉପାସକ ଥିଲେ । ୩ୟ ଦଳ—କାଥଲିକମାନେ—ସେମାନେ ଇଂଲଣ୍ଡରେ ପ୍ରବର୍ତ୍ତିତ ଉପାସନା ପଦ୍ଧତି ରୋମାନଚର୍ଚ୍ଚର ଅନୁକରଣରେ କରିବାକୁ ଉତ୍ସୁକ ଥିଲେ ଓ ରୋମର ପୋପଙ୍କ ଆନୁଗତ୍ୟ ସ୍ୱୀକାର କରୁଥିଲେ ।

ଏହି ତିନ ଦଳ ମଧ୍ୟରୁ ପ୍ରଥମ ଦଳ, ଅର୍ଥାତ୍ ପିଉରିଟାନମାନେ ଅତ୍ୟନ୍ତ କ୍ଷମତାଶାଳୀ ଥିଲେ । ତାହାର କାରଣ, ସେମାନଙ୍କ ମଧ୍ୟରୁ ଅନେକେ ବଣିକ ସମ୍ପ୍ରଦାୟର ଲୋକ ଥିଲେ ଏବଂ ବାଣିଜ୍ୟାଦିହେତୁ ସେମାନଙ୍କର ଆର୍ଥିକ ଅବସ୍ଥା ମଧ୍ୟ ଉନ୍ନତ ଥିଲା । ସେମାନଙ୍କ ମଧ୍ୟରୁ ଅନେକେ ନୂତନ ନିର୍ବାଚିତ ପାର୍ଲିମେଣ୍ଟର ସଭ୍ୟ ବା ପୃଷ୍ଠପୋଷକ ଥିଲେ । ଏଲିଜାବେଥ ଅତ୍ୟନ୍ତ

ଚେଲୁରଟାର ସହିତ ଏହି ଦୁଇଦଳ ମଧ୍ୟରେ ଶାନ୍ତିରକ୍ଷା କରୁଥିଲେ । ବିଶେଷତଃ ସେ ସମୟରେ ଇଂଲଣ୍ଡ, ସ୍ପେନ ପ୍ରଭୃତି ବୈଦେଶିକ ଶତ୍ରୁମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିବାରୁ ଲୋକମାନଙ୍କର ଅନ୍ୟ କୌଣସି ବିଷୟ ପ୍ରତି ମନୋନିବେଶ କରିବାର ଅବସର ନ ଥିଲା । କିନ୍ତୁ ଯେମସ୍‌ଙ୍କ ସମୟରେ ଇଂଲଣ୍ଡର ବୈଦେଶିକ ଶତ୍ରୁ-ଆଶଙ୍କା ଦୂର ହୋଇଥିଲା । ତାହାର ଚିରଶତ୍ରୁ ସ୍କଟଲଣ୍ଡ ମଧ୍ୟ ମିତ୍ରରୂପେ ପରିଣତ ହୋଇଥିଲା; ଦେଶରେ ଶାନ୍ତି ବିରାଜିତ ଥିଲା । ଦେଶର ଲୋକମାନଙ୍କର ଆର୍ଥିକ ଅବସ୍ଥା ମଧ୍ୟ ଉନ୍ନତ ଥିଲା । ସୁତରାଂ ରାଜାଙ୍କ କାର୍ଯ୍ୟକଳାପ ଓ ଦେଶର ଶାସନ ପ୍ରତି ସେମାନଙ୍କର ତୀବ୍ର ଦୃଷ୍ଟି ଥିଲା ।

**ଧର୍ମକଳହ (ହାମ୍ପଟନ କୋର୍ଟ କନ୍‌ଫରେନ୍‌ସ)—୧୬୦୪**

ଜେମ୍‌ସ୍ ସିଂହାସନାରୋହଣ କାଳରୁ ଏହି ଦୁଇଦଳ ସ୍ୱ ସ୍ୱ ଦଳ ପାଇଁ କେତେକ ସୁବିଧା ପ୍ରାପ୍ତିର ଆଶା କରୁଥିଲେ । ଯେମସ୍ ସ୍କଟଲଣ୍ଡର ପିଉରିଟାନ ବା ପ୍ରେସବାଇଟେରିଆନ ଧର୍ମମତରେ ଶିକ୍ଷା ପ୍ରାପ୍ତ ହୋଇଥିବାରୁ ଇଂଲଣ୍ଡର ପିଉରିଟାନମାନେ ଆଶା କରୁଥିଲେ ଯେ, ନୂତନ ରାଜା ତାହାଙ୍କୁ ଅନେକ ସୁବିଧା ପ୍ରଦାନ କରିବେ । ଯେମସ୍‌ଙ୍କ ମାତା ମେରୀ ଷ୍ଟୁଅର୍ଟ କାଥଲିକ୍ ଥିବାରୁ କାଥଲିକମାନେ ଆଶା କରୁଥିଲେ ଯେ, ରାଜା ସେମାନଙ୍କୁ ଯଥେଷ୍ଟ ସୁବିଧା ପ୍ରଦାନ କରିବେ । କିନ୍ତୁ ଯେମସ୍ ପିଉରିଟାନମାନଙ୍କ ପ୍ରତି ଅତ୍ୟନ୍ତ ବିରୂପ ଥିଲେ । କାରଣ ପିଉରିଟାନମାନେ ପ୍ରଜାଶକ୍ତିର ଓ ପାର୍ଲିମେଣ୍ଟର ପୃଷ୍ଠପୋଷକ ଥିଲେ ଏବଂ ବିଶପମାନଙ୍କ ଅଧୀନରେ ରହିବାକୁ ଅସ୍ୱୀକୃତ ଥିଲେ । ଯେମସ୍ ବୁଝିଥିଲେ ଯେ, ବିଶପମାନେ ରାଜାଙ୍କର ପ୍ରଧାନ ସହାୟ । ସୁତରାଂ ବିଶପମାନଙ୍କ ଶତ୍ରୁ ରାଜାଙ୍କର ମଧ୍ୟ ଶତ୍ରୁ । ଅତଏବ ବିଶପମାନଙ୍କ ଶତ୍ରୁକୁ ପ୍ରଶ୍ରୟ ଦେଲେ ରାଜାଙ୍କର ଶତ୍ରୁମାନେହିଁ ପ୍ରଶ୍ରୟ ପାଇବେ । ତେଣୁ ସେ ବିଶପ ଓ ହାଇଚର୍ଚ୍ଚ ଦଳର ପକ୍ଷ ସମର୍ଥନପୂର୍ବକ ପିଉରିଟାନମାନଙ୍କ ପ୍ରତି କଠୋରତା ଅବଲମ୍ବନ କରୁଥିଲେ । ତାହା ହେତୁ, ଜେମ୍‌ସ୍ ସିଂହାସନ

ଆରୋହଣ କଲାରୁ ପିଉରିଟାନମାନେ କେତେକ ସୁବିଧା ପ୍ରାପ୍ତ ଆଶାରେ ରାଜାଙ୍କ ନିକଟରେ ଏକ ଆବେଦନ କରିଥିଲେ । ତାହା "ମିଲିନାରି ପିଟିସନ" (Millenary Petition) ନାମରେ ଖ୍ୟାତ । ରାଜା ଏହି ବିଷୟର ମୀମାଂସା ପାଇଁ ବିଶପ ଓ କେତେକ ପିଉରିଟାନମାନଙ୍କୁ ଯେଉଁ "ହାମ୍ପଟନକୋର୍ଟ" ନାମକ ସ୍ଥାନରେ ଗୋଟିଏ ସଭା କରିଥିଲେ । ଏହି ସଭାରେ ରାଜା ବିଶପମାନଙ୍କ ପକ୍ଷ ସମର୍ଥନ କରି ପିଉରିଟାନମାନଙ୍କ ତର୍କରେ ବିରକ୍ତ ହୋଇ ଆଦେଶ ଦେଇଥିଲେ ଯେ, ଯଦି ପିଉରିଟାନମାନେ ଇଂଲଣ୍ଡର ପ୍ରତିଷ୍ଠିତ ହାଇଚର୍ଚ୍ଚର ଅନୁସରଣ ନ କରନ୍ତି, ତାହାହେଲେ ସେମାନେ ଦେଶରୁ ବହିଷ୍କୃତ ହେବେ । ଏଥି ଉତ୍ତାରେ ଉକ୍ତ ସଭା ଭଙ୍ଗ ହେଲା । ଏହି ସଭା ଫଳରେ ବାଇବଲ ପୁନର୍ବାର ଇଂରାଜୀରେ ଅନୁବାଦିତ ହୋଇଥିଲା । ଏହା "ଅଥରାଇଜଡ୍ ଭରସନ୍"(Authorised version) ନାମରେ ଖ୍ୟାତ । ଏପର୍ଯ୍ୟନ୍ତ ଏହି ବାଇବଲ ଧର୍ମମନ୍ଦିର ବା ଗିର୍ଜାମାନଙ୍କରେ ବ୍ୟବହୃତ ହେଉଅଛି ।

ରାଜା ଏହି ସଭାରେ ପିଉରିଟାନମାନଙ୍କ ଉପରେ କ୍ରୁଦ୍ଧ ହୋଇ ସେମାନଙ୍କର ଦଶଜଣ ନେତାଙ୍କୁ କାରାରୁଦ୍ଧ କରି ଦେଲେ। ପିଉରିଟାନ ଧର୍ମଯାଜକମାନେ ଇଂଲଣ୍ଡର ପ୍ରତିଷ୍ଠିତ "ହାଇଚର୍ଚ୍ଚ"ର ଉପାସନା ଅନୁସରଣ କରିବାକୁ ଅସମ୍ମତ ହୋଇଥିଲେ, ସେମାନଙ୍କୁ କାର୍ଯ୍ୟରୁ ବହିଷ୍କୃତ କରିଥିଲେ । ପ୍ରାୟ ତିନିଶତ ପିଉରିଟାନ ଧର୍ମଯାଜକ କାର୍ଯ୍ୟଚ୍ୟୁତ ହେଲେ । ଏହି ପିଉରିଟାନମାନଙ୍କ ମଧ୍ୟରୁ କେତେକ ସ୍ୱଦେଶରେ କୌଣସି ସୁବିଧା ନ ପାଇ ଜନ୍ ରବିନସନ୍ ଓ ଉଇଲିୟମ ବ୍ରିଷ୍ଟାର ନାମକ ନେତାଦ୍ୱୟଙ୍କ ଅଧୀନରେ ହଲାଣ୍ଡରେ ଆଶ୍ରୟ ନେଲେ । ଏହାର ୧୨ ବର୍ଷ ଉତ୍ତାରେ ପ୍ରାୟ ୧୨୦ ଜଣ ପିଉରିଟାନ୍ "ମେଫ୍ଲାଓ୍ୱାର୍' ନାମକ ଗୋଟିଏ ଜାହାଜରେ ହଲାଣ୍ଡ ପରିତ୍ୟାଗ କରି ଉତ୍ତର ଆମେରିକାରେ ଭରଜିନିୟା ପ୍ରଦେଶର ଉତ୍ତର ଭାଗରେ ଉପନିବେଶ ସ୍ଥାପନ କରିଥିଲେ । ଏହି ପିଉରିଟାନ୍ ଯାତ୍ରୀମାନେ "ପିଲ୍‌ଗ୍ରିମ୍ ଫାଦାର୍ସ" ନାମରେ ଅଭିହିତ । ଏହି ଉପନିବେଶମାନ ବର୍ତ୍ତମାନ "ଇଉନାଇଟେଡ୍ ଷ୍ଟେଟ୍" ନାମରେ ଖ୍ୟାତ ।

ଜେମସ୍ କାଥଲିକମାନଙ୍କ ପ୍ରତି ଅପେକ୍ଷାକୃତ ସଦୟ ବ୍ୟବହାର କରୁଥିଲେ; କିନ୍ତୁ ସେ ପିଉରିଟାନମାନଙ୍କ ପ୍ରତି ବିଶେଷ କଠୋର ବ୍ୟବହାର କରୁଥିବାରୁ ତାହାଙ୍କ ପ୍ରଥମ ପାର୍ଲିମେଣ୍ଟର ମେମ୍ବରମାନେ ପିଉରିଟାନମାନଙ୍କ ପ୍ରତି ସଦୟ ବ୍ୟବହାର କରିବାକୁ ଆବେଦନ କରିଥିଲେ । କିନ୍ତୁ ଜେମସ୍ ସେ ବିଷୟରେ କୌଣସି ଆଲୋଚନା କରିବାକୁ ନିଷେଧ କଲେ । ପାର୍ଲିମେଣ୍ଟର ଅଧିକାଂଶ ସଭ୍ୟ ପିଉରିଟାନ୍ ଥିବାରୁ ସେମାନେ କାଥଲିକ୍‌ମାନଙ୍କ ବିରୁଦ୍ଧରେ ନାନାପ୍ରକାର କଠୋର ନିୟମମାନ କରିଥିଲେ । ଯେଉଁ କାଥଲିକମାନେ ଇଂଲଣ୍ଡର ରାଜାନୁମୋଦିତ ଧର୍ମାଳୟର ଉପାସନାରେ ଯୋଗ ଦେଇ ନ ଥିଲେ, ସେମାନେ "ରେକୁସେଣ୍ଟ୍" (Recusants) ନାମରେ ଅଭିହିତ । ପାର୍ଲିମେଣ୍ଟ ବର୍ତ୍ତମାନ ସେହି 'ରେକୁସେଣ୍ଟ" ମାନଙ୍କଠାରୁ ମାସିକ ୨୦ ପାଉଣ୍ଡ ଅର୍ଥଦଣ୍ଡ ଆଦାୟ କରିବାକୁ ଲାଗିଲେ । କେତେକ କାଥଲିକ୍ ଧର୍ମଯାଜକ ଇଂଲଣ୍ଡରୁ ନିର୍ବାସିତ ହେଲେ ।

କାଥଲିକମାନେ ଜେମସଙ୍କଠାରୁ ବିଶେଷ କୌଣସି ସୁବିଧା ପ୍ରାପ୍ତ ନ ହେବାରୁ ଓ ସେମାନଙ୍କ ବିରୁଦ୍ଧରେ କଠୋର ନିୟମମାନ ପ୍ରବର୍ତ୍ତିତ ହେବାରୁ କେଟ୍‌ସବି ଓ ଗାଇ ଫକସ୍ ପ୍ରମୁଖ ସାତଜଣ କାଥଲିକ୍, ରାଜା, ତାହାଙ୍କ ଜ୍ୟେଷ୍ଠ ପୁତ୍ର ଓ ତାହାଙ୍କ ପାର୍ଲିମେଣ୍ଟକୁ ଧ୍ୱଂସ କରିବା ପାଇଁ ଗୋଟିଏ ଭୟଙ୍କର ଷଡ଼୍‌ଯନ୍ତ୍ର କରିଥିଲେ । ତାହା ଇତିହାସରେ "ବାରୁଦ ଷଡ଼୍‌ଯନ୍ତ୍ର" ନାମରେ ବିଦିତ । ସେହି କାଥଲିକ୍‌ମାନେ ସ୍ଥିର କରିଥିଲେ ଯେ, ପାର୍ଲିମେଣ୍ଟ ଗୃହତଳେ ବାରୁଦ ଦେଇ ପାର୍ଲିମେଣ୍ଟ ଅଧିବେଶନ ସମୟରେ ରାଜା, ଯୁବରାଜ ଓ ପାର୍ଲିମେଣ୍ଟର ସମସ୍ତଙ୍କୁ ଧ୍ୱଂସ କରିବେ ଓ ରାଜାଙ୍କର କନିଷ୍ଠ ପୁତ୍ରକୁ ସିଂହାସନ ପ୍ରଦାନ କରି ଇଂଲଣ୍ଡରେ କାଥଲିକ ଧର୍ମର ପୁନଃ ପ୍ରବର୍ତ୍ତନ କରିବେ । ତଦୁଦ୍ଦେଶ୍ୟରେ ସେମାନେ ଫ୍ରାନ୍ସରୁ ଅସ୍ତ୍ର ଓ ଲୋକ ସଂଗ୍ରହ କରିଥିଲେ । ପାର୍ଲିମେଣ୍ଟ ଗୃହ ତଳକୁ ଗୋଟିଏ

ବାରୁଦ ଷଡ଼୍‌ଯନ୍ତ୍ର (Gunpowder Plot) ୧୬୦୫

ଘର ଭଡ଼ା ନେଇ ସେଥିମଧ୍ୟରେ ଗୋଟିଏ ଛିଦ୍ର କରି ପାର୍ଲିମେଣ୍ଟ ଗୃହତଳେ କେତେକ ବସ୍ତା ବାରୁଦ ସଞ୍ଚିତ କରି ରଖିଥିଲେ । ୧୬୦୫ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ ତା ୫ ରିଖ ଦିବସ ପାର୍ଲିମେଣ୍ଟ ଅଧିବେଶନ ସମୟରେ ଷଡ଼ଯନ୍ତ୍ରକାରୀ-ମାନେ ବାରୁଦରେ ଅଗ୍ନି ସଂଯୋଗ କରି ରାଜା ଓ ପାର୍ଲିମେଣ୍ଟକୁ ଧ୍ୱଂସ କରି-ବାକୁ ସ୍ଥିର କରିଥିଲେ । ଫ୍ରାନ୍‌ସିସ୍ ଟ୍ରେସହାମ୍ ନାମକ ଷଡ଼୍‌ଯନ୍ତ୍ରକାରୀମାନଙ୍କ ମଧ୍ୟରୁ ଏକବ୍ୟକ୍ତି ସେହି ଦିବସ ତାହାଙ୍କ ଭଗିନୀପତି ଲର୍ଡ ମଣ୍ଟିଇଗ୍‌ଲ୍‌କୁ ପାର୍ଲିମେଣ୍ଟରେ ଅନୁପସ୍ଥିତ ରହିବାକୁ ଅନୁରୋଧ କରି ଏକ ପତ୍ର ଲେଖିଥିଲେ । ସେହି ପତ୍ର ରାଜାଙ୍କର ହସ୍ତଗତ ହୁଅନ୍ତେ, ଚତୁର୍ଦ୍ଦିଗରେ ନାନାପ୍ରକାର ଅନୁସନ୍ଧାନ ଆରମ୍ଭ ହେଲା । ଅବଶେଷରେ ସମସ୍ତ ଷଡ଼୍‌ଯନ୍ତ୍ରକାରୀମାନେ ଧୃତ ହୋଇ ପ୍ରାଣଦଣ୍ଡ ପ୍ରାପ୍ତ ହେଲେ ଓ କାଥଲିକ୍‌ମାନଙ୍କ ବିରୁଦ୍ଧରେ କଠୋର-ତର ନିୟମମାନ ପ୍ରବର୍ତ୍ତିତ ହେଲା ।

**ଜେମସ୍ଙ୍କ ରାଜନୀତି**

ଜେମସ୍ଙ୍କର ବିଶ୍ୱାସ ଥିଲା ଯେ, ରାଜା ଈଶ୍ୱରଙ୍କଦ୍ୱାରା ଦେଶ ଶାସନ ପାଇଁ ନିର୍ବାଚିତ । ଅତଏବ ତାହାଙ୍କର କାର୍ଯ୍ୟ ପାଇଁ ସେ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କାହା ନିକଟରେ ଦାୟୀ ନୁହନ୍ତି । ସୁତରାଂ ସେ ସର୍ବଦା ସ୍ୱୀୟ ମତର ପ୍ରାଧାନ୍ୟ ରକ୍ଷା କରି ଲୋକମତକୁ ଅବହେଳା କରୁଥିଲେ । ପକ୍ଷାନ୍ତରରେ ସେ ଅତ୍ୟନ୍ତ ତୋଷାମୋଦପ୍ରିୟ ଥିବାରୁ ଅନେକ ସମୟରେ ତାହାଙ୍କର କେତେକ ପ୍ରିୟ-ପାତ୍ରଙ୍କ ଦ୍ୱାରା ଚାଳିତ ହେଉଥିଲେ । କିନ୍ତୁ ସେ ସମୟରେ ଇଂରେଜମାନେ ସ୍ୱଦେଶର ଶାସନସଂକ୍ରାନ୍ତ ଓ ଅର୍ଥସଂକ୍ରାନ୍ତ ସମସ୍ତ ବିଷୟରେ ସ୍ୱୀୟ ମତାମତ ପ୍ରକାଶ କରୁଥିଲେ । ରାଜା ଅନେକ ସମୟରେ ପାର୍ଲିମେଣ୍ଟର ମତାମତକୁ ଅପେକ୍ଷା ନ କରି ନାନାପ୍ରକାରେ ଅର୍ଥ ଆଦାୟ କରିବାକୁ ଲାଗିଲେ । ସୁତରାଂ ପାର୍ଲିମେଣ୍ଟ ସହିତ ତାହାଙ୍କର ସଂଘର୍ଷ ଉପସ୍ଥିତ ହୋଇଥିଲା ।

ଜେମସ୍ ତାହାଙ୍କର ପ୍ରଥମ ପାର୍ଲିମେଣ୍ଟ ଆହ୍ୱାନ କରିବା ସମୟରେ କେଉଁ ଲୋକମାନେ ମେମ୍ବର ନିର୍ବାଚିତ ହୋଇ ପାରିବେ ଓ କେଉଁମାନେ ନିର୍ବାଚିତ ହୋଇ ପାରିବେ ନାହିଁ, ଏ ସମ୍ବନ୍ଧରେ ଏକ ଆଦେଶ ପ୍ରଚାର କରିଥିଲେ । ସାଧାରଣ ଲୋକଙ୍କ ମେମ୍ବର ନିର୍ବାଚନ କ୍ଷମତାରେ ରାଜା ଏହିପରି ଭାବରେ ହସ୍ତକ୍ଷେପ କରିବାରୁ ପାର୍ଲିମେଣ୍ଟ ଏଥିରେ ଆପତ୍ତି କରିଥିଲା ।

ପ୍ରଥମ ପାର୍ଲିମେଣ୍ଟ ୧୬୦୪—୧୬୧୧

ତତ୍ପରେ ରାଜା ପାର୍ଲିମେଣ୍ଟର ଅନୁରୋଧ ଅଗ୍ରାହ୍ୟ କରି ପିଉରିଟାନ-ମାନଙ୍କ ପ୍ରତି କଠୋର ବ୍ୟବହାର କରିବାରୁ ପାର୍ଲିମେଣ୍ଟ କାଥଲିକ୍‌ମାନଙ୍କ ବିରୁଦ୍ଧରେ ନାନାପ୍ରକାର କଠୋର ନିୟମ ପ୍ରଣୟନ କରିଥିଲେ । ଏହି ସମୟରେ ରାଜା ସ୍କଟଲାଣ୍ଡକୁ ଇଂଲଣ୍ଡ ସହିତ ଏକ ରାଜ୍ୟଭୁକ୍ତ କରି ସ୍କଚ୍-ମାନଙ୍କୁ ଇଂରାଜମାନଙ୍କ ସହିତ ତୁଲ୍ୟ ଅଧିକାର ପ୍ରଦାନ କରିବାକୁ ପ୍ରସ୍ତାବ କଲାରୁ ପାର୍ଲିମେଣ୍ଟ ଏଥିରେ ଘୋର ଆପତ୍ତି କରିଥିଲା ।

ରାଜାଙ୍କ ବ୍ୟୟନିର୍ବାହାର୍ଥ ତାହାଙ୍କୁ କେତେକ ବନ୍ଧାଧରା ଆୟ ଆଜୀବନ ପ୍ରଦତ୍ତ ହୋଇଥିଲା । ରାଜକୀୟ ଭୂମିର ଆୟ ଓ ପ୍ରଜାଙ୍କଠାରୁ ଗୃହୀତ ଅର୍ଥ ( Feudal dues ) ଓ ଟନେଜ୍ ଓ ପାଉଣ୍ଡେଜ୍ ( Tonage and Poundage) ନାମକ କରଦ୍ୱୟ ତାହାଙ୍କର ପ୍ରଧାନ ଆୟ ଥିଲା । ଟନେଜ୍ ଅର୍ଥ ଇଂଲଣ୍ଡକୁ ଆମଦାନି କିମ୍ବା ଇଂଲଣ୍ଡରୁ ରପ୍ତାନି ହେଉଥିବା ଏକଟନ ମଦ ଉପରେ ନିର୍ଦ୍ଧାରିତ ଶୁଲ୍କ ବା କର । ପାଉଣ୍ଡେଜ ଅର୍ଥ ଏକ ପାଉଣ୍ଡ ଶୁଷ୍କ ଦ୍ରବ୍ୟ ଉପରେ ନିର୍ଦ୍ଧାରିତ ଶୁଲ୍କ ବା କର । ରାଜାଙ୍କର ବ୍ୟୟବାହୁଲ୍ୟ ହେତୁ ଏହି ଆୟ ତାହାଙ୍କର ଅପ୍ରଚୁର ହେବାରୁ ପାର୍ଲିମେଣ୍ଟର ମତ ନ ନେଇ ସେ ଉକ୍ତ କରଗୁଡ଼ିକର ପରିମାଣ ବୃଦ୍ଧି କରିଥିଲେ । ଏହା ଇମ୍ପୋଜିସନ୍ (Imposition) ନାମରେ ଖ୍ୟାତ । ବେଟ୍ ନାମକ ଏକ ବଣିକ ଏହି ବର୍ଦ୍ଧିତ ହାରରେ କର ଦେବାକୁ ଅସ୍ୱୀକୃତ ହେବାରୁ ସେ ରାଜଦରବାରରେ ଅଭିଯୁକ୍ତ ହୋଇଥିଲେ । ସେ ସମୟରେ ବିଚାରପତିମାନଙ୍କର ନିଯୁକ୍ତି ଓ

ପଦଚ୍ୟୁତି ରାଜାଙ୍କ ହସ୍ତରେ ଥିବାରୁ ସେମାନେ ରାଜାଙ୍କ ସପକ୍ଷରେ ମୀମାଂସା କରିଥିଲେ । ରାଜା ଏହି ପ୍ରକାରରେ ୭୦, ୦୦୦ ପାଉଣ୍ଡ ଆଦାୟ କରିଥିଲେ । କିନ୍ତୁ ଏଥିରେ ପାର୍ଲିମେଣ୍ଟର କର ନିୟନ୍ତ୍ରିତ କରିବାର କ୍ଷମତା ଖର୍ବ ହେବାରୁ ସେମାନେ ଏହାର ତୀବ୍ର ପ୍ରତିବାଦ କରିଥିଲେ ।

ଆୟର୍ଲାଣ୍ଡରେ ଅଲଷ୍ଟାର ନାମକ ସ୍ଥାନରେ ବିଦ୍ରୋହ ଉପସ୍ଥିତ ହୁଅନ୍ତେ ରାଜାଙ୍କୁ ଆୟର୍ଲାଣ୍ଡ ନିମିତ୍ତ ଏକ ଦଳ ସେନାର ବ୍ୟୟଭାର ବହନ କରିବାକୁ ହୋଇଥିଲା । ସେଥି ନିମନ୍ତେ ଅର୍ଥ ଆବଶ୍ୟକ ହୁଅନ୍ତେ ରାଜା ପାର୍ଲିମେଣ୍ଟଠାରୁ ଅର୍ଥପ୍ରାର୍ଥୀ ହୋଇଥିଲେ । କିନ୍ତୁ ସେ ପାର୍ଲିମେଣ୍ଟର ମତ ନ ନେଇ ଯେ ସମସ୍ତ ଆଦେଶ ପ୍ରଚାର କରିଥିଲେ ଓ ଯେଉଁ ସମସ୍ତ ଶୁଳ୍କ ବା କରର ବର୍ଦ୍ଧିତ ହାର ନିର୍ଦ୍ଦେଶ କରିଥିଲେ, ତାହା ପ୍ରତ୍ୟାହାର ନ କଲେ ପାର୍ଲିମେଣ୍ଟ ଅର୍ଥ ମଞ୍ଜୁର କରିବ ନାହିଁ କହନ୍ତେ ସେ ପାର୍ଲିମେଣ୍ଟ ଭଙ୍ଗ କଲେ ।

ଜେମସ୍‌ଙ୍କ ଦ୍ୱିତୀୟ ପାର୍ଲିମେଣ୍ଟ ୧୬୧୪

ଦୁଇ ବର୍ଷ ଉତ୍ତାରେ ଜେମସ ପୁନର୍ବାର ପାର୍ଲିମେଣ୍ଟ ଆହ୍ୱାନ କଲେ; କିନ୍ତୁ ରାଜା ତାହାଙ୍କ ଅନ୍ୟାୟ ଆଦେଶ ଓ କର ସମସ୍ତ ପ୍ରତ୍ୟାହାର ନ କଲେ ସେମାନେ କୌଣସି ଅର୍ଥ ମଞ୍ଜୁର କରିବେ ନାହିଁ ବୋଲି କହନ୍ତେ ରାଜା ବିରକ୍ତ ହୋଇ ପାର୍ଲିମେଣ୍ଟ ଭଙ୍ଗ କଲେ । ଏହା 'ଏଡଲ୍ଡ' ( Addled ) ପାର୍ଲିମେଣ୍ଟ ନାମରେ ବିଦିତ । ଏହି ପାର୍ଲିମେଣ୍ଟ ଅନ୍ତେ ରାଜା ସାତବର୍ଷ ପର୍ଯ୍ୟନ୍ତ କୌଣସି ପାର୍ଲିମେଣ୍ଟ ଆହ୍ୱାନ କରି ନ ଥିଲେ ।

ଯେମସ୍ ଶାନ୍ତିର ଅତ୍ୟନ୍ତ ପ୍ରୟାସୀ ଥିଲେ । ଦେଶରେ ଓ ଇଉରୋପରେ ଶାନ୍ତିସ୍ଥାପନ କରିବା ଉଦ୍ଦେଶ୍ୟରେ ତାହାଙ୍କର ପ୍ରଧାନ ପରାମର୍ଶଦାତା ସାଲିସବରୀର ଆର୍ଲ ରବାର୍ଟ ସିସିଲଙ୍କ ପରାମର୍ଶ ଅନୁସାରେ ସେ ସ୍ୱୀୟ କନ୍ୟା ଏଲିଜାବେଥଙ୍କୁ ଜର୍ମାନର ପାଲଟିନେଟର ଇଲେକ୍ଟର ଫ୍ରେଡରିକଙ୍କ ସହିତ ବିବାହ ଦେଇଥିଲେ । ଫ୍ରେଡରିକ୍ ଜର୍ମାନୀ ମଧ୍ୟରେ ଅତ୍ୟନ୍ତ କ୍ଷମତାଶାଳୀ ପ୍ରୋଟେଷ୍ଟାଣ୍ଟ ଶାସନକର୍ତ୍ତା ଥିଲେ । ସେ ଯେମସଙ୍କ ଜାମାତା ହେବାରୁ ଇଉରୋପର ପ୍ରୋଟେଷ୍ଟାଣ୍ଟମାନଙ୍କ ସହିତ ତାହାଙ୍କର ମିତ୍ରତା ସ୍ଥାପିତ ହୋଇଥିଲା । ୧୬୧୨ ଖ୍ରୀଷ୍ଟାବ୍ଦରେ ରବାର୍ଟ ସିସିଲଙ୍କ ମୃତ୍ୟୁ ଅନ୍ତେ ଜର୍ଜ ଭିଲିୟର୍ସ ନାମକ ଏକବ୍ୟକ୍ତି ରାଜାଙ୍କର ଅତ୍ୟନ୍ତ ପ୍ରିୟପାତ୍ର ଓ ପ୍ରଧାନ ପରାମର୍ଶଦାତା ହୋଇ ଉଠିଲେ । ରାଜଅନୁଗ୍ରହରୁ ସେ ଅଳ୍ପ ଦିନ ମଧ୍ୟରେ ବକିଂହାମର ଡ୍ୟୁକ୍ ହୋଇଥିଲେ । ରବାର୍ଟ ସିସିଲଙ୍କ ମୃତ୍ୟୁ ସମୟରେ ରାଜାଙ୍କର ଜ୍ୟେଷ୍ଠପୁତ୍ର ଲୋକପ୍ରିୟ ଯୁବରାଜ ହେନେରୀ ପ୍ରାଣତ୍ୟାଗ କଲେ । ତଦନନ୍ତର ରାଜା ଇଉରୋପରେ ଶାନ୍ତିସ୍ଥାପନ ମାନସରେ ବକିଂହାମଙ୍କ ପରାମର୍ଶମତେ ସ୍ୱୀୟ ଦ୍ୱିତୀୟ ପୁତ୍ର ଚାର୍ଲସଙ୍କ ସହିତ କ୍ଷମତାଶାଳୀ ସ୍ପେନର ରାଜକୁମାରୀ ଇନଫେଣ୍ଟା ମେରିଆଙ୍କର ବିବାହ ପ୍ରସ୍ତାବ କଲେ । ଇଂଲଣ୍ଡର ଲୋକେ ଏହି ବିବାହର ବିରୁଦ୍ଧରେ ଥିଲେ । କାରଣ ସେମାନେ ଜଣେ କାଥଲିକଙ୍କୁ ତାହାଙ୍କର ଭାବୀ ରାଣୀ ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ; ଯେମସ୍ କିନ୍ତୁ ଲୋକମତକୁ ଉପେକ୍ଷା କରି ଏହି ବିବାହର ଆୟୋଜନରେ ପ୍ରାୟ ୧୦ ବର୍ଷ ପର୍ଯ୍ୟନ୍ତ ବ୍ୟସ୍ତ ଥିଲେ । ଏହି ୧୦ ବର୍ଷ ମଧ୍ୟରେ ଯେମସ୍ ସ୍ପେନ ରାଜାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏକ ନିଷ୍ଠୁର କାର୍ଯ୍ୟ ସମ୍ପାଦନ କରିଥିଲେ ।

ଯେମସ୍ଙ୍କ ବୈଦେଶିକ ରାଜନୀତି

**ୱାଲଟର୍ ରେଲେଙ୍କ ପ୍ରାଣଦଣ୍ଡ—୧୬୧୮**

ଏଥିପୂର୍ବେ ଜେମସ୍‌ଙ୍କ ସିଂହାସନ ଆରୋହଣ ସମୟରେ ୱାଲଟର୍ ରେଲେ ଜେମସ୍‌ଙ୍କ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ରରେ ଲିପ୍ତ ଥିବାରୁ ପ୍ରାଣଦଣ୍ଡରେ ଦଣ୍ଡିତ ହୋଇଥିଲେ । ମାତ୍ର ଜେମସ୍ ସେ ସମୟରେ ତାହାଙ୍କୁ ପ୍ରାଣଦଣ୍ଡ ପ୍ରଦାନ ନ କରି ବନ୍ଦୀ କରି ରଖିଥିଲେ । ସେ ସେଠାରେ ପ୍ରାୟ ୧୩ ବର୍ଷ ରହି ପୃଥିବୀର ଇତିହାସ ରଚନା କରିଥିଲେ । ଏହି ସମୟରେ ରେଲେ ଜେମସ୍‌ଙ୍କୁ କହିଥିଲେ ଯେ, ସେ ଆମେରିକାରେ ଏକ ସ୍ୱର୍ଣ୍ଣଖଣିର ସନ୍ଧାନ ଜାଣନ୍ତି । ଜେମସ୍‌ଙ୍କର ସର୍ବଦା ଅର୍ଥାଭାବ ଥିବାରୁ ସେ ରେଲେଙ୍କୁ ସ୍ୱର୍ଣ୍ଣଖଣି ଅନ୍ୱେଷଣ ନିମିତ୍ତ ମୁକ୍ତିଦାନ କରିଥିଲେ । ସେ ସମୟରେ ସ୍ପେନର କେତେଗୁଡ଼ିଏ ଉପନିବେଶ ଆମେରିକାରେ ଥିଲା । କାଳେ ରେଲେଙ୍କ ସହିତ ସ୍ପେନିଅର୍ଡମାନଙ୍କର ବିରୋଧ ଉପସ୍ଥିତ ହେବ ଏବଂ ସେଥି ନିମନ୍ତେ ସ୍ପେନ ସହିତ ତାହାଙ୍କ ପୁତ୍ରର ବିବାହ ସମ୍ବନ୍ଧ ବିଚ୍ଛିନ୍ନ ହେବ, ଏହି ଆଶଙ୍କା କରି ଜେମସ୍ ରେଲେଙ୍କୁ ସ୍ପେନିଅର୍ଡମାନଙ୍କ ସହିତ ବିବାଦ କରିବାକୁ ନିଷେଧ କଲେ । ମାତ୍ର ରେଲେ ଆମେରିକାର ଓରିନୋକୋ ନାମକ ନଦୀ ତୀରରେ ଉପସ୍ଥିତ ହୁଅନ୍ତେ ସ୍ପେନିଅର୍ଡମାନଙ୍କ ସହିତ ତାହାଙ୍କର ବିରୋଧ ଉପସ୍ଥିତ ହୋଇଥିଲା । ସ୍ପେନିଅର୍ଡମାନଙ୍କ ସହ ଇଂରେଜମାନଙ୍କର ଯେଉଁ ଖଣ୍ଡ ଯୁଦ୍ଧ ହୋଇଥିଲା, ସେଥିରେ ରେଲେଙ୍କ ପୁତ୍ର ନିହତ ହୋଇଥିଲେ । ରେଲେ ବ୍ୟର୍ଥମନୋରଥ ହୋଇ ଇଂଲଣ୍ଡକୁ ପ୍ରତ୍ୟାବର୍ତ୍ତନ କଲେ । କିନ୍ତୁ ସେ ସ୍ପେନିଅର୍ଡମାନଙ୍କ ସହିତ ବିରୋଧ କରିଥିବାରୁ ଜେମସ୍ ସ୍ପେନ ରାଜାଙ୍କୁ ସନ୍ତୁଷ୍ଟ କରିବା ପାଇଁ ତାହାଙ୍କୁ ପୂର୍ବ ଷଡ଼ଯନ୍ତ୍ର ଅପରାଧରେ ୧୩ ବର୍ଷ ଉତ୍ତାରେ ପ୍ରାଣଦଣ୍ଡ ପ୍ରଦାନ କରିଥିଲେ ।

ଏହି ସମୟରେ ଜର୍ମାନୀର କାଥଲିକ୍ ଓ ପ୍ରୋଟେଷ୍ଟାଣ୍ଟମାନଙ୍କ ମଧ୍ୟରେ ତ୍ରିଂଶବର୍ଷବ୍ୟାପୀ ଏକ ସମରାନଳ ପ୍ରଜ୍ୱଳିତ ହୋଇଥିଲା । ୧୬୧୯ ଖ୍ରୀଷ୍ଟାବ୍ଦରେ ଜର୍ମାନୀର ସମ୍ରାଟଙ୍କର ମୃତ୍ୟୁ ହେବାରୁ ଫର୍ଡିନେଣ୍ଡ ଜର୍ମାନୀର ସମ୍ରାଟରୂପେ ନିର୍ବାଚିତ ହୋଇଥିଲେ । ଅଷ୍ଟ୍ରିଆ ହଙ୍ଗେରୀ ତାହାଙ୍କର ଶାସନାଧୀନ ଥିଲା । ଏଥିପୂର୍ବେ ଜର୍ମାନୀର ସମ୍ରାଟ୍ ଜର୍ମାନୀ ସାମ୍ରାଜ୍ୟ ଅନ୍ତର୍ଗତ ବୋହେମିଆ ନାମକ ରାଜ୍ୟର ମଧ୍ୟ ରାଜା ହେଉଥିଲେ । ମାତ୍ର ବର୍ତ୍ତମାନ ବୋହେମିଆର ପ୍ରୋଟେଷ୍ଟାଣ୍ଟ ପ୍ରଜାମାନେ ଫର୍ଡିନାଣ୍ଡଙ୍କୁ ବୋହେମିଆର ରାଜା ବୋଲି ନିର୍ବାଚନ ନ କରି ପାଲେଟାଇନର ଇଲେକ୍ଟର ଜେମସଙ୍କ ପ୍ରୋଟେଷ୍ଟାଣ୍ଟ ଜାମାତା ଫ୍ରେଡ଼ରିକଙ୍କୁ ବୋହେମିଆର ରାଜା ବୋଲି ନିର୍ବାଚନ କରିଥିଲେ । ଫ୍ରେଡ଼ରିକଙ୍କ ନିର୍ବାଚନରେ ଜର୍ମାନୀର ସମସ୍ତ କାଥଲିକ୍ ରାଜା ଫର୍ଡିନେଣ୍ଡ ସହ ଯୋଗଦାନ କରି ପାଲଟିନେଟ୍ ଆକ୍ରମଣ କରିଥିଲେ । ସ୍ପେନର ରାଜା କାଥଲିକ୍ ଓ ଫର୍ଡିନେଣ୍ଡଙ୍କ ନିକଟ-ଆତ୍ମୀୟ ଥିବାରୁ ଫ୍ରେଡ଼ରିକଙ୍କ ବିରୁଦ୍ଧରେ ଏହି ଯୁଦ୍ଧରେ ଯୋଗଦାନ କରିଥିଲେ । ଫ୍ରେଡରିକ ଉପାୟାନ୍ତର ନ ଦେଖି ଜେମସ୍‌ଙ୍କ ସାହାଯ୍ୟପ୍ରାର୍ଥୀ ହୋଇଥିଲେ । ମାତ୍ର ସ୍ପେନ ରାଜାଙ୍କ ବିରାଗଭାଜନ ହେବା ଆଶଙ୍କାରେ ଜେମସ୍ ସ୍ୱୀୟ ଜାମାତା ଫ୍ରେଡରିକଙ୍କୁ ଯଥୋପଯୁକ୍ତ ସାହାଯ୍ୟ କରିବାକୁ ପଶ୍ଚାତ୍‌ପଦ ହେବାରୁ ଫ୍ରେଡରିକ୍ ବୋହେମିଆ ଓ ସ୍ୱୀୟ ପାଲଟିନେଟରୁ ତାଡ଼ିତ ହୋଇ ଇଂଲଣ୍ଡରେ ଆଶ୍ରୟ ଗ୍ରହଣ କଲେ ।

ଇଉରୋପରେ ତ୍ରିଂଶବର୍ଷବ୍ୟାପୀ ସମର

ଜାମାତାଙ୍କ ଏହି ବିପଦରେ ସାହାଯ୍ୟ କରିବା ମାନସରେ ଜେମସ୍ ଅର୍ଥ ନିମିତ୍ତ ପାର୍ଲିମେଣ୍ଟ ସଭା ଆହ୍ୱାନ କଲେ । ମାତ୍ର ଏଥିପୂର୍ବେ ଜେମସ୍ ଅର୍ଥଦଣ୍ଡ, ଦର୍ଶନୀ (Benevolences), ବଳପୂର୍ବକ ଋଣଗ୍ରହଣ ( Forced Loans ), ଅର୍ଥ ଗ୍ରହଣ ପୂର୍ବକ ଏକଚାଟିଆ କାରବାରର ଅଧିକାର ପ୍ରଦାନ ପ୍ରଭୃତି ଅନ୍ୟାୟ ଉପାୟ ଦ୍ୱାରା ଅର୍ଥ ଆଦାୟ କରିଥିଲେ । ନୂତନ "ବେରନେଟ୍" ପଦ ସୃଷ୍ଟି କରି ଏକଶତ ପାଉଣ୍ଡ

ଜେମସ୍‌ଙ୍କ ତୃତୀୟ ପାର୍ଲିମେଣ୍ଟ— ୧୬୨୧

ମୂଲ୍ୟରେ ତାହା ଲୋକମାନଙ୍କୁ ପ୍ରଦାନ କରୁଥିଲେ । ତାହାଙ୍କ ମନ୍ତ୍ରୀମାନେ ଓ ଅନ୍ୟାନ୍ୟ କର୍ମଚାରୀମାନେ ମଧ୍ୟ ନାନାପ୍ରକାର ଅସତ୍ ଉପାୟରେ ଅର୍ଥ ଆଦାୟ କରୁଥିଲେ । ପାର୍ଲିମେଣ୍ଟ ଏହାର ଘୋର ପ୍ରତିବାଦ କରି ରାଜାଙ୍କ ଚାନସେଲର ଫ୍ରାନ୍‌ସିସ୍ ବେକନଙ୍କୁ ହାଉସ୍ ଅଫ୍ ଲର୍ଡସ୍ ସମକ୍ଷରେ ଅଭିଯୁକ୍ତ କରୁଥିଲେ । ବେକନ୍ ଚାନସେଲର୍ ପଦରୁ ବହିଷ୍କୃତ ହୋଇ ଅର୍ଥଦଣ୍ଡ ଦେଇ ଅବ୍ୟାହତି ପାଇଲେ । ପାର୍ଲିମେଣ୍ଟ ଯୁଦ୍ଧ ନିମିତ୍ତ ସାମାନ୍ୟ ଅର୍ଥ ମଞ୍ଜୁର କଲେ; ମାତ୍ର ପାଇମ୍, କୋକ୍ ପ୍ରମୁଖ କେତେକ ମେମ୍ବର ରାଜାଙ୍କୁ ସ୍ପେନ ସହିତ ବିବାହ ସମ୍ବନ୍ଧ ଭଙ୍ଗ କରିବାକୁ ଅବେଦନ କରିବାରୁ ରାଜା ଏହି ଅବେଦନକୁ ମେମ୍ବରମାନଙ୍କ ଧୃଷ୍ଟତା ଜ୍ଞାନ କରି କେତେ ମେମ୍ବରମାନଙ୍କୁ କାରାରୁଦ୍ଧ କଲେ ଓ ପାର୍ଲିମେଣ୍ଟ ଭଙ୍ଗ କରିବାକୁ ଆଦେଶ ପ୍ରଦାନ କଲେ । ଏହି ପାର୍ଲିମେଣ୍ଟ ରାଜାଜ୍ଞାରେ ଭଙ୍ଗ ହେଲା ସତ୍ୟ; ମାତ୍ର ଏହାର କ୍ଷମତା ଯଥେଷ୍ଟ ବୃଦ୍ଧି ପାଇଥିଲା । ରାଜା ଏକଚାଟିଆ କାରବାରର ଅଧିକାର ପ୍ରତ୍ୟାହାର କରୁଥିଲେ । ବିଚାରାଳୟମାନ ସଂଶୋଧିତ ହୋଇଥିଲା ଏବଂ ରାଜକର୍ମଚାରୀମାନଙ୍କୁ ଅଭିଯୁକ୍ତ କରିବାର ଅଧିକାର ପାର୍ଲିମେଣ୍ଟ ଲାଭକଲା ।

ପ୍ରଥମ ଇଂରାଜ ସମ୍ବାଦପତ୍ର ପ୍ରଚଳନ—୧୬୨୨

ଏହି ସମୟରେ ଦେଶର ସମ୍ବାଦ ମୁଦ୍ରିତ ହୋଇ ସାପ୍ତାହିକ ସମ୍ବାଦପତ୍ରର ପ୍ରଥମ ପ୍ରଚଳନ ହୋଇଥିଲା ।

ଜେମସ୍‌ଙ୍କ ଚତୁର୍ଥ ପାର୍ଲିମେଣ୍ଟ—୧୬୨୪

ରାଜା ପାର୍ଲିମେଣ୍ଟ ଭଙ୍ଗକରି ସ୍ପେନ ରାଜକୁମାରୀଙ୍କ ସହିତ ସ୍ୱୀୟ ପୁତ୍ର ଚାର୍ଲସଙ୍କ ବିବାହ ସମ୍ପନ୍ନ କରି ସ୍ପେନକୁ ବନ୍ଧୁରୂପେ ପରିଣତ କରିବା ମାନସରେ ବକିଂହାମର ଡ୍ୟୁକଙ୍କ ସହିତ ସ୍ୱୀୟ ପୁତ୍ର ଚାର୍ଲସଙ୍କୁ ସ୍ପେନକୁ ପ୍ରେରଣ କଲେ (୧୬୨୩) । ମାତ୍ର ସ୍ପେନର ରାଜା ଚାର୍ଲସଙ୍କୁ କାଥଲିକ ଧର୍ମ ଗ୍ରହଣ କରିବାକୁ ଅନୁରୋଧ କରିବାରୁ ଚାର୍ଲସ ଅସ୍ୱୀକୃତ ହୁଅନ୍ତେ ଏହି ବିବାହ ଭଙ୍ଗ ହେଲା । ସ୍ପେନ

ରାଜକୁମାରୀ ଇନଫେଣ୍ଟା ମେରୀଆ ମଧ୍ୟ ଚାର୍ଲସଙ୍କୁ ବିବାହ କରିବାକୁ ଅସ୍ୱୀକୃତ ହୋଇଥିଲେ । ଯାହାଫଳରେ ବିବାହ ଭଙ୍ଗ ହୁଅନ୍ତେ ଜେମସ୍ ସ୍ପେନ ସହିତ ଯୁଦ୍ଧାର୍ଥ ପ୍ରସ୍ତୁତ ହୋଇ ଅର୍ଥ ନିମିତ୍ତ ପାର୍ଲିମେଣ୍ଟ ଆହ୍ୱାନ କଲେ । ସ୍ପେନ ସହିତ ଯୁବରାଜଙ୍କ ବିବାହ ସମ୍ବନ୍ଧ ଭଙ୍ଗ ହୁଅନ୍ତେ ପାର୍ଲିମେଣ୍ଟ ଯୁଦ୍ଧ ନିମିତ୍ତ ଅର୍ଥ ମଞ୍ଜୁର କଲେ । ଏହି ସମୟରେ ୧୬୨୫ ଖ୍ରୀଷ୍ଟାବ୍ଦରେ ଜେମସ୍ ପ୍ରାଣତ୍ୟାଗ କଲେ ।

**ଇଂଲଣ୍ଡର ଉପନିବେଶ ଓ ବାଣିଜ୍ୟ ବୃଦ୍ଧି**

ଜେମସ୍‌ଙ୍କ ରାଜତ୍ୱକାଳରେ ଉତ୍ତରଆମେରିକାରେ ବହୁ ଇଂରାଜ ଉପନିବେଶ ସ୍ଥାପିତ ହୋଇଥିଲା । ସେଥି ମଧ୍ୟରୁ ୧୬୦୭ରେ ସ୍ଥାପିତ ଭାର୍ଜିନିଆ, ମେରିଲ୍ୟାଣ୍ଡ ଓ ୧୬୨୦ରେ ସ୍ଥାପିତ ନବ ଇଂଲଣ୍ଡ ନାମରେ ବିଦିତ କେତେକ ଉପନିବେଶ ପ୍ରଧାନ । ଏହି ସମୟରେ ଇଂଲଣ୍ଡରେ ବାଣିଜ୍ୟର ମଧ୍ୟ ଅତ୍ୟନ୍ତ ପ୍ରସାର ହୋଇଥିଲା । ଇଂରାଜ ଇଷ୍ଟ ଇଣ୍ଡିଆ କମ୍ପାନୀ ଏହି ସମୟରେ ବହୁ ବାଣିଜ୍ୟ କୋଠି ଭାରତରେ ସ୍ଥାପନ କରିଥିଲା ।

---

# ପ୍ରଥମ ଚାର୍ଲସ

ଜନ୍ମ—୧୬୦୦ । ରାଜତ୍ୱ—(୧୬୨୫-୧୬୪୯) = ୨୪ ବର୍ଷ



**ଚରିତ୍ର**

ପ୍ରଥମ ଜେମସ୍‌ଙ୍କ ମୃତ୍ୟୁ ଅନ୍ତେ ତାଙ୍କ ପୁତ୍ର ଚାର୍ଲସ ସିଂହାସନ ଆରୋହଣ କଲେ । ସିଂହାସନ ଆରୋହଣ ସମୟରେ ଚାର୍ଲସଙ୍କ ବୟସ ୨୫ବର୍ଷ ହୋଇଥିଲା । ସେ ସୁପୁରୁଷ; ମାତ୍ର ଅତ୍ୟନ୍ତ ମୌନ ପ୍ରକୃତିର ଲୋକ ଥିଲେ । ପିତାଙ୍କ ତୁଲ୍ୟ ସେ ମଧ୍ୟ ବୁଝିଥିଲେ ଯେ, ରାଜା ଶାସନ ନିମନ୍ତେ ଈଶ୍ୱରଙ୍କ ଦ୍ୱାରା ନିର୍ବାଚିତ । ସୁତରାଂ ତାହାଙ୍କ କାର୍ଯ୍ୟ ନିମନ୍ତେ ସେ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କୌଣସି ଲୋକ ବା ଶକ୍ତି ନିକଟରେ ଦାୟୀ ନୁହନ୍ତି । ସେ ପିତାଙ୍କ ତୁଲ୍ୟ ଜିଦ୍ଧିତ ପ୍ରକୃତିର ଲୋକ ଥିଲେ; ମାତ୍ର ପିତାଙ୍କ ସରଳତା ତାହାଙ୍କଠାରେ ନ ଥିଲା । ସ୍ୱାର୍ଥସାଧନ ନିମନ୍ତେ ସେ କପଟତାର ଆଶ୍ରୟ ଗ୍ରହଣ କରିବାକୁ କୁଣ୍ଠିତ ହେଉ ନ ଥିଲେ ।

ସ୍ପେନୀୟ ମନ୍ତ୍ରୀମାନଙ୍କୁ ପୂର୍ଣ୍ଣ ସେ ବିଶ୍ୱାସ କରୁ ନ ଥିଲେ। ସିଂହାସନାରୋହଣ କରି ସ୍ପେନ ସହିତ ଯୁଦ୍ଧ ଘୋଷଣା କରିବାରୁ ଲୋକମାନେ ତାହାଙ୍କୁ ଶ୍ରଦ୍ଧା କରୁଥିଲେ; ମାତ୍ର ଏହି ଶ୍ରଦ୍ଧା ଅଧିକ ଦିନ ସ୍ଥାୟୀ ହୋଇ ନ ଥିଲା।

୧୬୨୫

ସ୍ପେନ ରାଜକୁମାରୀଙ୍କ ସହିତ ଯୁବରାଜଙ୍କ ବିବାହ ସମ୍ବନ୍ଧ ଭଙ୍ଗ ହୁଅନ୍ତେ ଜେମସ୍ ଫ୍ରାନ୍ସ ରାଜାଙ୍କ ଭଗିନୀ ହେନେରିଏଟା ମେରିଆଙ୍କ ସହିତ ଲୋକମତ ବିରୁଦ୍ଧରେ ଚାର୍ଲସଙ୍କ ବିବାହ ସମ୍ବନ୍ଧ ସ୍ଥିର କରିଥିଲେ। ଚାର୍ଲସଙ୍କ ବିବାହ ତଦନୁଯାୟୀ ଚାର୍ଲସ୍ ସିଂହାସନାରୋହଣ କରି ଫ୍ରାନ୍ସ ରାଜକୁମାରୀଙ୍କୁ ବିବାହ କରିଥିଲେ। ଫ୍ରାନସର ରାଜକୁମାରୀ କାଥଲିକ୍ ଥିଲେ। ବିବାହ ସମୟର ସର୍ତ୍ତ ଅନୁସାରେ ତାହାଙ୍କ ନିମିତ୍ତ କାଥଲିକ୍ ଧର୍ମଯାଜକ ନିଯୁକ୍ତ ହୋଇଥିଲେ ଓ ରାଣୀ କାଥଲିକ୍ ଧର୍ମମନ୍ଦିରରେ ଉପାସନା କରିବାକୁ ଲାଗିଲେ। ଏହି କାଥଲିକ୍ ବିବାହରେ ଲୋକେ ଅସନ୍ତୁଷ୍ଟ ହୋଇଥିଲେ ଏବଂ ରାଜା ଉଦ୍ଧତ ପ୍ରକୃତିର ବକିଂହାମର ଡ୍ୟୁକଙ୍କ ପରାମର୍ଶ ଅନୁଯାୟୀ ଚଳିବାରୁ ଲୋକମାନଙ୍କର ଅସନ୍ତୋଷ ବର୍ଦ୍ଧିତ ହୋଇଥିଲା।

ଚାର୍ଲସଙ୍କ ପ୍ରଥମ ପାର୍ଲିମେଣ୍ଟ—୧୬୨୫

ଚାର୍ଲସ୍ ସିଂହାସନ ଆରୋହଣ କରି ସ୍ପେନ ସହିତ ଯୁଦ୍ଧ ଘୋଷଣା କଲେ ଓ ସେଥିପାଇଁ ଅର୍ଥ ନିମିତ୍ତ ପ୍ରଥମ ପାର୍ଲିମେଣ୍ଟ ଆହ୍ୱାନ କରି ତିନି ଲକ୍ଷ ପାଉଣ୍ଡ ନିମିତ୍ତ ଅନୁରୋଧ କଲେ। ମାତ୍ର ରାଜାଙ୍କ କାଥଲିକ୍ ବିବାହ ହେତୁ ଓ ବକିଂହାମଙ୍କ ଉପରେ ବିରକ୍ତ ଥିବାରୁ ପାର୍ଲିମେଣ୍ଟ କେବଳ ମାତ୍ର ୧୪୦୦୦୦ ପାଉଣ୍ଡ ମଞ୍ଜୁର କଲେ। ଏଥିପୂର୍ବେ ରାଜାଙ୍କୁ ଟନେଜ୍ ଓ ପାଉଣ୍ଡେଜ୍ ନାମକ କରଦ୍ୱୟ ଆଜୀବନ ପାଇଁ ପ୍ରଦତ୍ତ ହେଉଥିଲା; ମାତ୍ର ବର୍ତ୍ତମାନ ପାର୍ଲିମେଣ୍ଟ ଉକ୍ତ କରଦ୍ୱୟ କେବଳ ଏକବର୍ଷ ପାଇଁ ମଞ୍ଜୁର କଲେ।

ସ୍ପେନ ସହିତ ଯୁଦ୍ଧ ନିମିତ୍ତ ଚାର୍ଲସ୍ ଫ୍ରାନ୍ସ ରାଜାଙ୍କୁ ୮ଗୋଟି ରଣତରୀ ପ୍ରେରଣ କଲେ। ମାତ୍ର ଫରାସୀ ମନ୍ତ୍ରୀ 'ରିଚ୍ଲିଉ' ସେହି ରଣତରୀଗୁଡ଼ିକ ସ୍ପେନ—

ବିରୁଦ୍ଧରେ ବ୍ୟବହାର ନ କରି "ଲା-ରଚେଲ୍" ନାମକ ସ୍ଥାନରେ ଫରାସୀ ପ୍ରୋଟେଷ୍ଟାଣ୍ଟମାନଙ୍କ ବିରୁଦ୍ଧରେ ନିଯୁକ୍ତ କରିଥିଲେ । ଏଥିରେ ପାର୍ଲିମେଣ୍ଟ କ୍ରୁଦ୍ଧ ହୋଇ ରାଜା ଓ ତାହାଙ୍କ ପ୍ରିୟମନ୍ତ୍ରୀ ବକିଂହାମଙ୍କ କାର୍ଯ୍ୟର ଘୋର ପ୍ରତିବାଦ କରନ୍ତେ ଚାର୍ଲସ୍ ପାର୍ଲିମେଣ୍ଟ ଭଙ୍ଗ କରିଥିଲେ ।

କେଡ଼ିଜ ଅଭିଯାନ
୧୬୨୫

ବକିଂହାମ ଓ ଚାର୍ଲସ୍ ଅର୍ଥ ନିମିତ୍ତ ଓ ଲୋକଙ୍କୁ ସନ୍ତୁଷ୍ଟ କରିବା ମାନସରେ ସାର୍ ଏଡୱାର୍ଡ ସିସିଲଙ୍କ ନେତୃତ୍ୱରେ ସ୍ପେନ ବିରୁଦ୍ଧରେ ଏକ ନୌବହର ପ୍ରେରଣ କରିଥିଲେ । ସେ ସମୟରେ ଇଂଲଣ୍ଡର ଯଥେଷ୍ଟ ସୈନ୍ୟ ବା ରଣପୋତ ନ ଥିଲା; ମାତ୍ର ରାଜାଜ୍ଞାରେ କେତେକ ବଣିକ କେତେକ ବାଣିଜ୍ୟ ପୋତ ପ୍ରଦାନ କରିଥିଲେ ଓ କେତେକ ଲୋକ ଯୁଦ୍ଧାର୍ଥ ପ୍ରସ୍ତୁତ ହୋଇ ସ୍ପେନ ଯାତ୍ରା କଲେ । ସିସିଲଙ୍କ ଉଦ୍ଦେଶ୍ୟ ଥିଲା ଯେ, ସେ ସ୍ପେନର କେଡିଜ ବନ୍ଦର ଅଧିକାର କରି ଡ୍ରେକଙ୍କ ତୁଲ୍ୟ ଆମେରିକାରୁ ଆଗତ ଧନପୂର୍ଣ୍ଣ ସ୍ପେନୀୟ ଜାହାଜମାନ ହସ୍ତଗତ କରିବେ । ସିସିଲଙ୍କ ସୈନ୍ୟମାନେ ସ୍ପେନର ଗୋଟିଏ ଦୁର୍ଗ ହସ୍ତଗତ କରିଥିଲେ; ମାତ୍ର ଖାଦ୍ୟ ଅଭାବରୁ ତାହାଙ୍କୁ ପ୍ରତ୍ୟାବର୍ତ୍ତନ କରିବାକୁ ହୋଇଥିଲା । ସୁତରାଂ ସ୍ପେନର ଧନରତ୍ନପୂର୍ଣ୍ଣ ଜାହାଜ ସେ ହସ୍ତଗତ କରି ପାରି ନ ଥିଲେ । ଅଧିକନ୍ତୁ ଚାର୍ଲସ୍ ଋଣଜାଲରେ ଜଡ଼ିତ ହୋଇ ତାହାଙ୍କର ଦ୍ୱିତୀୟ ପାର୍ଲିମେଣ୍ଟ ଆହ୍ୱାନ କରିବାକୁ ବାଧ୍ୟ ହୋଇଥିଲେ ।

ଚାର୍ଲସ୍‌ଙ୍କ ଦ୍ୱିତୀୟ ପାର୍ଲିମେଣ୍ଟ
୧୬୨୬

ଦ୍ୱିତୀୟବାର ପାର୍ଲିମେଣ୍ଟ ଆହୂତ ହେବା ପୂର୍ବ୍ବ ଯେଉଁ ମେମ୍ବରମାନେ ରାଜା ଓ ବକିଂହାମଙ୍କ ବିରୋଧୀ ଥିଲେ, ଚାର୍ଲସ୍ ସେମାନଙ୍କୁ ସେରିଫ୍ ପଦ ପ୍ରଦାନପୂର୍ବକ ଦ୍ୱିତୀୟ ପାର୍ଲିମେଣ୍ଟରେ ସେମାନଙ୍କ ପ୍ରବେଶ ଅଧିକାର ବନ୍ଦ କରାଇଥିଲେ । କାରଣ କୌଣସି ରାଜକର୍ମଚାରୀ ପାର୍ଲିମେଣ୍ଟର ମେମ୍ବର ହେବା ନିୟମବିରୁଦ୍ଧ । ମାତ୍ର ଏହାଦ୍ୱାରା ଚାର୍ଲସ୍‌ଙ୍କ ଅଭିଳାଷ ପୂରଣ ହୋଇ ନ ଥିଲା । ନୂତନ ପାର୍ଲିମେଣ୍ଟ ଆହୂତ ହୁଅନ୍ତେ

ସାର୍ ଜନ୍ ଇଲିଅଟ୍ ଓ ସାର୍ ଡଡ୍ଲି ଡ଼ିଗିସ୍ ରାଜାଙ୍କ କାର୍ଯ୍ୟର ପ୍ରତିବାଦ କରି ବକିଂହାମକୁ ପାର୍ଲିମେଣ୍ଟ ସମକ୍ଷରେ ଅଭିଯୁକ୍ତ କରି ତାହାଙ୍କ ଅପରାଧର ବିଚାର ନିମନ୍ତେ ଗୋଟିଏ କମିଟି ଗଠନ କରିବାକୁ କହିଥିଲେ । ଏଥିରେ ଚାର୍ଲସ୍ କ୍ରୁଦ୍ଧ ହୋଇ ଇଲିଅଟ୍ ଓ ଡ଼ିଗିସ୍‌ଙ୍କୁ କାରାରୁଦ୍ଧ କରିଥିଲେ । ମାତ୍ର ସେ ଦୁହେଁ ମୁକ୍ତ ନ ହେଲେ ପାର୍ଲିମେଣ୍ଟ ବସିବ ନାହିଁ ବୋଲି ମେମ୍ବର-ମାନେ ପ୍ରକାଶ କରନ୍ତେ ଚାର୍ଲସ୍ ସେ ଦୁହିଁଙ୍କୁ ମୁକ୍ତି ଦେଇ ପାର୍ଲିମେଣ୍ଟ ଭଙ୍ଗ କରିଥିଲେ ।

ବୈଦେଶିକ ଯୁଦ୍ଧ
୧୬୨୭

ଚାର୍ଲସ ପାର୍ଲିମେଣ୍ଟ ଭଙ୍ଗ କଲେ ସତ୍ୟ; ମାତ୍ର ତାହାଙ୍କର ଅର୍ଥାଭାବ ଦୂର ହୋଇ ନ ଥିଲା । ସେ ସମୟରେ ସ୍ପେନ୍ ସହିତ ଇଂଲଣ୍ଡର ଯୁଦ୍ଧ ଚଳୁଥିଲା ଏବଂ ଫରାସୀ ରାଜା ଲାରୋଚେଲ୍‌ସ୍ଥ ଫରାସୀ ପ୍ରୋଟେଷ୍ଟାଣ୍ଟମାନଙ୍କ ଉପରେ ଅତ୍ୟାଚାର କରିବାରୁ ତାହାଙ୍କୁ ଫରାସୀ ପ୍ରୋଟେଷ୍ଟାଣ୍ଟ (Huguenots) ମାନଙ୍କ ସାହାଯ୍ୟାର୍ଥ ଫ୍ରାନ୍ସ ରାଜାଙ୍କ ସହିତ ମଧ୍ୟ ଯୁଦ୍ଧ କରିବାକୁ ହୋଇଥିଲା । ଯୁଦ୍ଧର ବ୍ୟୟ ନିମିତ୍ତ ଚାର୍ଲସ୍ ପୂର୍ବବତ୍ "ଟନେଜ୍ ଓ ପାଉଣ୍ଡେଜ୍" ଆଦାୟ କରିବାକୁ ଲାଗିଲେ ଏବଂ ତଦ୍ଦ୍ୱାରା ଅର୍ଥାଭାବ ମୋଚନ ନ ହୁଅନ୍ତେ ସେ ନାନାପ୍ରକାର ଅନ୍ୟାୟ ଉପାୟରେ ଅର୍ଥ ଆଦାୟ କରିବାକୁ ଲାଗିଲେ । ସେ ଲୋକମାନଙ୍କଠାରୁ ଦର୍ଶଣୀ (Benevolences) ଓ ବଳପୂର୍ବକ ଋଣ ( Forced loans ) ଗ୍ରହଣ କରିବାକୁ ଲାଗିଲେ । ଯେଉଁମାନେ ଦେବାକୁ ଅସ୍ୱୀକୃତ ହେଲେ, ଚାର୍ଲସ ସେମାନଙ୍କୁ କାରାରୁଦ୍ଧ କଲେ କିମ୍ବା ସେମାନଙ୍କ ଗୃହକୁ ଏକ ଏକ ଦଳ ସୈନ୍ୟ ପ୍ରେରଣ କରି ସେମାନଙ୍କଠାରୁ ଅର୍ଥ ଆଦାୟ କରିବାକୁ ଲାଗିଲେ । ବକିଂହାମ୍ ଲା-ର ଚେଲ୍‌ସ୍ଥ ଫରାସୀ ପ୍ରୋଟେଷ୍ଟାଣ୍ଟ (Huguenots) ମାନଙ୍କ ସାହାଯ୍ୟାର୍ଥ ଏକ ଦଳ ଇଂରାଜ ସୈନ୍ୟ ନେଇ ଉକ୍ତ ସ୍ଥାନ ଅବରୋଧ କଲେ । ମାତ୍ର ବ୍ୟବସ୍ଥା ଦୋଷରୁ ସେ ଅକୃତକାର୍ଯ୍ୟ ହୋଇ ଫ୍ରାନ୍ସ ପରିତ୍ୟାଗ କଲେ । ଏତଦ୍ଦ୍ୱାରା ଲୋକମାନଙ୍କ ମନରେ ଧାରଣା ହୋଇଥିଲା ଯେ,

ସେମାନଙ୍କର ଶାସକମାନଙ୍କ ଦୋଷରୁ ଇଂରେଜ ଜାତି ସର୍ବଦା ଲାଞ୍ଛିତ ହେଉଅଛୁ । ଲୋକମାନେ ଚାଲ୍ସ୍ ଓ ତାହାଙ୍କ ପ୍ରିୟମନ୍ତ୍ରୀ ବକିଂହାମ୍‌ଙ୍କ ଉପରେ ଅଧିକ ବିରକ୍ତ ହେଲେ ।

ଜାତୀୟ ଅଧିକାର ପାଇଁ ଆବେଦନ (Petition of rigbt)—

ବୈଦେଶିକ ଯୁଦ୍ଧ ହେତୁ ଋଣଗ୍ରସ୍ତ ହୋଇ ଚାଲ୍ସ୍ ୧୬୨୮ ଖ୍ରୀଷ୍ଟାବ୍ଦରେ ତାହାଙ୍କର ତୃତୀୟ ପାର୍ଲିମେଣ୍ଟ ଆହ୍ୱାନ କରିଥିଲେ । ଯେଉଁ ଲୋକମାନେ ଏଥିପୂର୍ବେ ରାଜାଙ୍କୁ ଋଣ ନ ଦେବାରୁ ବନ୍ଦୀ ହୋଇଥିଲେ, ପାର୍ଲିମେଣ୍ଟ ସର୍ବପ୍ରଥମେ ସେମାନଙ୍କ ମୁକ୍ତି ପ୍ରାର୍ଥନା କରିଥିଲେ । ତତ୍ପରେ ସାର୍ ଜନ୍ ଇଲିଅଟ, ସାର୍ ଟମାସ୍ ଓୟେଣ୍ଟ ଓର୍ଥ୍ ଓ ଜନ୍ ପାଇମ୍ ରାଜାଙ୍କ ଶାସନର ଦୁର୍ନୀତି ପ୍ରଦର୍ଶନପୂର୍ବକ 'ପିଟିସନ୍ ଅଫ୍ ରାଇଟ୍' ବା "ଜାତୀୟ ଅଧିକାର ପାଇଁ ଆବେଦନ" ନାମକ ଏକ ସନନ୍ଦ ରାଜାଙ୍କ ସ୍ୱାକ୍ଷର ପାଇଁ ଉପସ୍ଥାପିତ କଲେ । ରାଜା ଅନିଚ୍ଛାସତ୍ତ୍ୱେ ଏହା ସ୍ୱାକ୍ଷର କରିବାକୁ ବାଧ୍ୟ ହୋଇଥିଲେ । ଏତଦ୍ଦ୍ୱାରା ସ୍ଥିର ହୋଇଥିଲା ଯେ (୧) ପାର୍ଲିମେଣ୍ଟର ଅମତରେ କୌଣସି ପ୍ରକାର କର ବା ଋଣ ଅଦାୟ ହୋଇ ପାରିବ ନାହିଁ । (୨) ବିନା ବିଚାରରେ କୌଣସି ବ୍ୟକ୍ତି କାରାରୁଦ୍ଧ ହୋଇ ପାରିବ ନାହିଁ । (୩) କୌଣସି ଗୃହସ୍ଥ ଗୃହକୁ ରାଜା ସୈନ୍ୟ ପ୍ରେରଣ କରି ପାରିବେ ନାହିଁ । (୪) ଶାନ୍ତି ସମୟରେ "ସାମରିକ ଆଇନ" (Martial law) ପ୍ରଯୁକ୍ତ ହୋଇ ପାରିବ ନାହିଁ । ଏହା ଇଂଲଣ୍ଡର ଜାତୀୟ ସ୍ୱାଧୀନତାର ଦ୍ୱିତୀୟ ସନନ୍ଦ ବୋଲି ପରିଚିତ । ରାଜା ଏହି ସନନ୍ଦ ସ୍ୱାକ୍ଷର କରିବାରୁ ଲୋକମାନଙ୍କ ମଧ୍ୟରେ ଆନନ୍ଦର କୋଳାହଳ ପଡ଼ିଯାଇଥିଲା । ରାଜାଙ୍କର ପ୍ରାର୍ଥିତ ଅର୍ଥ ୩୫୦, ୦୦୦ ପାଉଣ୍ଡ ପାର୍ଲିମେଣ୍ଟ ମଞ୍ଜୁର କଲା ।

ଚାର୍ଲସଙ୍କ ତୃତୀୟ ପାର୍ଲିମେଣ୍ଟ—୧୬୨୮

ତତ୍ପରେ ପାର୍ଲିମେଣ୍ଟ ବକିଂହାମଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ଆନୟନ କରିବାକୁ ଉଦ୍ୟତ ହୁଅନ୍ତେ ରାଜା ପାର୍ଲିମେଣ୍ଟର

ବୈଠକ ବନ୍ଦ କରିଥିଲେ; କିନ୍ତୁ ଦୁଇ ମାସ ଉତ୍ତାରେ ବକିଂହାମ୍ ପୁନରାୟ ଯୁଦ୍ଧସଜ୍ଜା କରି "ଲା-ରଚେଲ" ଅଭିମୁଖରେ ଅଗ୍ରସର ହେବାକୁ ଉଦ୍ୟତ ହୁଅନ୍ତେ ଜନ୍ ଫେଲ୍ଟନ୍ ନାମକ ଏକ ବ୍ୟକ୍ତି ପୋର୍ଟସ୍‌ମାଉଥ୍ ନାମକ ବନ୍ଦରଠାରେ ପ୍ରକାଶ୍ୟଭାବରେ ତାହାଙ୍କୁ ହତ୍ୟା କଲା । ସେ ବିଚାରରେ ପ୍ରାଣଦଣ୍ଡ ଲାଭ କରିଥିଲା ସତ୍ୟ: ମାତ୍ର ଦେଶର ଗୋଟିଏ ପରମ ଶତ୍ରୁକୁ ନିପାତ କରି ପ୍ରାଣ ଉତ୍ସର୍ଗ କଲା ।

ଏହି ସମୟରେ ବାଥର ବିଶପ୍ ଉଇଲିୟାମ ଲଡ୍ ଲଣ୍ଡନର ବିଶପ୍ ପଦରେ ନିଯୁକ୍ତ ହୋଇ ଚାର୍ଲସଙ୍କ ପ୍ରଧାନ ପରାମର୍ଶଦାତା ହୋଇଥିଲେ । ଲଡ୍ 'ହାଇଚର୍ଚ୍ଚ ପାର୍ଟି'ର ଲୋକ ଏବଂ ପିଉରିଟାନମାନଙ୍କ ବିରୋଧୀ ଥିଲେ । ତାହାଙ୍କ ପରାମର୍ଶମତେ ରାଜା ପୂର୍ବବତ୍ 'ଟନେଜ୍ ଓ ପାଉଣ୍ଡେଜ' ନାମକ କରଦ୍ୱୟ ଆଦାୟ କରିବାକୁ ଲାଗିଲେ ଏବଂ ଯେଉଁମାନେ ଦେବାକୁ ଅସ୍ୱୀକୃତ ହେଲେ, ସେମାନଙ୍କୁ କାରାରୁଦ୍ଧ କଲେ । କୋର୍ଟ ଅଫ ଷ୍ଟାର ଚେମ୍ବାର (Court of Starchamber ଓ କୋର୍ଟ ଅଫ ହାଇ କମିସନ (Court of High Commission) ପୁନର୍ବାର ପ୍ରତିଷ୍ଠିତ ହେଲା । ଏଥିରେ ଇଲିଅଟ ପ୍ରମୁଖ କେତେକ ବ୍ୟକ୍ତି ଘୋର ଆପତ୍ତି କରି ଯେଉଁ କର୍ମଚାରୀମାନେ ରାଜାଜ୍ଞାରେ ଉକ୍ତ କର ଆଦାୟ କରିଥିଲେ, ସେମାନଙ୍କୁ ଦଣ୍ଡ ଦେବା ଉଚିତ ବୋଲି ପ୍ରକାଶ କରିଥିଲେ । ରାଜା ପାର୍ଲମେଣ୍ଟ ଭଙ୍ଗ କରିବାକୁ ଅଗ୍ରସର ହୁଅନ୍ତେ ସେ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ ଯେ, ଯେଉଁମାନେ ପାର୍ଲିମେଣ୍ଟର ଅମତରେ କର ଆଦାୟ କରିବେ ଓ ଯେଉଁମାନେ କର ଦେବେ, ସେମାନେ ଦେଶଦ୍ରୋହୀ । ଏଥିରେ ଚାର୍ଲସ୍ କ୍ରୁଦ୍ଧ ହୋଇ ଇଲିଅଟ୍ ପ୍ରମୁଖ ନେତାମାନଙ୍କୁ କାରାରୁଦ୍ଧ କରି ପାର୍ଲିମେଣ୍ଟ ଭଙ୍ଗ କରିଥିଲେ । କାରାରୁଦ୍ଧ ମେମ୍ବରମାନଙ୍କ ମଧ୍ୟରୁ ଯେଉଁମାନେ ରାଜାଙ୍କର ଆନୁଗତ୍ୟ ସ୍ୱୀକାର କଲେ, ସେମାନେ ମୁକ୍ତି ଲାଭ କଲେ । ମାତ୍ର ଇଲିଅଟ୍ ରାଜାଙ୍କର ଆନୁଗତ୍ୟ ସ୍ୱୀକାର ନ କରିବାରୁ ପ୍ରାୟ ୩ବର୍ଷ କାରାଗାରରେ ରହି ସେଠାରେ ପ୍ରାଣତ୍ୟାଗ କରିଥିଲେ ।

ଚାର୍ଲସ ବର୍ତ୍ତମାନ ପାର୍ଲିମେଣ୍ଟ ବିନା ଦେଶ ଶାସନ କରିବାକୁ ଲାଗିଲେ । ଏହି ସମୟରେ ଲଣ୍ଡନର ବିଶପ୍ ଲର୍ଡ ଓ ଓଏଣ୍ଟ ଓଆର୍ଥ ତାହାଙ୍କର ପ୍ରଧାନ ପରାମର୍ଶଦାତା ଥିଲେ । ଓଏଣ୍ଟ ଓଆର୍ଥ ଏଥିପୂର୍ବେ ପାର୍ଲିମେଣ୍ଟ ପକ୍ଷରେ ଥାଇ "ଜାତୀୟ ଅଧିକାର" ନାମକ ସନନ୍ଦ (Petition of Right) ରାଜାଙ୍କଠାରୁ ଆଦାୟ କରିଥିଲେ । କିନ୍ତୁ ବକିଂହାମଙ୍କ ମୃତ୍ୟୁ ପରେ ଯେତେବେଳେ ସେ ଦେଖିଲେ,ପାର୍ଲିମେଣ୍ଟ ରାଜାଙ୍କଠାରୁ ଉକ୍ତ ସନନ୍ଦ ଲାଭ କରି ସନ୍ତୁଷ୍ଟ ନୁହନ୍ତି, ସେ ପାର୍ଲିମେଣ୍ଟ ପକ୍ଷ ତ୍ୟାଗ କରି ରାଜାଙ୍କ ପକ୍ଷ ଗ୍ରହଣ କରିଥିଲେ । ଅଷ୍ଟମ ହେନେରୀଙ୍କ ସମୟରେ ଇଂଲଣ୍ଡର ଉତ୍ତର ଭାଗରେ ପ୍ରିଭିକାଉନସିଲ୍‌ର କେତେକ ସଭ୍ୟମାନଙ୍କ ଦ୍ୱାରା ଗଠିତ, ବିଦ୍ରୋହୀମାନଙ୍କ ବିଚାରାର୍ଥ ଯେଉଁ ସଭା (Council of the north) ସ୍ଥାପିତ ହୋଇଥିଲା, ଓୟେଣ୍ଟ ଓଆର୍ଥ ତାହାର ସଭାପତି ହୋଇଥିଲେ । ଏଥି ଉତ୍ତାରେ ସେ ( ୧୬୩୩ ) ଲର୍ଡ୍ ଷ୍ଟ୍ରାଫୋର୍ଡ୍ ପଦ ପ୍ରାପ୍ତ ହୋଇ ଆୟର୍ଲାଣ୍ଡର ଶାସନକର୍ତ୍ତା ନିଯୁକ୍ତ ହୋଇ-ଥିଲେ ଓ ଲର୍ଡ କାଣ୍ଟରବରୀର ଆର୍ଚ୍ଚବିଶପ ନିଯୁକ୍ତ ହୋଇଥିଲେ ।

**ପାର୍ଲିମେଣ୍ଟ ବିନା ଏକାଦଶ ବର୍ଷ ରାଜ୍ୟଶାସନ**

ଏହି ସମୟରେ ଚାର୍ଲସ ପାର୍ଲିମେଣ୍ଟ ଓ ଲୋକମତ ସମ୍ପୂର୍ଣ୍ଣ ଉପେକ୍ଷା କରି ଦେଶ ଶାସନ କରିବାକୁ ଲାଗିଲେ । ପୂର୍ବ ରାଜାମାନଙ୍କର କେତେକ ପୁରାତନ ଅଧିକାର ପୁନଃ ପ୍ରବର୍ତ୍ତନ କରି ତଦନୁଯାୟୀ ସେ ଅର୍ଥ ଆଦାୟ କରିବାକୁ ଲାଗିଲେ । ଯେଉଁ ବ୍ୟକ୍ତିର ବାର୍ଷିକ ଆୟ ୪୦ ପାଉଣ୍ଡ ଥିଲା, କିଞ୍ଚିତ୍ ଅର୍ଥ ପ୍ରଦାନପୂର୍ବକ ତାହାକୁ 'ନାଇଟ୍' (Knight) ଉପାଧି ଗ୍ରହଣ କରିବାକୁ ହେଉଥିଲା । ରାଜକୀୟ ଅରଣ୍ୟ ସନ୍ନିହିତ ସ୍ଥାନମାନଙ୍କର ଜମିଦାର ବା ସାମନ୍ତମାନେ ଉକ୍ତ ଜଙ୍ଗଲରୁ କେତେକ ଅଂଶ ବେଆଇନ ଦଖଲ କରୁଥିଲେ । ଚାର୍ଲସ ଉକ୍ତ ଅରଣ୍ୟମାନ ଜରୀପ କରାଇ ଯେଉଁ ସାମନ୍ତମାନେ

**ପୁରାତନ ନିୟମର ପୁନଃ ପ୍ରବର୍ତ୍ତନ**

ତାହା ଭୋଗ କରୁଥିଲେ, ସେମାନଙ୍କଠାରୁ ଛଡ଼ାଇ ନେଇ ପ୍ରଭୂତ ଅର୍ଥ ଅଦାୟ କଲେ । ଏହି ପ୍ରକାରେ କେତେକ ସାମନ୍ତ ତାହାଙ୍କର ଶତ୍ରୁରୂପେ ପରିଣତ ହୋଇଥିଲେ ।

ଜେମସଙ୍କ ସମୟରେ କୌଣସି ଦ୍ରବ୍ୟର ଏକଚାଟିଆ କାରବାରର ଅଧିକାର ପ୍ରଦାନ ବିଷୟରେ ପାର୍ଲିମେଣ୍ଟ ଆପତ୍ତି କରିଥିଲା । ଚାର୍ଲସ ବର୍ତ୍ତମାନ କୌଣସି ବ୍ୟକ୍ତିକୁ ଉକ୍ତ ଅଧିକାର ପ୍ରଦାନ ନ କରି ଶିଳ୍ପର ଉନ୍ନତି ମାନସରେ ଗୋଟିଏ ଗୋଟିଏ କମ୍ପାନୀକୁ ଉକ୍ତ ଅଧିକାର ପ୍ରଦାନ କରିଥିଲେ । ମାତ୍ର ଏତଦ୍ଦ୍ୱାରା ଶିଳ୍ପର ଉନ୍ନତି ନ ହୋଇ ବରଂ ଅବନତି ହୋଇଥିଲା ଏବଂ ଦ୍ରବ୍ୟର ମୂଲ୍ୟ ମଧ୍ୟ ଅତ୍ୟନ୍ତ ବୃଦ୍ଧି ପାଇଥିଲା । ଏତଦ୍ଦ୍ୱାରା ବଣିକ ସମ୍ପ୍ରଦାୟ ଓ ସାଧାରଣ ଲୋକମାନଙ୍କ ମଧ୍ୟରେ ଅସନ୍ତୋଷ ବୃଦ୍ଧି ହୋଇଥିଲା ।

ଏକଚାଟିଆ କାରବାରର ଅଧିକାର ପ୍ରଦାନ (monopolies)

ସପ୍ତମ ହେନେରୀଙ୍କ ଦ୍ୱାରା ସ୍ଥାପିତ "କୋର୍ଟ ଅଫ୍ ଷ୍ଟାର୍ ଚେମ୍ବାର୍" ଓ ଏଲିଜାବେଥଙ୍କ ଦ୍ୱାରା ସ୍ଥାପିତ "କୋର୍ଟ ଅଫ୍ ହାଇ କମିଶନ୍" ସାହାଯ୍ୟରେ ଚାର୍ଲସ ଅତ୍ୟନ୍ତ କଠୋରତା ସହିତ ଶାସନ କରିବାକୁ ଲାଗିଲେ । ପୂର୍ବେ ଏହି ବିଚାରାଳୟଦ୍ୱୟ ଦ୍ୱାରା କ୍ଷମତାଶାଳୀ ସାମନ୍ତ ଓ ରାଜଦ୍ରୋହୀ ଧର୍ମ-ଯାଜକମାନଙ୍କ ବିଚାର ହୋଇ ଦେଶରେ ଶାନ୍ତି ସ୍ଥାପିତ ହୋଇଥିଲା । ମାତ୍ର ବର୍ତ୍ତମାନ ଏ ଦୁଇଟି ବିଚାରାଳୟ ରାଜାଙ୍କ ଅତ୍ୟାଚାରର ଅସ୍ତ୍ରରୂପେ ବ୍ୟବହୃତ ହୋଇ ଦେଶରେ ଅଶାନ୍ତି ଉତ୍ପାଦନ କରୁଥିଲା ।

**ପୋତ କର (Ship money)**

ଏହି ସମୟରେ ଡଚ୍‌ମାନଙ୍କ ସହିତ ଇଂଲଣ୍ଡର ଗୋଟିଏ ଯୁଦ୍ଧ ଆସନ୍ନ ହୋଇ ଉଠିଲା । ସେଥିପାଇଁ ଚାର୍ଲସ "ପୋତକର" (Ship money) ନାମକ ଏକ ପୁରାତନ କର ଆଦାୟ କଲେ । ଏଲିଜାବେଥଙ୍କ ସମୟରେ ଏହି କର ସମୁଦ୍ର ଉପକୂଳସ୍ଥ ନଗରମାନଙ୍କରୁ ଆଦାୟ ହେଉଥିଲା ଏବଂ ସେହି ଅର୍ଥରେ ଏଲିଜାବେଥ ରଣପୋତ ପ୍ରସ୍ତୁତ କରି ଇଂଲଣ୍ଡର ଉପକୂଳ ଭାଗ, ସ୍ପେନ, ଫ୍ରାନ୍ସ ପ୍ରଭୃତି ବୈଦେଶିକ ଆକ୍ରମଣରୁ ରକ୍ଷା କରୁଥିଲେ । ଚାର୍ଲସ ପ୍ରଥମେ ପୂର୍ବବତ୍ ସମୁଦ୍ର ଉପକୂଳସ୍ଥ ନଗରମାନଙ୍କରୁ ଏହି କର ଆଦାୟ କରୁଥିଲେ; ମାତ୍ର ପରେ ଦେଶମଧ୍ୟସ୍ଥ ସମସ୍ତ ସହରମାନଙ୍କରୁ ଏହି କର ଆଦାୟ କରୁଥିଲେ । ଜନ୍ ହାମ୍ପଡେନ୍ ନାମକ ବକିଂହାମ୍ ସାୟାରର ଏକ ଭଦ୍ରଲୋକ ଏହି କର ଦେବାକୁ ଅସ୍ୱୀକୃତ ହୋଇ ବିଚାରପ୍ରାର୍ଥୀ ହୋଇଥିଲେ; ମାତ୍ର ବିଚାରକମାନେ ତାହାଙ୍କ ବିପକ୍ଷରେ ମନ୍ତବ୍ୟ କରିବାରୁ ଏହି କର ଆଦାୟ ହେବାକୁ ଲାଗିଲା । ଏହା ପାର୍ଲିମେଣ୍ଟର ଅମତରେ ହେବାରୁ ଜନସାଧାରଣ ରାଜାଙ୍କ ପ୍ରତି ବିରକ୍ତ ହୋଇଥିଲେ ।

**ଓ୍ୱେଣ୍ଟୱାର୍ଥ ବା ଲର୍ଡ ଷ୍ଟ୍ରାଫୋର୍ଡଙ୍କ କାର୍ଯ୍ୟପ୍ରଣାଳୀ**

ଓ୍ୱେଣ୍ଟୱାର୍ଥ ଲର୍ଡ ଷ୍ଟ୍ରାଫୋର୍ଡ ଉପାଧି ପ୍ରାପ୍ତ ହୋଇ ୧୬୨୩ ଖ୍ରୀଷ୍ଟାବ୍ଦରେ ଆୟର୍ଲାଣ୍ଡର ଶାସନକର୍ତ୍ତାରୂପେ ପ୍ରେରିତ ହୋଇଥିଲେ । ସେଠାରେ ଇଂରେଜ ଓ ସ୍କଚ୍‌ମାନଙ୍କ ଦ୍ୱାରା ଅଲଷ୍ଟର୍ ନାମକ ପ୍ରଦେଶରେ ଗୋଟିଏ ନୂତନ ଉପନିବେଶ ସ୍ଥାପିତ ହୋଇଥିଲା । ଷ୍ଟ୍ରାଫୋର୍ଡ ଅତ୍ୟନ୍ତ କଠୋରତାର ସହିତ ଆୟର୍ଲାଣ୍ଡ ଶାସନ କରି ସେଠାରେ ଶାନ୍ତି ସ୍ଥାପନ କରିଥିଲେ । ସେ ଗୋଟିଏ ଆଇରିସ ପାର୍ଲିମେଣ୍ଟ ଆହ୍ୱାନ କରି ତାହା ସାହାଯ୍ୟରେ ଯଥେଷ୍ଟ ଅର୍ଥ ଆଦାୟ କରୁଥିଲେ ଏବଂ ସେହି ଅର୍ଥରେ ସେଠାରେ ଏକ ଦଳ ସୈନ୍ୟ ରକ୍ଷା କରୁଥିଲେ । ବାଣିଜ୍ୟର ଯଥେଷ୍ଟ ଉନ୍ନତି ସାଧିତ ହୋଇ-

ଥିଲା ଏବଂ ଅୟର୍ଲଣ୍ଡରେ ବସ୍ତ୍ର ବ୍ୟବସାୟ ଆରମ୍ଭ ହୋଇଥିଲା । ସେଠାର କାଥଲିକ୍‌ମାନଙ୍କ ପ୍ରତି ସେ ଅତ୍ୟନ୍ତ ନିର୍ଦ୍ଦୟ ବ୍ୟବହାର କରିଥିଲେ । ତାହାଙ୍କ ଶାସନ ସମୟରେ ଅଇରସ୍‌ମାନେ ଶାନ୍ତଭାବ ଧାରଣ କରିଥିଲେ ସତ୍ୟ; ମାତ୍ର ସେମାନେ ଇଂରେଜମାନଙ୍କର ପରମ ଶତ୍ରୁ ହୋଇ ଉଠିଥିଲେ ।

ଯେଉଁ ବର୍ଷ ଓଏଣ୍ଟଓଅର୍ଥ ଅୟର୍ଲଣ୍ଡର ଶାସନକର୍ତ୍ତା ନିଯୁକ୍ତ ହୋଇଥିଲେ, ସେହି ବର୍ଷ (୧୬୩୩) କ୍ୟାଣ୍ଟରବରୀର ଆର୍ଚ୍ଚବିଶପ୍ ଏବଟଙ୍କ ମୃତ୍ୟୁ ହେବାରୁ ଲଡ୍ ଉକ୍ତ କାର୍ଯ୍ୟ ପ୍ରାପ୍ତ ହୋଇ ଚାର୍ଲସଙ୍କ ପ୍ରଧାନ ପରାମର୍ଶଦାତା ହୋଇଥିଲେ । ସେ ଅତ୍ୟନ୍ତ ଆଡ଼ମ୍ବରପ୍ରିୟ ଥିଲେ ଏବଂ କାଥଲିକ୍‌ମାନଙ୍କର ଧର୍ମମନ୍ଦିରର ସାଜସଜ୍ଜା ତାହାଙ୍କର ପ୍ରିୟ ଥିଲା । ଆର୍ଚ୍ଚବିଶପ୍ ପଦ ପ୍ରାପ୍ତ ହୋଇ ସେ ଧର୍ମାଳୟମାନଙ୍କରେ କେତେକ ପରିବର୍ତ୍ତନ କରିଥିଲେ । ଧର୍ମାଳୟମାନଙ୍କରେ ରଞ୍ଜିତ ଗବାକ୍ଷର ପ୍ରଚଳନ ଆରମ୍ଭ ହେଲା; ବେଦିଗୁଡ଼ିକ ଧର୍ମମନ୍ଦିରମାନଙ୍କର ମଧ୍ୟଭାଗରୁ ଅପସାରିତ ହୋଇ ପୂର୍ବ-କୋଣରେ ସ୍ଥାପିତ ହେଲା; ଏହି ସମସ୍ତ କାରଣରୁ ଇଂଲଣ୍ଡର ପିଉରିଟାନ୍‌ମାନେ ମନେ କରୁଥିଲେ ଯେ, ଲଡ୍ ଇଂଲଣ୍ଡରେ କାଥଲିକ୍ ଧର୍ମ ପୁନଃ ପ୍ରବର୍ତ୍ତନ କରିବାକୁ ମନଃସ୍ଥ କରୁଅଛନ୍ତି; ସୁତରାଂ ଲୋକମାନେ ଲଡ୍‌ଙ୍କ ପ୍ରତି ବିରୂପ ହୋଇ ଉଠିଲେ ।

**ଲଡ୍‌ଙ୍କ କାର୍ଯ୍ୟପ୍ରଣାଳୀ**

ପୂର୍ବେ ଇଂଲଣ୍ଡର ଗ୍ରାମମାନଙ୍କରେ ନାନାପ୍ରକାର କ୍ରୀଡ଼ା କୌତୁକ ଅନୁଷ୍ଠିତ ହେଉଥିଲା; ମାତ୍ର ସେଥିରେ ଲୋକେ ପାନାସକ୍ତ ହେଉଥିବାରୁ ଦେଶର ଶାନ୍ତିରକ୍ଷକମାନଙ୍କଦ୍ୱାରା ସେଗୁଡ଼ିକ ନିବାରିତ ହୋଇଥିଲା । ବର୍ତ୍ତମାନ ରାଜା ଓ ଲଡ୍ ସେଗୁଡ଼ିକ ପୁନଃପ୍ରବର୍ତ୍ତନ କରିଥିଲେ । ଧର୍ମଯାଜକମାନଙ୍କୁ ଉପାସନା ପରେ ଉକ୍ତ କ୍ରୀଡ଼ା କୌତୁକ ପୁନଃପ୍ରବର୍ତ୍ତନ ବିଷୟ ପ୍ରଚାର କରିବାକୁ ହେଉଥିଲା । ଏଥିରେ ଯେଉଁ ଧର୍ମଯାଜକମାନେ ଆପତ୍ତି କଲେ, ସେମାନଙ୍କୁ ପଦଚ୍ୟୁତ କରାଗଲା । ଏତଦ୍ଦ୍ୱାରା ଦେଶରେ ଘୋର ଅଶାନ୍ତିର ସୃଷ୍ଟି ହେଲା ।

ଏହି ସମୟରେ ରାଜା ଓ ଲର୍ଡ ସ୍କଟମାନଙ୍କ ସହିତ ବିବାଦରେ ପ୍ରବୃତ୍ତ ହେଲେ । ଇଂଲଣ୍ଡରେ ନୂତନ ପ୍ରୋଟେଷ୍ଟାଣ୍ଟ ଧର୍ମ ପ୍ରବର୍ତ୍ତିତ ହେବା ସଙ୍ଗେ ସଙ୍ଗେ ଜନ୍ ନକ୍ସ ନାମକ ଜଣେ ପ୍ରଚାରକଙ୍କ ଦ୍ୱାରା ସ୍କଟମାନେ ନବ ଧର୍ମରେ ଦୀକ୍ଷିତ ହୋଇ 'ପ୍ରେସବାଇଟେରିଏନ' ନାମ ଗ୍ରହଣ କରି ଉପାସନା ସମୟରେ କୌଣସି ପ୍ରାର୍ଥନା ପୁସ୍ତକ ବ୍ୟବହାର କରୁ ନ ଥିଲେ । ମାତ୍ର ଲର୍ଡଙ୍କ ପରାମର୍ଶମତେ ରାଜା ସ୍କଟମାନଙ୍କୁ ସାଧାରଣ ପ୍ରାର୍ଥନା ପୁସ୍ତକ ବ୍ୟବହାର କରିବାକୁ ଆଦେଶ ଦେଲେ । ସ୍କଟମାନେ କ୍ରୁଦ୍ଧ ହୋଇ ୧୫୮୭ ରେ ମେରୀ ଅଫ୍ ଗାଇସ୍‌ଙ୍କ ସମୟରେ ଗଠିତ 'ଜାତୀୟ ସଭ (National Covenant) ପୁନର୍ଗଠନ କରି ଉକ୍ତ ପ୍ରାର୍ଥନା ପୁସ୍ତକ ବ୍ୟବହାର କରିବାକୁ ଅସ୍ୱୀକାର କଲେ । ଏଥିରେ ରାଜା କ୍ରୁଦ୍ଧ ହୋଇ ସ୍କଟମାନଙ୍କ ସହିତ ଯୁଦ୍ଧାର୍ଥ ଅଗ୍ରସର ହେଲେ । ମାତ୍ର ସ୍କଟମାନେ ଯୁଦ୍ଧାର୍ଥ ପ୍ରସ୍ତୁତ ଥିବାରୁ ଓ ଇଂରେଜମାନେ ସ୍କଟମାନଙ୍କର ପକ୍ଷ ସମର୍ଥନ କରିବାରୁ ରାଜା ଷ୍ଟ୍ରାଫୋର୍ଡଙ୍କୁ ଆୟର୍ଲାଣ୍ଡରୁ ଆଣାଇଲେ । ଷ୍ଟ୍ରାଫୋର୍ଡ ରାଜାଙ୍କୁ ପାର୍ଲିମେଣ୍ଟ ଆହ୍ୱାନ କରିବାକୁ ପରାମର୍ଶ ଦେଇ ସ୍ୱୟଂ ଆୟର୍ଲାଣ୍ଡରୁ ସ୍ୱୀୟ ଶିକ୍ଷିତ ସୈନ୍ୟଦଳ ଆନୟନ ନିମିତ୍ତ ସେଠାକୁ ପ୍ରତ୍ୟାବର୍ତ୍ତନ କଲେ ।

ସ୍କଟମାନଙ୍କ ସହିତ ବିରୋଧ

ଷ୍ଟ୍ରାଫୋର୍ଡଙ୍କ ପରାମର୍ଶମତେ ସ୍କଟଲଣ୍ଡର ବିଦ୍ରୋହ ଦମନ ନିମିତ୍ତ ରାଜା ପୁନର୍ବାର ପାର୍ଲିମେଣ୍ଟ ଆହ୍ୱାନ କଲେ । କିନ୍ତୁ ପାର୍ଲିମେଣ୍ଟ ଆହୂତ ହେଲାମାତ୍ର ମେମ୍ବରମାନେ ରାଜାଙ୍କ କାର୍ଯ୍ୟ ପ୍ରଣାଳୀର ଘୋରତର ପ୍ରତିବାଦ କରି ସ୍କଟଲଣ୍ଡ ସହିତ ଯୁଦ୍ଧ କରିବାକୁ ଅସ୍ୱୀକୃତ ହେଲେ । ଏଥିରେ ରାଜା କ୍ରୁଦ୍ଧ ହୋଇ ପାର୍ଲିମେଣ୍ଟ ଆହୂତ ହେବାର ୩ ସପ୍ତାହ ଉତ୍ତାରେ ତାହା ଭଙ୍ଗକଲେ ।

ଅଳ୍ପଦିନସ୍ଥାୟୀ ପାର୍ଲିମେଣ୍ଟ (The short Parliament—1641)

ତଦନନ୍ତର ରାଜା ଯେଉଁ ଅଳ୍ପସଂଖ୍ୟକ ସୈନ୍ୟ ସଂଗ୍ରହ କରିବାକୁ ସମର୍ଥ ହୋଇଥିଲେ, ସେମାନଙ୍କୁ ନେଇ ସ୍କଟ୍‌ଲଣ୍ଡ ଅଭିଯାନ କଲେ। ମାତ୍ର ସ୍କଟ୍‌ମାନେ ପୂର୍ବରୁ ପ୍ରସ୍ତୁତ ହୋଇ ନର୍ଦମ୍ବରଲଣ୍ଡ ଆକ୍ରମଣ କରି ରାଜାଙ୍କୁ ନିଉକାସଲ୍ ନାମକ ସ୍ଥାନରେ ପରାସ୍ତ କଲେ। ରାଜା ବାଧ୍ୟହୋଇ ସ୍କଟ୍‌ମାନଙ୍କୁ ପ୍ରଚୁର ଅର୍ଥ ପ୍ରଦାନ କରିବାକୁ ସ୍ୱୀକୃତ ହୋଇ ସେମାନଙ୍କ ସହିତ ସନ୍ଧି ସ୍ଥାପନ କଲେ। ଏହି ଅର୍ଥ ନିମିତ୍ତ ରାଜା ପୁନର୍ବାର ତାହାଙ୍କର ପାର୍ଲିମେଣ୍ଟ ଆହ୍ୱାନ କଲେ। ଏହି ପାର୍ଲିମେଣ୍ଟ ଦୀର୍ଘ ପାର୍ଲିମେଣ୍ଟ (Long Parliament) ନାମରେ ଖ୍ୟାତ। କାରଣ ଏହା ଦୀର୍ଘକାଳ-ସ୍ଥାୟୀ ହୋଇଥିଲା।

ଦୀର୍ଘ ପାର୍ଲିମେଣ୍ଟ (୧୬୪୦-୧୬୫୩ ଓ ୧୬୫୯-୧୬୬୦)

ଏହି ପାର୍ଲିମେଣ୍ଟର ଅଧିବେଶନ ଆରମ୍ଭ ହେବା ମାତ୍ରେ ମେମ୍ବରମାନେ ରାଜାଙ୍କ ଗତ କାର୍ଯ୍ୟପ୍ରଣାଳୀର ପ୍ରତିବାଦ କରି ତାହାଙ୍କର ପ୍ରଧାନ ପରାମର୍ଶ-ଦାତା ଲର୍ଡ୍ ଷ୍ଟ୍ରାଫୋର୍ଡଙ୍କ ବିରୁଦ୍ଧରେ ଅଭି-ଯୋଗ ଆନୟନ କଲେ ଓ ଯେଉଁ ଲୋକମାନେ ଅନ୍ୟାୟରୂପେ ରାଜାଙ୍କ ଆଦେଶକ୍ରମେ କାରା-ରୁଦ୍ଧ ହୋଇଥିଲେ, ସେମାନଙ୍କୁ ମୁକ୍ତି ପ୍ରଦାନ କଲେ। ଲର୍ଡ୍‌ଙ୍କ ଦ୍ୱାରା ଯେଉଁ ସମସ୍ତ ଆଇନ ପ୍ରବର୍ତ୍ତିତ ହୋଇଥିଲା, ତାହା ପ୍ରତ୍ୟାହୃତ ହେଲା। ତଦନନ୍ତର "ତ୍ରୈବାର୍ଷିକ ଆଇନ" ନାମକ ଏକ ନିୟମ ହୋଇଥିଲା (Triennial act)।

ତ୍ରୈବାର୍ଷିକ ଆଇନ

ପାର୍ଲିମେଣ୍ଟ ଆହୂତ ନ ହୋଇ ୩ ବର୍ଷ ଅତୀତ ହେବ ନାହିଁ ଅର୍ଥାତ୍ ୩ ବର୍ଷ ମଧ୍ୟରେ ପାର୍ଲିମେଣ୍ଟ ନିଶ୍ଚୟ ଆହୂତ ହେବ ଏବଂ ପାର୍ଲିମେଣ୍ଟର ଅମତରେ ଦ ୫୦ନ ମଧ୍ୟରେ ତାହା ଭଙ୍ଗ ହୋଇ ପାରିବ ନାହିଁ।

ଷ୍ଟ୍ରାଫୋର୍ଡ ପୂର୍ବେ ପାର୍ଲିମେଣ୍ଟ ପକ୍ଷରେ ଥାଇ 'ପିଟିସନ୍ ଅଫ୍ ରାଇଟ୍' ବା ଜାତୀୟ ଅଧିକାର ରାଜାଙ୍କଠାରୁ ଆଦାୟ କରିଥିଲେ । ତତ୍ପରେ ସେ ପାର୍ଲିମେଣ୍ଟ ପକ୍ଷ ତ୍ୟାଗ କରି ରାଜାଙ୍କ ପକ୍ଷରେ ଯୋଗ ଦେଇଥିବାରୁ ପାର୍ଲିମେଣ୍ଟ ତାହାଙ୍କର ବିଦ୍ୱେଷୀ ହୋଇଥିଲେ । ତଦନନ୍ତର

**ଷ୍ଟ୍ରାଫୋର୍ଡଙ୍କ ବିଚାର ଓ ପ୍ରାଣଦଣ୍ଡ**

ସେ ଆୟର୍ଲାଣ୍ଡରୁ ସୈନ୍ୟ ଆଣି ପାର୍ଲିମେଣ୍ଟ ଅମତରେ ସ୍କଟ୍‌ଲାଣ୍ଡ ସହିତ ଯୁଦ୍ଧାର୍ଥ ପ୍ରସ୍ତୁତ ହୋଇଥିଲେ ଏବଂ ପାର୍ଲିମେଣ୍ଟ ବିରୁଦ୍ଧରେ କାର୍ଯ୍ୟ କରିବାକୁ ରାଜାଙ୍କୁ ସାହାଯ୍ୟ କରୁଥିଲେ । ଏହି ସମସ୍ତ କାରଣରୁ ପାର୍ଲିମେଣ୍ଟ ଷ୍ଟ୍ରାଫୋର୍ଡଙ୍କ ପରମ ଶତ୍ରୁ ହୋଇ ଉଠିଲେ । ଏହି ସମୟରେ ଷ୍ଟ୍ରାଫୋର୍ଡ୍ ୟର୍କଠାରେ ଅବସ୍ଥାନ କରୁଥିଲେ । ପାର୍ଲିମେଣ୍ଟ ତାହାଙ୍କ ପ୍ରତି ବିରୂପ ଜାଣି ସେ ଆୟର୍ଲାଣ୍ଡକୁ ପ୍ରତ୍ୟାବର୍ତ୍ତନ କରିବାକୁ ସ୍ଥିର କରିଥିଲେ; ମାତ୍ର ଚାର୍ଲସ ତାହାଙ୍କୁ ଆଶ୍ୱାସନା ଦେଇ ଲଣ୍ଡନକୁ ଆହ୍ୱାନ କରନ୍ତେ ଷ୍ଟ୍ରାଫୋର୍ଡ ପାର୍ଲିମେଣ୍ଟରେ ଉପସ୍ଥିତ ହୋଇ ଦେଖିଲେ, ହାଉସ ଅଫ୍ କମନ୍‌ସର ପାଇମ ନାମକ ନେତା ଅପର ୩୦୦ ସଭ୍ୟ ସହିତ ହାଉସ୍ ଅଫ୍ ଲର୍ଡସ୍‌ରେ ତାହାଙ୍କୁ ଅଭିଯୁକ୍ତ କରିବାକୁ ଦଣ୍ଡାୟମାନ ! ସେ ତତ୍‌କ୍ଷଣାତ୍ ଟାଓ୍ୱାର୍ ଅଫ୍ ଲଣ୍ଡନକୁ ପ୍ରେରିତ ହେଲେ ଏବଂ ଦେଶଦ୍ରୋହୀ ବୋଲି ତାହାଙ୍କ ବିଚାର ଆରମ୍ଭ ହେଲା । କିନ୍ତୁ ମେମ୍ବରମାନେ ବୁଝିପାରିଲେ ଯେ, ତାହାଙ୍କୁ ଦେଶଦ୍ରୋହୀ ବୋଲି ପ୍ରମାଣ କରି ପ୍ରାଣଦଣ୍ଡ ଦେବା ଅସମ୍ଭବ । ସେଥିପାଇଁ ସେମାନେ ତାହାଙ୍କ ବିରୁଦ୍ଧରେ "ବିଲ୍ ଅଫ୍ ଏଟେଣ୍ଡାର୍" (Bill of attainder)ପାସ୍ କରିଥିଲେ । ଯେଉଁ ଲୋକ ବିରୁଦ୍ଧରେ ଏହି ବିଲ୍ ପାସ୍ ହେଉଥିଲା, ସେ ବିନା ବିଚାରରେ ପ୍ରାଣଦଣ୍ଡ ପ୍ରାପ୍ତ ହେଉଥିଲା । ଉକ୍ତ "ବିଲ୍ ଅଫ୍ ଏଟେଣ୍ଡାର"ରେ ରାଜାଙ୍କର ସ୍ୱାକ୍ଷର ଆବଶ୍ୟକ ହେଉଥିଲା । ରାଜା ରାଜପ୍ରାସାଦ ଚତୁର୍ଦ୍ଦିଗେ କ୍ରୁଦ୍ଧ ଜନତା ଅବଲୋକନ କରି ଭୀତ ହୋଇ ସ୍ୱୀୟ ବିଶ୍ୱସ୍ତ ବନ୍ଧୁର ପ୍ରାଣଦଣ୍ଡାଜ୍ଞା ସ୍ୱାକ୍ଷର କରିଥିଲେ । ତଦନୁସାରେ ୧୬୪୧, ମେ ମାସ ତା ୧୨ ରେ ଷ୍ଟ୍ରାଫୋର୍ଡଙ୍କ ଶିରଚ୍ଛେଦ ହେଲା । ପ୍ରାଣଦଣ୍ଡ

ସମୟରେ ଷ୍ଟ୍ରାଫୋର୍ଡ କହିଥିଲେ, "ରାଜାମାନଙ୍କୁ ବିଶ୍ୱାସ ନାହିଁ ।" (Put not your trust in princes.)

ଷ୍ଟ୍ରାଫୋର୍ଡଙ୍କ ମୃତ୍ୟୁ ଉତ୍ତାରେ ପାର୍ଲିମେଣ୍ଟ ଅନ୍ୟ କେତେଗୁଡ଼ିଏ ସଂସ୍କାର ସାଧନ କରିଥିଲେ । କୋର୍ଟ ଅଫ୍ ଷ୍ଟାର୍ ଚେମ୍ବାର ଓ କୋର୍ଟ ଅଫ୍ ହାଇ କମିସନ୍ ଉଠାଇ ଦିଆଗଲା ଏବଂ ପୋତକର (Ship money) ଓ ପାର୍ଲିମେଣ୍ଟ ଅମତରେ ଧାର୍ଯ୍ୟ ଅନ୍ୟାନ୍ୟ କର ଅନ୍ୟାୟ ବୋଲି ଘୋଷିତ ହେଲା ।

ଦୀର୍ଘ ପାର୍ଲିମେଣ୍ଟ ପ୍ରବର୍ତ୍ତିତ ଅନ୍ୟାନ୍ୟ ସଂସ୍କାର

ତତ୍ପରେ ପାର୍ଲିମେଣ୍ଟର କେତେକ ପିଉରିଟାନ୍ ମେମ୍ବର ଧର୍ମର କେତେକ ପରିବର୍ତ୍ତନ ସାଧନ କରିବାକୁ ସ୍ଥିର କରିଥିଲେ । ପିଉରିଟାନମାନେ ବିଶପମାନଙ୍କୁ ଓ ସେମାନଙ୍କ ଦ୍ୱାରା ଚାଳିତ "ଏପିସ୍କୋପେସି" ବା ଇଂଲଣ୍ଡର ପ୍ରଚଳିତ ଧର୍ମକୁ ମଧ୍ୟ ଘୃଣା କରୁଥିଲେ । କାରଣ ବିଶପମାନେ ରାଜାଙ୍କ ସପକ୍ଷରେ ଥିଲେ ଓ କାଥଲିକ ଧର୍ମର କେତେକ ଅଂଶ ଗ୍ରହଣ କରିଥିଲେ । ସେଥିପାଇଁ ସେମାନେ "ଏପିସ୍କୋପେସି" ଉଠାଇଦେଇ ନୂତନ ପିଉରିଟାନ୍ ଧର୍ମ ପ୍ରଚଳନ ନିମିତ୍ତ ପାର୍ଲିମେଣ୍ଟରେ ଏକ ବିଲ ବା ପ୍ରସ୍ତାବ ଆଗତ କରିଥିଲେ । ତାହା "ରୁଟ ଓ ବ୍ରାଞ୍ଚ ବିଲ" (Root and Branch Bill) ନାମରେ ଖ୍ୟାତ । ଏହି ପ୍ରସ୍ତାବ କିନ୍ତୁ ପାର୍ଲିମେଣ୍ଟ ଦ୍ୱାରା ପରିତ୍ୟକ୍ତ ହୋଇଥିଲା । ପାର୍ଲିମେଣ୍ଟର ପାଇମ୍ ପ୍ରମୁଖ କେତେକ ସଭ୍ୟ ଏକ ପ୍ରସ୍ତାବ ଆଗତ କରିଥିଲେ ଯେ, ଭବିଷ୍ୟତରେ ରାଜାଙ୍କ ମନ୍ତ୍ରୀ, ପରାମର୍ଶଦାତା ଓ ବିଚାରକମାନେ ପାର୍ଲିମେଣ୍ଟ ଦ୍ୱାରା ନିଯୁକ୍ତ ହେବେ ।

୯ ଏହି ସମୟରେ ଆୟରଲଣ୍ଡରେ ଏକ ଭୟଙ୍କର ଦୁର୍ଘଟନା ଘଟିଲା । ଆୟରଲଣ୍ଡରେ ଲୋକମାନେ ଷ୍ଟ୍ରାଫୋର୍ଡଙ୍କ କଠିନ ଶାସନ ହେତୁ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ଉଠିଥିଲେ । ମାତ୍ର ତାହାଙ୍କ ଭୟରେ ସେମାନେ ସମସ୍ତ ଅତ୍ୟାଚାର ମୌନଭାବରେ ସହ୍ୟ କରିଥିଲେ । ତାହାଙ୍କ ମୃତ୍ୟୁ

ଆୟର୍ଲଣ୍ଡରେ ହତ୍ୟା

ଅନେକ ଅଇରିସ୍‌ମାନେ ବିଦ୍ରୋହୀ ହୋଇ ଅଲ୍‌ଷ୍ଟରସ୍ଥ ସମସ୍ତ ଇଂରେଜ ଓ ସ୍କଟ୍‌ମାନଙ୍କୁ ଓ ସେମାନଙ୍କର ସ୍ତ୍ରୀ ପୁତ୍ର ପରିବାରଙ୍କୁ ହତ୍ୟା କରିଥିଲେ । ଏହି ଭୟଙ୍କର ସମ୍ବାଦ ପ୍ରାପ୍ତ ହୁଅନ୍ତେ ପାର୍ଲିମେଣ୍ଟରେ ତୁମୁଳ ଆନ୍ଦୋଳନ ଉପସ୍ଥିତ ହେଲା । ପୁଣି ଅଇରିସ୍‌ମାନେ ଯୁଦ୍ଧାର୍ଥ ପ୍ରସ୍ତୁତ ହେବା ପାଇଁ ରାଜାଙ୍କର ଆଦେଶପତ୍ର ପ୍ରଦର୍ଶନ କରନ୍ତେ ପାର୍ଲିମେଣ୍ଟ ଅତ୍ୟନ୍ତ କ୍ରୁଦ୍ଧ ହୋଇ ରାଜାଙ୍କୁ ଏହି ହତ୍ୟାର ଏକମାତ୍ର କାରଣ ବୋଲି ସ୍ଥିର କରି ତାହାଙ୍କ ସମସ୍ତ କାର୍ଯ୍ୟର ପ୍ରତିବାଦ ( Grand Remonstrance) କରିଥିଲେ । ତଦନନ୍ତର ସେମାନେ ସ୍ଥିର କରିଥିଲେ ଯେ, ତାହାଙ୍କର ରାଜା ଓ ମନ୍ତ୍ରୀମାନଙ୍କ ଉପରେ ବିଶ୍ୱାସ ନାହିଁ । ଏଣିକି ପାର୍ଲିମେଣ୍ଟ ଦ୍ୱାରା ରାଜାଙ୍କର ମନ୍ତ୍ରୀମାନେ ନିଯୁକ୍ତ ହେବେ । ଯେଉଁ ସମୟରେ ପାର୍ଲିମେଣ୍ଟରେ ରାଜାଙ୍କ କାର୍ଯ୍ୟାବଳୀର ପ୍ରତିବାଦ ପ୍ରସ୍ତାବ ଗୃହୀତ ହୁଏ, ସେ ସମୟରେ ଚାର୍ଲସ୍ ସ୍କଟ୍‌ଲଣ୍ଡରେ ଅବସ୍ଥାନ କରୁଥିଲେ । ପାଞ୍ଚଦିନ ଉତ୍ତାରେ ରାଜା ସ୍କଟ୍‌ଲଣ୍ଡରୁ ପ୍ରତ୍ୟାଗମନ କରି ପାଇମ୍, ହେମ୍ପଡେନ୍ ପ୍ରମୁଖ ପ୍ରତିବାଦ ପ୍ରସ୍ତାବର ୫ଜଣ ନେତାଙ୍କୁ ରାଜଦ୍ରୋହ ଅପରାଧରେ ଅଭିଯୁକ୍ତ କରି ସେମାନଙ୍କୁ ତାହାଙ୍କ ହସ୍ତରେ ସମର୍ପଣ କରିବାକୁ ଆଦେଶ ଦେଇଥିଲେ । ମାତ୍ର ପାର୍ଲିମେଣ୍ଟର ରାଜାଙ୍କ ଉପରେ ବିଶ୍ୱାସ ନ ଥିଲା । ସେଥିପାଇଁ ସେମାନେ ଇତସ୍ତତଃ କରି ବିଳମ୍ବ କରିବାରୁ ରାଜା ସ୍ୱୟଂ କେତେକ ଅନୁଚର ଓ ଏକଦଳ ଶସ୍ତ୍ରଧାରୀ ସୈନ୍ୟ ସହ ପାର୍ଲିମେଣ୍ଟରେ ଉପସ୍ଥିତ ହୋଇଥିଲେ । ମାତ୍ର ରାଜାଙ୍କ ଆଗମନ ବାର୍ତ୍ତା ଶ୍ରବଣ କରି ଉକ୍ତ ୫ ଜଣ ସଭ୍ୟ ଇତିପୂର୍ବେ ନୌକାଯୋଗେ ପାର୍ଲିମେଣ୍ଟ ଗୃହ ତ୍ୟାଗ କରି ଲଣ୍ଡନରେ ଆଶ୍ରୟ ନେଇଥିଲେ । ରାଜା ଉକ୍ତ ୫ ଜଣ ସଭ୍ୟଙ୍କୁ ପାର୍ଲିମେଣ୍ଟ ଗୃହରେ ନ ପାଇ କ୍ରୁଦ୍ଧ ହୋଇ ଉକ୍ତ ସଭ୍ୟମାନଙ୍କୁ ଶୀଘ୍ର ତାହାଙ୍କ ହସ୍ତରେ ସମର୍ପଣ କରିବାକୁ ଆଦେଶ ଦେଇ ପାର୍ଲିମେଣ୍ଟ ଗୃହ ତ୍ୟାଗ କରିଥିଲେ ।

ଲଣ୍ଡନର ଲୋକମାନେ ସେ ସମୟରେ ଅର୍ଥଶାଳୀ ଓ ଶକ୍ତିଶାଳୀ ଥିଲେ । ସେମାନେ ରାଜାଙ୍କ ଅନ୍ୟାୟାଚରଣରେ କ୍ରୁଦ୍ଧ ହୋଇ ଉକ୍ତ

୫ଜଣ ସଭ୍ୟଙ୍କ ପକ୍ଷ ଗ୍ରହଣ କଲେ । ଲଣ୍ଡନରେ ପ୍ରାୟ ଏକ ସପ୍ତାହ ପର୍ଯ୍ୟନ୍ତ ନାନା ସଭା ହୋଇ ସ୍ଥିର ହେଲା ଯେ, ସେମାନେ ଉକ୍ତ ୫ଜଣ ସଭ୍ୟଙ୍କ ପକ୍ଷ ଅବଲମ୍ବନ କରିବେ । ଏକସପ୍ତାହ ଉତ୍ତାରେ ସେମାନେ ପ୍ରକାଶ୍ୟ-ଭାବରେ ନୌକା ଯୋଗେ ଉକ୍ତ ୫ଜଣ ସଭ୍ୟଙ୍କୁ ପାର୍ଲିମେଣ୍ଟକୁ ଆଣିଲେ । ରାଜା ଏହି ଅପମାନ ସହ୍ୟ କରି ନ ପାରି ଲଣ୍ଡନ ପରିତ୍ୟାଗ କଲେ ।

ଅନ୍ତର୍ବିପ୍ଳବ ଆରମ୍ଭ
୧୬୪୨

ଉଭୟ ପକ୍ଷ ବୁଝି ପାରିଥିଲେ ଯେ, ଯୁଦ୍ଧ ଅନିବାର୍ଯ୍ୟ । ରାଜା ସୈନ୍ୟ ସଂଗ୍ରହ ମାନସରେ ରାଜମହିଷୀଙ୍କୁ ହଲାଣ୍ଡ ପ୍ରେରଣ କରି ସ୍ୱୟଂ ହାମ୍ଟନ୍ କୋର୍ଟ୍‌ରେ ଆଶ୍ରୟ ନେଲେ । ପାର୍ଲିମେଣ୍ଟ ଇଂଲଣ୍ଡର ଲଣ୍ଡନ ଟାୱାର, ପୋର୍ଟସ ମାଉଥ୍ ଓ ହଲ୍ ନାମକ ତିନୋଟି ପ୍ରଧାନ ଅସ୍ତ୍ରାଗାର ହସ୍ତଗତ କରି 'ମିଲିସିଆ' ସମ୍ବନ୍ଧ ନିମିତ୍ତ ଆଦେଶ ପ୍ରଚାର କଲେ ଏବଂ ସୈନ୍ୟମାନଙ୍କ ବ୍ୟୟଭାର ନିମିତ୍ତ ଟନେଜ ଓ ପାଉଣ୍ଡେଜ ନାମକ କରଦ୍ୱୟ ଆଦାୟ କରିବାକୁ ଲାଗିଲେ । ତଦନନ୍ତର ୪ବର୍ଷ ଯୁଦ୍ଧ ଲାଗି ରହିଥିଲା । ଇଂଲଣ୍ଡର ଲୋକମାନେ ଦୁଇ ଭାଗରେ ବିଭକ୍ତ ହୋଇ ଏହି ଯୁଦ୍ଧ କରିଥିଲେ । ଇଂଲଣ୍ଡର ଉତ୍ତରପଶ୍ଚିମଭାଗ ରାଜାଙ୍କ ପକ୍ଷ ଗ୍ରହଣ କରିଥିଲେ ଏବଂ ପୂର୍ବ ଦକ୍ଷିଣଭାଗ ପାର୍ଲିମେଣ୍ଟ ପକ୍ଷ ଗ୍ରହଣ କଲେ । କିନ୍ତୁ ପ୍ରକୃତ ପକ୍ଷରେ କାଥଲିକ୍ ଓ ହାଇଚର୍ଚ୍ଚର ଲୋକମାନେ ରାଜାଙ୍କ ପକ୍ଷ ଗ୍ରହଣ କରିଥିଲେ ଏବଂ ପିଉରିଟାନମାନେ ଓ ବାଣିଜ୍ୟପ୍ରଧାନ ସ୍ଥାନର ଲୋକମାନେ ପାର୍ଲିମେଣ୍ଟ ପକ୍ଷ ଗ୍ରହଣ କରିଥିଲେ । ପାର୍ଲିମେଣ୍ଟ ମଧ୍ୟ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ହାଉସ୍ ଅଫ୍ ଲର୍ଡ୍‌ସର ୭୫ଜଣ ସଭ୍ୟ ଓ ହାଉସ୍ ଅଫ୍ କମନ୍‌ସର ଅର୍ଦ୍ଧସଂଖ୍ୟକ ସଭ୍ୟ ରାଜାଙ୍କ ପକ୍ଷ ଗ୍ରହଣ କରିଥିଲେ ।

ରାଜାଙ୍କ ପକ୍ଷର ସେନାନାୟକ ଥିଲେ ରାଜାଙ୍କର ଭାଗିନେୟ ରାଜକୁମାର ରୁପାର୍ଟ । ରାଜାଙ୍କ ପକ୍ଷରେ ଅଧିକାଂଶ ସମ୍ଭ୍ରାନ୍ତ ଜମିଦାର ଥିବାରୁ

ତାହାଙ୍କ ନାମ ହୋଇଥିଲା କେଭେଲିଅର୍ସ (Cavaliers)। ପଶ୍ଚାତ୍ତରେ ହାଉସ୍ ଅଫ୍ ଲର୍ଡସର ୬୦ଜଣ ସଭ୍ୟ ଓ ହାଉସ୍ ଅଫ୍ କମନ୍‌ସର ପ୍ରାୟ ଅର୍ଦ୍ଧେକ ସଭ୍ୟ ପାର୍ଲିମେଣ୍ଟ ପକ୍ଷ ଗ୍ରହଣ କରିଥିଲେ। ତାହାଙ୍କ ପକ୍ଷରେ କେବଳ ପିଉରିଟାନ୍ ଓ ବ୍ୟବସାୟୀ ଲୋକମାନେ ଯୋଗ ଦେଇଥିଲେ। ଏସେକ୍ସର ଅର୍ଲ ପାର୍ଲିମେଣ୍ଟ ପକ୍ଷର ନେତା ଥିଲେ। ପାର୍ଲିମେଣ୍ଟ ପକ୍ଷୀୟ ଲୋକମାନଙ୍କ ମସ୍ତକର କେଶ ଅତ୍ୟନ୍ତ କ୍ଷୁଦ୍ର ଥିବାରୁ ସେମାନେ (Round heads) ଆଖ୍ୟା ପ୍ରାପ୍ତ ହୋଇଥିଲେ।

ଯୁଦ୍ଧର ବିବରଣ

ଚାର୍ଲସ ନଟିଂହାମ୍ ନାମକ ସ୍ଥାନରେ ତାହାଙ୍କର ସୈନ୍ୟ ସମାବେଶ କରିଥିଲେ। ତାହାଙ୍କର ଇଚ୍ଛା ଥିଲା ଯେ, ସେ ସେଠାରେ ସୈନ୍ୟ ସଂଗ୍ରହ କରି ଲଣ୍ଡନ ଅଭିମୁଖରେ ଅଗ୍ରସର ହୋଇ ତାହା ହସ୍ତଗତ କରିବେ। ମାତ୍ର ପାର୍ଲିମେଣ୍ଟ ପକ୍ଷର ସେନାନାୟକ ଏସେକ୍ସର ଅର୍ଲ ନଟିଂହାମ ଓ ଲଣ୍ଡନମଧ୍ୟସ୍ଥ ନଗରମାନଙ୍କରେ ସୈନ୍ୟ ସମାବେଶ କରି ଚାର୍ଲସ୍‌ଙ୍କୁ ବାଧା ଦେବାକୁ ଅଗ୍ରସର ହୋଇଥିଲେ।

(୧) ଏଜହିଲର ଯୁଦ୍ଧ

ଚାର୍ଲସ୍ ଲଣ୍ଡନ ଅଭିମୁଖରେ ଅଗ୍ରସର ହୋଇ "ଏଜହିଲ"ନାମକ ସ୍ଥାନରେ ଏସେକ୍ସଙ୍କ ସୈନ୍ୟଙ୍କ ସମ୍ମୁଖୀନ ହୋଇଥିଲେ। ଏହି ଯୁଦ୍ଧରେ ଚାର୍ଲସଙ୍କ ଭଗିନେୟ ରାଜକୁମାର ରୁପାର୍ଟ ମାତୁଳଙ୍କ ସାହାଯ୍ୟାର୍ଥ ଏସେକ୍ସ ବିରୁଦ୍ଧରେ ଯୁଦ୍ଧ କରିଥିଲେ। ତାହାଙ୍କ ତେଜସ୍ୱୀ ଅଶ୍ୱାରୋହୀ ସୈନ୍ୟଙ୍କ ସମ୍ମୁଖରେ ଏସେକ୍ସଙ୍କ ସୈନ୍ୟମାନେ ଛତ୍ରଭଙ୍ଗ ହୁଅନ୍ତେ ଚାର୍ଲସ୍ ଲଣ୍ଡନ ଅଭିମୁଖରେ ଅଗ୍ରସର ହୋଇଥିଲେ। କିନ୍ତୁ ଲଣ୍ଡନର ଲୋକମାନେ ଯୁଦ୍ଧାର୍ଥ ପ୍ରସ୍ତୁତ ହୋଇ ଚାର୍ଲସଙ୍କୁ ବାଧା ଦେବାକୁ ଅଗ୍ରସର ହେବାରୁ ଚାର୍ଲସଙ୍କ ସୈନ୍ୟମାନେ ଯୁଦ୍ଧ ନ କରି ଅକ୍ସଫୋର୍ଡଠାରେ ଆଶ୍ରୟ ନେଲେ।

ତତ୍ପର ବର୍ଷ ରାଜକୀୟ ସୈନ୍ୟମାନେ ସର୍ବତ୍ର ଜୟଲାଭ କରୁଥିଲେ । ଇଂଲଣ୍ଡର ଉତ୍ତରାଞ୍ଚଳରେ ପାର୍ଲିମେଣ୍ଟ ପକ୍ଷୀୟ ଏକନେତା ଲର୍ଡ ଫେୟାର୍ ଫେକ୍‌ସ ନ୍ୟୁକାସ୍‌ଲର ଆର୍ଲଙ୍କ ଦ୍ୱାରା ପରାଜିତ ହୋଇଥିଲେ ।

ରାଜପକ୍ଷର ଜୟ

ଅକ୍‌ସଫୋର୍ଡଠାରେ ଚାର୍ଲ୍‌ଗ୍ରୋଭ ନାମକ ସ୍ଥାନରେ ରାଜକୁମାର ରୁପାର୍ଟଙ୍କ ଦ୍ୱାରା ହାମ୍ପଡେନ୍ ନାମକ ପାର୍ଲିମେଣ୍ଟ ପକ୍ଷୀୟ ଅପର ଏକ ନେତା ପରାଜିତ ଓ ନିହତ ହୋଇଥିଲେ । ସାର୍ ୱିଲିଅମ୍ ୱେଲର୍ ନାମକ ପାର୍ଲିମେଣ୍ଟର ଅପର ଏକ ନେତା ମଧ୍ୟ ରାଜକୁମାର ରୁପାର୍ଟଙ୍କ ଦ୍ୱାରା ପରାଜିତ ହୋଇଥିଲେ । ଏହିପ୍ରକାରେ ଇଂଲଣ୍ଡର ଦକ୍ଷିଣାଞ୍ଚଳର ଅନେକ ଗୁଡ଼ିଏ ନଗର ଚାର୍ଲସଙ୍କର ହସ୍ତଗତ ହେଲା । ତଦନନ୍ତର ଚାର୍ଲସ ନିଉବରି ନାମକ ସ୍ଥାନରେ ଏସେକ୍‌ସଙ୍କ ସମ୍ମୁଖୀନ ହେଲେ । ଏହି ଯୁଦ୍ଧରେ ରାଜାଙ୍କର ଲର୍ଡ ଫକଲ୍ୟାଣ୍ଡ ନାମକ ଏକ ସେନାନାୟକ ନିହତ ହୋଇଥିଲେ ।

ପାର୍ଲିମେଣ୍ଟ ପକ୍ଷର ସ୍କଟ୍‌ଲଣ୍ଡ ସହିତ ସନ୍ଧି—୧୬୪୩

ଏହି ସମୟରେ ପାଇମ୍ ନାମକ ପାର୍ଲିମେଣ୍ଟର ନେତାଙ୍କ ଉପଦେଶ-ମତେ ସାର୍ ହେନେରି ଭେନ୍ ନାମକ ଏକ ମେମ୍ବର ସ୍କଟ୍‌ଲଣ୍ଡକୁ ଗମନ କରି ସେଠାରେ ସ୍କଟ୍‌ମାନଙ୍କ ସହିତ ଗୋଟିଏ ସନ୍ଧି କରିଥିଲେ (The Solemn League and Covenant) । ଏତଦ୍ୱାରା ସ୍କଟ୍-ମାନେ ପାର୍ଲିମେଣ୍ଟକୁ ୨୧୦୦୦ ସୈନ୍ୟ ଯୋଗାଇବାକୁ ସ୍ୱୀକୃତ ହୋଇଥିଲେ ଏବଂ ତତ୍ପରିବର୍ତ୍ତେ ପାର୍ଲିମେଣ୍ଟ ସ୍କଟ୍‌ଲଣ୍ଡର ପ୍ରେସ୍‌ବାଇଟେରିଆନ୍ ଧର୍ମ ରକ୍ଷା କରିବେ ବୋଲି ଅଙ୍ଗୀକାର କରିଥିଲେ । ଏହି ସନ୍ଧିର ଅଳ୍ପଦିନ ଉତ୍ତାରେ ପାଇମ୍ ଚିନ୍ତାଜର୍ଜରିତ ହୋଇ ଅବସନ୍ନ ହୃଦୟରେ ପ୍ରାଣତ୍ୟାଗ କଲେ । ଯାହାହେଉ ଏଥି ଉତ୍ତାରେ ବିଜୟଲକ୍ଷ୍ମୀ ପାର୍ଲିମେଣ୍ଟ ପକ୍ଷ ଅବଲମ୍ବନ କରିଥିଲେ ।

ଏହି ସମୟରେ ଅଲିଭର କ୍ରମୱେଲ୍ ନାମକ ପାର୍ଲିମେଣ୍ଟର ଏକ ସଭ୍ୟ ତାହାଙ୍କ ତୀକ୍ଷ୍ଣ ପ୍ରତିଭା ଓ ରଣଦକ୍ଷତା ପାଇଁ ପ୍ରସିଦ୍ଧି ଲାଭ କରିଥିଲେ । ସେ ନୂତନ ଆଦର୍ଶରେ ଏକ ସୈନ୍ୟଦଳ ଗଠନ କରି "ଲୌହପାର୍ଶ୍ୱ" (Iron side) ନାମକରଣ କରିଥିଲେ । ଏହି ସୈନ୍ୟଦଳ ଧର୍ମ ଓ ସ୍ୱୀୟ ସ୍ୱାଧୀନତା ପାଇଁ ଅକାତରରେ ପ୍ରାଣ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଥିଲେ ।

ଅଲିଭର କ୍ରମୱେଲ ଓ ତାହାଙ୍କର "ଲୌହପାର୍ଶ୍ୱ" (Iron side)

ଯୁଦ୍ଧର ଫଳାଫଳ ଦର୍ଶନ କରି କ୍ରମୱେଲ ବୁଝିପାରିଥିଲେ ଯେ, ପାର୍ଲିମେଣ୍ଟ ପକ୍ଷୀୟ ସେନାନାୟକମାନେ ଯୁଦ୍ଧବିଦ୍ୟାରେ ସମ୍ପୂର୍ଣ୍ଣ ଅଜ୍ଞ । ସେମାନଙ୍କ ଉପରେ ସୈନ୍ୟଚାଳନା ଭାର ଥିଲେ ଚାର୍ଲସ ଓ ଯୁବରାଜ ରୁପାର୍ଟଙ୍କ ଶିକ୍ଷିତ ସୈନ୍ୟମାନଙ୍କୁ ପରାସ୍ତ କରିବା ଅସମ୍ଭବ ହେବ । ତାହାଙ୍କର ପରାମର୍ଶମତେ "ଆତ୍ମତ୍ୟାଗ ନିୟମ" (Self (denying ordinance) ନାମକ ଏକ ନିୟମ ପ୍ରବର୍ତ୍ତିତ ହୋଇଥିଲା । ଏତଦ୍ଦ୍ୱାରା ପାର୍ଲିମେଣ୍ଟର ମେମ୍ବରମାନେ ସ୍ୱେଚ୍ଛାରେ ସୈନ୍ୟଚାଳନା ଭାର ପରିତ୍ୟାଗ କରି ଉପଯୁକ୍ତ ଶିକ୍ଷିତ ବ୍ୟକ୍ତିଙ୍କ ହସ୍ତରେ ଉକ୍ତ ଭାର ପ୍ରଦାନ କଲେ । ପାର୍ଲିମେଣ୍ଟ ସୈନ୍ୟ ଏହିପ୍ରକାରେ ନୂତନ ଆଦର୍ଶରେ ଗଠିତ ହୋଇ "ନୂତନ ଆଦର୍ଶ" (New model) ଆଖ୍ୟା ଧାରଣ କରିଥିଲା । ସାର୍ ଟମାସ୍ ଫେୟାର ଫକ୍ସ ଏହି ନୂତନ ଆଦର୍ଶ ସୈନ୍ୟଦଳର ଅଧିନାୟକରୂପେ ନିଯୁକ୍ତ ହୋଇଥିଲେ ଏବଂ କ୍ରମୱେଲଙ୍କ ରଣ-ନିପୁଣତା ହେତୁ ସେ ତାହାଙ୍କର ସହକାରୀ ଅଧିନାୟକ (Lieutenant General) ନିଯୁକ୍ତ ହୋଇଥିଲେ । ଏହି ସମୟରେ ଆର୍ଚ ବିଶପ ଲଡ ରାଜାଙ୍କ ପ୍ରଧାନ ପରାମର୍ଶଦାତା ଥିବା ଅପରାଧରେ ଅନ୍ୟାୟରୂପେ ବିଲ ଅଫ୍ ଏଟେଣ୍ଡାର ଅନୁସାରେ ପ୍ରାଣଦଣ୍ଡ ପ୍ରାପ୍ତ ହୋଇଥିଲେ ।

ଆତ୍ମତ୍ୟାଗ ନିୟମ (Self denying ordinance) ୧୬୪୫

ପାର୍ଲିମେଣ୍ଟ ସୈନ୍ୟଦଳ ନୂତନ ଆଦର୍ଶରେ ଗଠିତ ହୋଇ ରାଜକୀୟ ସୈନ୍ୟର ସମ୍ମୁଖୀନ ହେଲେ । ନାସବ ନାମକ ସ୍ଥାନରେ ଗୋଟିଏ

ନାସବିଯୁଦ୍ଧ ୧୬୪୫

ତୁମୁଳ ଯୁଦ୍ଧ ହେଲା । ସେଥିରେ ରାଜା ସମ୍ପୂର୍ଣ୍ଣରୂପେ ପରାଜିତ ହୋଇ ଓ୍ୱେଲ୍‌ସକୁ ପଳାୟନ କରି ଅବଶେଷରେ ନିଉଆର୍କ ନାମକ ସ୍ଥାନରେ ସ୍କଟଲଣ୍ଡର ସୈନ୍ୟମାନଙ୍କ ହସ୍ତେ ଆତ୍ମସମର୍ପଣ କରିଥିଲେ ।

ପାର୍ଲିମେଣ୍ଟ ତହୁଁ ରାଜାଙ୍କ ସହିତ ସନ୍ଧି କରିବାକୁ ଅଗ୍ରସର ହେଲା । ସଭ୍ୟମାନେ କହିଥିଲେ, ଯଦି ଚାର୍ଲସ ୨୦ ବର୍ଷ ନିମିତ୍ତ ସୈନ୍ୟ ଭାର ପାର୍ଲିମେଣ୍ଟ ହସ୍ତରେ ପ୍ରଦାନ କରନ୍ତି, ଏବଂ ଇଂଲଣ୍ଡରେ ପ୍ରେସ୍‌ବାଇଟାରିଏନ ଧର୍ମ ପ୍ରତିଷ୍ଠିତ କରନ୍ତି, ତାହାହେଲେ ସେମାନେ ତାହାଙ୍କୁ ସିଂହାସନ ପ୍ରତ୍ୟର୍ପଣ କରିବେ ; କିନ୍ତୁ ରାଜା ଅସ୍ୱୀକୃତ ହେବାରୁ ସ୍କଟ୍‌ମାନେ ଅସନ୍ତୁଷ୍ଟ ହୋଇ ପାର୍ଲିମେଣ୍ଟଠାରୁ ଚାରି ଲକ୍ଷ ପାଉଣ୍ଡ ଯୁଦ୍ଧବ୍ୟୟ ହେତୁ ପ୍ରାପ୍ତ ହୋଇ ତାହାଙ୍କୁ ପାର୍ଲିମେଣ୍ଟ ହସ୍ତରେ ସମର୍ପଣ କରିଥିଲେ । ପାର୍ଲିମେଣ୍ଟ ନର୍ଦ୍ଦମ୍ପଟନ ସାୟାରସ୍ଥ "ହଲମ୍ବି ହାଉସ' ( Holmby house ) ରେ ରାଜାଙ୍କୁ ରଖିଥିଲେ ।

ପାର୍ଲିମେଣ୍ଟର ଅଧିକାଂଶ ସଭ୍ୟ ପ୍ରେସ୍‌ବାଇଟାରିଏନ୍ ଥିବାରୁ ସେମାନେ ଇଂଲଣ୍ଡରେ "ଏପିସ୍କୋପେସି" ପରିବର୍ତ୍ତେ ପ୍ରେସ୍‌ବାଇଟେରିଏନ୍

ପାର୍ଲିମେଣ୍ଟ ଓ ସୈନିକମାନଙ୍କ ମଧ୍ୟରେ ବିରୋଧ

ଧର୍ମ ପ୍ରବର୍ତ୍ତିନ କରି ସାଧାରଣ ଉପାସନା ପୁସ୍ତକ ପରିବର୍ତ୍ତେ "ଡାଇରେକ୍ଟରୀ" ନାମକ ଅପର ଏକ ପୁସ୍ତକ ପ୍ରଚଳନ କରିଥିଲେ । କିନ୍ତୁ ପାର୍ଲିମେଣ୍ଟର ସୈନ୍ୟଦଳରେ ଅଧିକାଂଶ ସ୍ୱାଧୀନ ମତାବଲମ୍ବୀ ଲୋକ ( Independent ) ଥିବାରୁ ସେମାନେ ଏଥିରେ ଘୋର ପ୍ରତିବାଦ କରିଥିଲେ । ଏଥିରେ ପାର୍ଲିମେଣ୍ଟ ସୈନ୍ୟସଂଖ୍ୟା ହ୍ରାସ କରିବା ନିମିତ୍ତ ଗୋଟିଏ ନିୟମ କରି ସେମାନଙ୍କ ବେତନର ଏକଷଷ୍ଠାଂଶ ପ୍ରଦାନ କରି ସେମାନଙ୍କୁ ବିଦାୟ କରିବାକୁ ଉଦ୍ୟତ ହୁଅନ୍ତେ ସୈନ୍ୟମାନେ ଅସମ୍ମତ ହୋଇ କର୍ଣ୍ଣେଲ୍

ଜୟ୍‌ସ୍ ନାମକ ଏକ ସେନାପତିଙ୍କ ଅଧୀନରେ ହଲମ୍ବି "ହାଉସରୁ" ରାଜାଙ୍କୁ ଅନୟନ କରି ହାମ୍ପଟନ୍ କୋର୍ଟ୍ ନାମକ ସ୍ଥାନରେ ରଖିଲେ । ରାଜା ଆଶା କରୁଥିଲେ, ପାର୍ଲିମେଣ୍ଟ ଓ ସୈନ୍ୟଦଳ ମଧ୍ୟରେ ଯେଉଁ ବିବାଦ ସୃଷ୍ଟି ହୋଇଅଛି, ତଦ୍ଦ୍ୱାରା ତାହାଙ୍କର ସୁବିଧା ହେବ । ତାହାଙ୍କୁ କୌଣସି ଦଳର ଆନୁଗତ୍ୟ ସ୍ୱୀକାର କରିବାକୁ ହେବ ନାହିଁ ; ସୁତରାଂ ସେ 'ଆଇଲ ଅଫ୍ ଓଆଇଟ'କୁ ପଳାୟନ କରି ସେଠାରେ ସ୍କଟ୍‌ଲଣ୍ଡ ଓୟେଲସ୍, କେଣ୍ଟ୍ ଓ ଏସେକ୍ସର ଲୋକମାନଙ୍କୁ ପାର୍ଲିମେଣ୍ଟ ବିରୁଦ୍ଧରେ ଅସ୍ତ୍ରଧାରଣ କରିବା ପାଇଁ ଉତ୍ସାହିତ କରୁଥିଲେ ।

ଦ୍ୱିତୀୟ ଅନ୍ତର୍ବିପ୍ଳବ
୧୬୪୮

ଚାର୍ଲସଙ୍କ ଆଶା ସଫଳ ହୋଇଥିଲା । ସ୍କଟ୍‌ଲଣ୍ଡର ଲୋକେ ରାଜାଙ୍କ ସାହାଯ୍ୟାର୍ଥ ଇଂଲଣ୍ଡ ଆକ୍ରମଣ କରିଥିଲେ । ଓୟେଲସ୍, ଏସେକ୍ସ ଓ କେଣ୍ଟର ଲୋକେ ରାଜାଙ୍କ ସାହାଯ୍ୟାର୍ଥ ଅସ୍ତ୍ରଧାରଣ କରୁଥିଲେ । ଦ୍ୱିତୀୟ ଅନ୍ତର୍ବିପ୍ଳବ ଆରମ୍ଭ ହେଲା । ମାତ୍ର ଫେୟାର ଫେକ୍ସ ଏସେକ୍ସ ଓ କେଣ୍ଟର ଲୋକମାନଙ୍କୁ ପରାସ୍ତ କରୁଥିଲେ । କ୍ରମୱେଲ ଓୟେଲସ୍ ଓ ସ୍କଟଲଣ୍ଡର ଲୋକମାନଙ୍କୁ ପରାସ୍ତ କରୁଥିଲେ । ଇତିମଧ୍ୟରେ ଚାର୍ଲସ ପାର୍ଲିମେଣ୍ଟ ସହିତ ଏକ ସନ୍ଧି କରୁଥିଲେ ଯେ, ତିନିବର୍ଷ ପାଇଁ ଇଂଲଣ୍ଡରେ ପ୍ରେସବାଇଟାରିଏନ ଧର୍ମ ପ୍ରବର୍ତ୍ତିତ ହେବ । ମାତ୍ର ସୈନ୍ୟଦଳର ନେତାମାନେ କ୍ରୁଦ୍ଧ ହୋଇ ତାହାଙ୍କ ଶଠତାର ଦଣ୍ଡସ୍ୱରୂପ ତାହାଙ୍କୁ ବିନାଶ କରିବାକୁ କୃତସଙ୍କଳ୍ପ ହୋଇଥିଲେ ।

ଦୀର୍ଘ ପାର୍ଲିମେଣ୍ଟର
ଅବଶିଷ୍ଟାଂଶ (Rump)

ପାର୍ଲିମେଣ୍ଟର ଯେଉଁ ସଭ୍ୟମାନେ ରାଜାଙ୍କ ବିଚାର କରି ତାହାଙ୍କୁ ପ୍ରାଣଦଣ୍ଡ ଦେବାକୁ ଅସ୍ୱୀକୃତ ହେଲେ କର୍ଣ୍ଣେଲ ପ୍ରାଇଡ୍ ନାମକ ଏକ ସେନାନାୟକ ଏକଦଳ ସୈନ୍ୟ ଘେନି ଉକ୍ତ ମେମ୍ବରମାନଙ୍କୁ ପାର୍ଲିମେଣ୍ଟ ଗୃହରୁ ବହିଷ୍କୃତ କରୁଥିଲେ । ଏହା "ପ୍ରାଇଡ୍‌ସ୍ ପର୍ଜ୍" (Pride's Purge) ନାମରେ ବିଦିତ । ପାର୍ଲିମେଣ୍ଟର ଅଧିକାଂଶ ସଭ୍ୟ ଏହି ପ୍ରକାର

ପାର୍ଲିମେଣ୍ଟରୁ ବହିଷ୍କୃତ ହେବା ଉତ୍ତାରେ ଦୀର୍ଘ ପାର୍ଲିମେଣ୍ଟର ଅବଶିଷ୍ଟ ସଭ୍ୟ ରମ୍ପ (Rump) ନାମରେ ଅଭିହିତ ହେଲେ । ସେମାନେ ସମସ୍ତେ ସ୍ୱାଧୀନ ମତାବଲମ୍ବୀ (Independents) ଥିଲେ ।

ଦୀର୍ଘ ପାର୍ଲିମେଣ୍ଟର ଅବଶିଷ୍ଟ ସଭ୍ୟ ରାଜାଙ୍କ ବିଚାର ନିମିତ୍ତ ୧୩୫ ଜଣ ସଭ୍ୟଙ୍କ ଦ୍ୱାରା ଗଠିତ ଗୋଟିଏ ସଭା ଗଠନ କରିଥିଲେ (High court of Justice) । ଏହି ୧୩୫ ଜଣଙ୍କ ମଧ୍ୟରୁ କେବଳ ମାତ୍ର ୬୩ଜଣ ସଭ୍ୟ ଉପସ୍ଥିତ ହୋଇ ବିଚାର ନିମିତ୍ତ ରାଜାଙ୍କୁ ଆନୟନ କରିଥିଲେ । ବ୍ରାଡ୍‌ସ ନାମକ ଏକ ଆଇନଜୀବୀ ଏହାର ସଭାପତିଙ୍କ-ଆସନ ଗ୍ରହଣ କରିଥିଲେ । କ୍ରମୱେଲ ଓ ତାହାଙ୍କ ଜାମାତା ଇରଟନ୍ ମଧ୍ୟ ସେଠାରେ ଉପସ୍ଥିତ ଥିଲେ; କିନ୍ତୁ ପାର୍ଲିମେଣ୍ଟ ସେନାର ପ୍ରଧାନ ସେନା-ନାୟକ ଫେୟାର ଫେକ୍ସ ସେଥିରେ ଉପସ୍ଥିତ ହୋଇ ନ ଥିଲେ । ଯାହାହେଉ ଏହି ସଭା ବା କମିଟି ଚାର୍ଲସଙ୍କୁ ବିଶ୍ୱାସଘାତକ ନରହନ୍ତା ବୋଲି ପ୍ରାଣଦଣ୍ଡ ପ୍ରଦାନ କରିଥିଲେ । ଏହି ଆଦେଶର ୯ ଦିନ ଉତ୍ତାରେ 'ହ୍ୱାଇଟ୍ ହଲ' ନାମକ ରାଜପ୍ରାସାଦର ଏକ ବାତାୟନ ସମ୍ମୁଖରେ ଏକ ବଧ୍ୟ ମଞ୍ଚରେ ୧୬୪୯ ସାଲ ଜାନୁୟାରି ମାସ ତା ୩୦ ରିଖ ଦିନ ଚାର୍ଲସଙ୍କ ଶିରଚ୍ଛେଦନ ହୋଇ ଥିଲା ।



## ଇଂଲଣ୍ଡର ସାଧାରଣତନ୍ତ୍ର
### (୧୬୪୯—୧୬୬୦=୧୧ ବର୍ଷ)

ଚାର୍ଲସଙ୍କ ମୃତ୍ୟୁ ଉତ୍ତାରେ ଯେଉଁ ଅଳ୍ପସଂଖ୍ୟକ ବ୍ୟକ୍ତି (୮୦ ଜଣ) ପାର୍ଲିମେଣ୍ଟର ସଭ୍ୟ ଥିଲେ, ସେମାନେ ଇଂଲଣ୍ଡକୁ ଗୋଟିଏ ସ୍ୱାଧୀନ ସାଧାରଣତନ୍ତ୍ର ବୋଲି ଘୋଷଣା କରି ସ୍ଥିର କରିଥିଲେ ଯେ, ତାହାଙ୍କର କୌଣସି ରାଜାଙ୍କ ପ୍ରୟୋଜନ ନାହିଁ । କାରଣ ଏକ ବ୍ୟକ୍ତିଙ୍କ ହସ୍ତରେ ଶାସନଦଣ୍ଡ ପରିଚାଳିତ ହେବା ବିପଜ୍ଜନକ; ସୁତରାଂ ଅନୁଚିତ । ତଦନନ୍ତର ସେମାନେ 'ହାଉସ

ଅଫ ଲର୍ଡ୍‌ସ' ଅନାବଶ୍ୟକ ଓ ବିପଜ୍ଜନକ ବୋଲି ଉଠାଇଦେଇ ଦେଶ ଶାସନ ନିମିତ୍ତ ୪୧ ଜଣ ସଭ୍ୟଙ୍କ ଦ୍ୱାରା ଗଠିତ ଗୋଟିଏ ସଭା ବା "କାଉନ୍‌ସିଲ ଅଫ ଷ୍ଟେଟ୍‌" ନିଯୁକ୍ତ କରିଥିଲେ । ଯେଉଁ ନେତାମାନେ ରାଜାଙ୍କ ପକ୍ଷରେ ପାର୍ଲିମେଣ୍ଟ ବିରୁଦ୍ଧରେ ଯୁଦ୍ଧ କରିଥିଲେ ସେମାନଙ୍କୁ ପ୍ରାଣଦଣ୍ଡ ପ୍ରଦତ୍ତ ହୋଇଥିଲା ।

ଦେଶର ଅବସ୍ଥା

ରାଜାଙ୍କ ନିଧନରେ ସମସ୍ତଙ୍କ ହୃଦୟରେ ପାର୍ଲିମେଣ୍ଟ ପ୍ରତି ଘୋର ଅଶ୍ରଦ୍ଧା ଜାତ ହୋଇଥିଲା । ଯେଉଁ ପ୍ରେସବାଇଟେରିଆନମାନେ ପାର୍ଲିମେଣ୍ଟ ପକ୍ଷରେ ଥିଲେ ପାର୍ଲିମେଣ୍ଟରୁ କର୍ଣ୍ଣେଲ ପ୍ରାଇଡଙ୍କ ଦ୍ୱାରା ବହିଷ୍କୃତ ହୁଅନ୍ତେ ବିପକ୍ଷଦଳଭୁକ୍ତ ହୋଇଥିଲେ । ଚାର୍ଲସଙ୍କ ମୃତ୍ୟୁ ଅନ୍ତେ "ଇକନ୍‌ ବେସିଲାଇକ" ବା ରାଜପ୍ରତିମୂର୍ତ୍ତି ନାମକ ଏକ ପୁସ୍ତକ ରାଜାଙ୍କ ସଦ୍‌ଗୁଣାବଳୀ କୀର୍ତ୍ତନ କରି ଲୋକମାନଙ୍କୁ ପାର୍ଲିମେଣ୍ଟର ବିରୁଦ୍ଧାଚାରୀ କରିଥିଲା । ଯୁଦ୍ଧ ହେତୁ ପ୍ରଜାମାନେ କରଭାରରେ ପ୍ରପୀଡ଼ିତ ଥିଲେ । ଯୁଦ୍ଧ ଶେଷ ହେତୁ ସୈନିକମାନେ କାର୍ଯ୍ୟଚ୍ୟୁତ ହୋଇ ଦେଶର ଚୋର ଡକାଇତଙ୍କ ସଂଖ୍ୟା ବୃଦ୍ଧି କରିଥିଲେ । ଦେଶରେ ଏକ ଆତଙ୍କ ଉପସ୍ଥିତ ହେଲା ।

ଲୋକମାନଙ୍କ ଦ୍ୱାରା ରାଜାଙ୍କ ବିନାଶରେ ଇଉରୋପର ଜନସାଧାରଣ ଇଂଲଣ୍ଡର ସାଧାରଣତନ୍ତ୍ର ଓ ପାର୍ଲିମେଣ୍ଟ ପ୍ରତି ବିରୂପ ହୋଇ ଉଠିଥିଲେ । ସାଧାରଣ ତନ୍ତ୍ରର ପ୍ରତିନିଧିମାନେ ସର୍ବତ୍ର ଅପମାନିତ ହୋଇଥିଲେ । ହଲାଣ୍ଡର 'ହେଗ' ନାମକ ନଗରର ଲୋକମାନେ ସାଧାରଣତନ୍ତ୍ରର ଦୂତ ବା ପ୍ରତିନିଧିଙ୍କୁ ହତ୍ୟା କଲେ ।

ସ୍ପେନକୁ ପ୍ରେରିତ ପ୍ରତିନିଧି ମଧ୍ୟ ସେଠାର ଲୋକମାନଙ୍କ ଦ୍ୱାରା ନିହତ ହୋଇଥିଲେ । ରାଜକୁମାର ରୁପାର୍ଟ ଏକାଦଶ ସଂଖ୍ୟକ ରାଜକୀୟ ରଣପୋତ ଯୋଗେ ଇଂଲଣ୍ଡର ବାଣିଜ୍ୟ ପୋତ ସମସ୍ତ ଲୁଣ୍ଠନ କରିବାକୁ ଲାଗିଲେ ।

ଆୟର୍ଲଣ୍ଡରେ ବିଦ୍ରୋହ
୧୬୪୧

ଆୟର୍ଲଣ୍ଡରେ ଅରମଣ୍ଡର ଓ଼ଡଲକ ଅଲଷ୍ଟାର ନାମକ ପ୍ରଦେଶର ସମସ୍ତ ଲୋକମାନଙ୍କୁ ଏକତ୍ର କରି ଚାର୍ଲସଙ୍କ ପୁତ୍ର ରାଜକୁମାର ଚାର୍ଲସଙ୍କୁ ରାଜା ବୋଲି ଘୋଷଣା କରି ଇଂଲଣ୍ଡର ସାଧାରଣତନ୍ତ୍ରର ବିଦ୍ରୋହୀ ହେଲେ । ଏଥିରେ ପାର୍ଲିମେଣ୍ଟର ମେମ୍ବରମାନେ ଉକ୍ତ ବିଦ୍ରୋହ ଦମନାର୍ଥ ୧୨୦୦୦ ସୈନ୍ୟ ସହ କ୍ରମୱେଲଙ୍କୁ ଆୟର୍ଲଣ୍ଡ ପ୍ରେରଣ କଲେ । କ୍ରମୱେଲ ଆୟର୍ଲଣ୍ଡରେ ଉପସ୍ଥିତ ହୋଇ ଡ୍ରୋଗେଡ଼ା ନାମକ ନଗର ଅଧିକାର କରି ତନ୍ମଧ୍ୟସ୍ଥ ପ୍ରାୟ ୨୦୦୦ ଲୋକଙ୍କୁ ନିହତ କଲେ । କେତେକ ଲୋକ ପ୍ରାଣଭୟରେ ସେଣ୍ଟ ପିଟର ନାମକ ଗୀର୍ଜ୍ଜା ବା ଧର୍ମମନ୍ଦିରକୁ ନିରାପଦ ସ୍ଥାନ ମଣି ସେଠାରେ ଆଶ୍ରୟ ନେଇଥିଲେ । କ୍ରମୱେଲଙ୍କ ଆଦେଶରେ ଉକ୍ତ ଧର୍ମାଳୟରେ ଅଗ୍ନି ସଂଯୋଗ ହୋଇଥିଲା । ଯେଉଁମାନେ ଆତ୍ମସମର୍ପଣ କରିଥିଲେ, ସେମାନଙ୍କୁ ହତ୍ୟା କରାହେଲା ଏବଂ କେତେକ କ୍ରୀତଦାସରୂପେ ବିକ୍ରୀତ ହେଲେ । ୱେକ୍ସଫୋର୍ଡ ନାମକ ଅପର ଏକ ସ୍ଥାନରେ ଲୋକମାନଙ୍କ ପ୍ରତି ପୂର୍ବୋକ୍ତ ପ୍ରକାର ନିଷ୍ଠୁର ବ୍ୟବହାର କରାଗଲା । କ୍ରମୱେଲଙ୍କର ଏହିପରି ନୃଶଂସ ବ୍ୟବହାରରେ ଭୀତ ହୋଇ ଆୟର୍ଲଣ୍ଡ ଶାନ୍ତଭାବ ଧାରଣ କଲା ।

ସ୍କଟଲଣ୍ଡ ସହିତ ଯୁଦ୍ଧ

ରାଜାଙ୍କ ମୃତ୍ୟୁରେ ସ୍କଟଲଣ୍ଡର ଲୋକେ ଇଂଲଣ୍ଡର ପାର୍ଲିମେଣ୍ଟ ପ୍ରତି କ୍ରୁଦ୍ଧ ହୋଇ ଚାର୍ଲସଙ୍କ ପୁତ୍ର ଯୁବରାଜ ଚାର୍ଲସଙ୍କୁ ରାଜା ବୋଲି ଘୋଷଣା କରି ବିଦ୍ରୋହୀ ହେଲେ । ଯୁବରାଜ ଚାର୍ଲସ ପ୍ରେସବାଇଟେରିଆନ ଧର୍ମ ରକ୍ଷା କରିବେ ବୋଲି ସ୍ୱୀକାର କରି ସ୍କଟଲଣ୍ଡରେ ଉପସ୍ଥିତ ହୁଅନ୍ତେ ସ୍କଟମାନେ ସାନନ୍ଦରେ ତାହାଙ୍କ ପତାକା ତଳେ ସମବେତ ହେଲେ ।

ଚାର୍ଲସ ସ୍କଟମାନଙ୍କ ସହ ଇଂଲଣ୍ଡରେ ଉପସ୍ଥିତ ହେଲେ ସାଧାରଣତନ୍ତ୍ରର ସମୂହ ବିପଦ ଉପସ୍ଥିତ ହେବ, ଏହା ଆଶଙ୍କା କରି ପାର୍ଲିମେଣ୍ଟ

ଡନବାର ଯୁଦ୍ଧ
୧୬୫୦

ଫେୟାରଫେକ୍‌ସଙ୍କୁ ସ୍କଟଲାଣ୍ଡ ଆକ୍ରମଣ କରିବାକୁ କହିଲେ; ମାତ୍ର ସେ ସ୍କଟମାନଙ୍କ ସହ ପୂର୍ବ ସନ୍ଧି ଭଙ୍ଗ କରି ସେମାନଙ୍କ ସହିତ ଯୁଦ୍ଧ କରିବାକୁ ଅସ୍ୱୀକୃତ ହେବାରୁ ପାର୍ଲିମେଣ୍ଟ କ୍ରମୱେଲଙ୍କୁ ଆୟର୍ଲଣ୍ଡରୁ ଅଣାଇ ୧୬୦୦୦ ସୈନ୍ୟ ସହ ସ୍କଟଲାଣ୍ଡକୁ ପ୍ରେରଣ କଲେ । କ୍ରମୱେଲ ଦୁଇ ଗୋଟି ନୌବହର ସହ ସ୍କଟଲାଣ୍ଡରେ ଉପସ୍ଥିତ ହୋଇ ଏଡ଼ିନବର୍ଗ ଗମନ ପଥରେ ଡନବାର ନାମକ ସ୍ଥାନରେ ଗୋଟିଏ କ୍ଷୁଦ୍ର ଶୈଳ ଉପତ୍ୟକାରେ ସ୍କଟମାନଙ୍କୁ ଲେସଲି ନାମକ ନେତାଙ୍କ ଅଧୀନରେ ସମାବେଶିତ ଦେଖିଲେ । ସେଠାରେ ଜୟର ଆଶା ସୁଦୂରପରାହତ ଜାଣି କ୍ରମୱେଲ ରଣତରୀଗୁଡ଼ିକୁ ପ୍ରସ୍ଥାନ କରିବା ଉପକ୍ରମ କରନ୍ତେ ସ୍କଟମାନେ ତାହାଙ୍କୁ ବାଧା ଦେବାକୁ ଶୈଳପୃଷ୍ଠରୁ ଅବତରଣ କରି ତାହାଙ୍କର ସମ୍ମୁଖୀନ ହେଲେ; ମାତ୍ର ସ୍କଟମାନେ ଶୈଳପୃଷ୍ଠରୁ ଅବତରଣ କରନ୍ତେ କ୍ରମୱେଲଙ୍କ ସୈନ୍ୟମାନେ ସେମାନଙ୍କ ଉପରେ ପତିତ ହୋଇ ଅଳ୍ପକ୍ଷଣ ମଧ୍ୟରେ ସେମାନଙ୍କୁ ବିଧ୍ୱସ୍ତ କଲେ । ଏହି ଯୁଦ୍ଧରେ ୩୦୦୦ ସ୍କଟ ନିହତ ଓ ୧୦୦୦୦ ବନ୍ଦୀ ହୋଇଥିଲେ । ଏଡ଼ିନବର୍ଗ କ୍ରମୱେଲଙ୍କ ହସ୍ତଗତ ହେଲା ।

ଚାର୍ଲସ କିୟତ୍‌କାଳ ସ୍କଟଲାଣ୍ଡର ଉତ୍ତରଭାଗରେ ଅବସ୍ଥାନ କରି ରାଜ୍ୟ ପ୍ରାପ୍ତିର କୌଣସି ଆଶା ନ ଦେଖି ଇଂଲଣ୍ଡରେ ସ୍ୱୀୟ ଭାଗ୍ୟ ପରୀକ୍ଷା କରିବାକୁ ସ୍ଥିର କରିଥିଲେ । ସେ ପଶ୍ଚିମଭାଗ ଦେଇ ଲଣ୍ଡନ ଅଭିମୁଖରେ ଅଗ୍ରସର ହୁଅନ୍ତେ ପ୍ରାୟ ୧୬୦୦୦ ଲୋକ ତାହାଙ୍କ ସହିତ ଯୋଗ ଦେଲେ । ମାତ୍ର କ୍ରମୱେଲ ଉକ୍ତ ସମ୍ବାଦ ପ୍ରାପ୍ତ ହୋଇ ୩୦୦୦୦ ସୈନ୍ୟ ସହ ତାହାଙ୍କୁ ଅନୁସରଣ କଲେ । ଓରସେଷ୍ଟାର ନାମକ ସ୍ଥାନରେ ଉଭୟ ସୈନ୍ୟ ପରସ୍ପରର ସମ୍ମୁଖୀନ ହେଲେ । ଅଳ୍ପକ୍ଷଣ ମଧ୍ୟରେ ଚାର୍ଲସଙ୍କ ସେନାମାନେ

ପରାସ୍ତ ହେଲେ ଓ ତାହାଙ୍କ ଅଧିନାୟକ ଲସଲ୍ ବନ୍ଦୀ ହେଲେ, ଚାର୍ଲସ ସ୍ୱୟଂ ଛଦ୍ମ ବେଶ ଧାରଣପୂର୍ବକ ଗୋଟିଏ ଓକ୍ ବୃକ୍ଷରେ ଲୁକ୍‌କାୟିତ ରହି ତତ୍ପର ଦିବସ ବ୍ରାଇଟନ୍ ନାମକ ଇଂଲଣ୍ଡର ଏକ କ୍ଷୁଦ୍ର ଗ୍ରାମରେ ଉପନୀତ ହେଲେ । ସେଠାରୁ ଗୋଟିଏ କୋଇଲାବାହୀ ତରୀରେ ନରମାଣ୍ଡୀକୁ ପ୍ରସ୍ଥାନ କଲେ (୧୬୫୧) ।

ସାଧାରଣତନ୍ତ୍ରର କଦାଚାର

ଯେଉଁ ୮୦ ଜଣ ସଭ୍ୟ ଯେଉଁ ଇଂଲଣ୍ଡରେ ସେ ସମୟରେ ପାର୍ଲିମେଣ୍ଟ ଗଠିତ ହୋଇଥିଲା, ସେହି ସଭ୍ୟମାନେ ଦେଶର ସର୍ବେସର୍ବା ଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଅତ୍ୟନ୍ତ ସ୍ୱାର୍ଥପର ଥିଲେ । ସୁତରାଂ ଶାସନକାର୍ଯ୍ୟରେ ନାନାପ୍ରକାର ଅନ୍ୟାୟ ପ୍ରବେଶ କରିଥିଲା । ସେହି ସଭ୍ୟମାନେ ସ୍ୱାର୍ଥପ୍ରଣୋଦିତ ହୋଇ ସ୍ୱୀୟ ବନ୍ଧୁବାନ୍ଧବମାନଙ୍କୁ ଉଚ୍ଚ ରାଜକାର୍ଯ୍ୟମାନ ପ୍ରଦାନ କରି ସେମାନଙ୍କ ସହିତ ଯେଉଁମାନଙ୍କର ମତବିରୋଧ ଥିଲା, ସେମାନଙ୍କ ପ୍ରତି ନାନା ଅତ୍ୟାଚାର କରିବାକୁ ଲାଗିଲେ । ସୈନ୍ୟମାନଙ୍କ ସହିତ ମଧ୍ୟ ତାହାଙ୍କର ମତବିରୋଧ ଥିଲା । ସୁତରାଂ ସୈନ୍ୟମାନେ ଇଚ୍ଛା କରୁଥିଲେ ଯେ, ଦେଶର ଲୋକମାନଙ୍କ ଦ୍ୱାରା ନିର୍ବାଚିତ ନୂତନ ପାର୍ଲିମେଣ୍ଟ ଗଠିତ ହେଉ । କିନ୍ତୁ ଉକ୍ତ ସଭ୍ୟମାନେ ସ୍ୱୀୟ କ୍ଷମତା ହରାଇବା ଭୟରେ ଗୋଟିଏ ବିଲ୍ ଆଗତ କରିଥିଲେ ଯେ, ନୂତନ ପାର୍ଲିମେଣ୍ଟରେ ଉକ୍ତ ୮୦ଜଣ ସଭ୍ୟ ଲୋକଙ୍କ ଦ୍ୱାରା ନିର୍ବାଚିତ ନ ହୋଇ ମଧ୍ୟ ସଭ୍ୟ ରହିବେ ଏବଂ ନୂତନ ନିର୍ବାଚିତ ସଭ୍ୟମାନଙ୍କ ଅପେକ୍ଷା ସେମାନଙ୍କର ଅଧିକ କ୍ଷମତା ରହିବ । ଏହି ବିଲ ପାର୍ଲିମେଣ୍ଟରେ ମଞ୍ଜୁର ହେବା ସମୟରେ କ୍ରମ୍‌ୱେଲ୍ ସ୍ୱୀୟ ସୈନ୍ୟଦଳ ସହ ସେଠାରେ ଉପସ୍ଥିତ ହୋଇ ବଳପୂର୍ବକ ଉକ୍ତ ୮୦ଜଣ ସଭ୍ୟଙ୍କୁ ପାର୍ଲିମେଣ୍ଟ ଗୃହରୁ

ବହିଷ୍କୃତ କରି ଗୃହ ବନ୍ଦ କରିଥିଲେ । ଏହିରୂପେ ସୈନ୍ୟମାନେ ରାଜା ଓ ସାଧାରଣତନ୍ତ୍ରର ଧ୍ୱଂସ ସାଧନ କରିଥିଲେ ।

ପ୍ରଥମ ଚାର୍ଲସଙ୍କ ସମୟରେ ଦୀର୍ଘ ପାର୍ଲିମେଣ୍ଟର ଅବଶିଷ୍ଟ ଭାଗ (Rump) ଏହି ପ୍ରକାରେ ବହିଷ୍କୃତ ହେଲା ଉତ୍ତାରେ ଦେଶର ଶାସନ କାର୍ଯ୍ୟ ପରିଚାଳନା ନିମିତ୍ତ କ୍ରମୱେଲ ୧୪୦ ଜଣ ସଭ୍ୟଙ୍କ ଦ୍ୱାରା ଗଠିତ ଏକ ସଭା ଗଠନ କରିଥିଲେ । ଏହାର ସଭ୍ୟମାନେ ଧର୍ମଯାଜକମାନଙ୍କ ଦ୍ୱାରା ନିର୍ବାଚିତ ହୋଇଥିଲେ । ଲଣ୍ଡନ ନଗର ନିମିତ୍ତ ଯେଉଁ ସଭ୍ୟ ନିଯୁକ୍ତ ହୋଇଥିଲେ, ତାହାଙ୍କର ନାମ "ପ୍ରେଜ୍‌ଗଡ୍ ବେୟାର ବୋନ୍" ଥିବାରୁ ଏହି ସଭାର ନାମ "ବେୟାର ବୋନ୍ ପାର୍ଲିମେଣ୍ଟ" ହୋଇଥିଲା । ଆୟର୍‌ଲଣ୍ଡ, ସ୍କଟ୍‌ଲଣ୍ଡ ଓ ଓୟେଲସରୁ ୬ ଜଣ ଲେଖାଏଁ ସଦସ୍ୟ ଏହି ସଭାକୁ ଆହୂତ ହୋଇଥିଲେ । ଏହି ସଭ୍ୟମାନେ ନାନାପ୍ରକାର ଶାସନ-ସଂସ୍କାର କରିବାକୁ ଉଦ୍ୟତ ହୁଅନ୍ତେ ଶାସନକାର୍ଯ୍ୟରେ ନାନାପ୍ରକାର ଗୋଳମାଳ ଉପସ୍ଥିତ ହେଲା । ତହୁଁ କ୍ରମୱେଲ୍ ଓ ସୈନ୍ୟମାନଙ୍କୁ ବିରକ୍ତ ହେବାର ଦେଖି ସେମାନେ ସମସ୍ତ କ୍ଷମତା କ୍ରମୱେଲଙ୍କ ହସ୍ତରେ ସମର୍ପଣ କରି ୫ ମାସ ଉତ୍ତାରେ ସ୍ୱ ଗୃହକୁ ଫେରିଗଲେ ।

**ବେୟାର ବୋନ୍ ପାର୍ଲିମେଣ୍ଟ**

ବେୟାର ବୋନ ପାର୍ଲିମେଣ୍ଟ ଭଙ୍ଗ ହୁଅନ୍ତେ ୪୧ ଜଣ ମେମ୍ବରଙ୍କ ଦ୍ୱାରା ଗଠିତ "କାଉନ୍‌ସିଲ୍ ଅଫ ଷ୍ଟେଟ" ଦେଶର ଶାସନଭାର କ୍ରମୱେଲଙ୍କ ଉପରେ ନ୍ୟସ୍ତ କରି ତାହାଙ୍କୁ ଦେଶର "ରକ୍ଷାକର୍ତ୍ତା" (Lord Protector) ଉପାଧି ପ୍ରଦାନ କରିଥିଲେ । ଏହା 'ଶାସନଯନ୍ତ୍ର' (Instrument of Government) ନାମରେ ବିଦିତ । ଏତଦ୍ୱାରା

**କ୍ରମୱେଲ୍ ଦେଶର ଶାସନକର୍ତ୍ତା—୧୬୫୩**



କ୍ରମଓ୍ୱେଲ

କ୍ରମଓ୍ୱେଲ୍ ଅଜୀବନ ଦେଶର ଶାସନକର୍ତ୍ତା ପଦରେ ନିଯୁକ୍ତ ହେଲେ । ଇଂଲଣ୍ଡ, ସ୍କଟ୍‌ଲଣ୍ଡ ଓ ଆୟାର୍‌ଲଣ୍ଡ ଏକ ଶାସନାଧୀନ ଓ ଏକ ପାର୍ଲିମେଣ୍ଟର ଅଧୀନ ହେଲା । ବୈଦେଶିକ ଯୁଦ୍ଧ, ସନ୍ଧି ପ୍ରଭୃତି ସମସ୍ତ ଭାର କ୍ରମଓ୍ୱେଲଙ୍କ ହସ୍ତରେ ପ୍ରଦତ୍ତ ହେଲା; କିନ୍ତୁ ଦେଶର ନିୟମ ପ୍ରଣୟନ କରିବାର ଭାର କେବଳ ପାର୍ଲିମେଣ୍ଟ ବା ହାଉସ ଅଫ କମନ୍‌ସକୁ ପ୍ରଦତ୍ତ ହେଲା । କ୍ରମଓ୍ୱେଲଙ୍କୁ ୩ବର୍ଷ ମଧ୍ୟରେ ପାର୍ଲିମେଣ୍ଟ ଆହ୍ୱାନ କରିବାକୁ ହେବ ଓ ପାର୍ଲିମେଣ୍ଟ ଅଧିବେଶନର ୫ ମାସ ପୂର୍ବରୁ ତାହା ଭଙ୍ଗ ହୋଇ ପାରିବ ନାହିଁ । ଶାସନକାର୍ଯ୍ୟରେ କ୍ରମଓ୍ୱେଲଙ୍କୁ ସାହାଯ୍ୟ କରିବା ପାଇଁ ୨୧ ଜଣ ମେମ୍ବରଙ୍କ ଦ୍ୱାରା ଗଠିତ ଗୋଟିଏ କମିଟି ନିର୍ବାଚିତ ହେଲା । ଏହି ପ୍ରକାରେ ରାଜାଙ୍କ ମୃତ୍ୟୁର ୫ ବର୍ଷ ମଧ୍ୟରେ ସାଧାରଣତନ୍ତ୍ରର ବିଲୋପ ସାଧିତ ହୋଇ ଏକ ବ୍ୟକ୍ତିଙ୍କ ହସ୍ତରେ ପୁନର୍ବାର ସମସ୍ତ କ୍ଷମତା ନ୍ୟସ୍ତ ହୋଇଥିଲା । ଦେଶରେ "ସାମରିକ ଡିକ୍ଟେଟରସିପ" (Military Dictatorship) ପ୍ରତିଷ୍ଠିତ ହେଲା ।

ଧର୍ମ ବିଷୟରେ କ୍ରମଓ୍ୱେଲ ସ୍ୱାଧୀନ ମତାବଲମ୍ବୀ (Independent) ଥିଲେ । ସେ କାଥଲିକ ବ୍ୟତୀତ ସମସ୍ତ ପ୍ରୋଟେଷ୍ଟାଣ୍ଟ ମତାବଲମ୍ବୀ ବ୍ୟକ୍ତିମାନଙ୍କୁ ସ୍ୱ ସ୍ୱ ମତାନୁଯାୟୀ ଉପାସନା କରିବାର ଅଧିକାର ପ୍ରଦାନ କରି-

ଥିଲେ । ସାଧାରଣ ପ୍ରାର୍ଥନା ପୁସ୍ତକର ବ୍ୟବହାର ନିଷିଦ୍ଧ ହେଲା ।

**କ୍ରମୱେଲଙ୍କ ଶାସନ (ତାହାଙ୍କର ଧର୍ମନୀତି)**

ଧର୍ମଯାଜକମାନଙ୍କ ମଧ୍ୟରେ ଯେଉଁମାନେ ରାଜାଙ୍କ ଦଳଭୁକ୍ତ ଥିଲେ ବା ଯେଉଁମାନେ ବ୍ୟଭିଚାରୀ ଥିଲେ, ସେମାନଙ୍କ ବିଚାର ନିମିତ୍ତ ଏକ କମିସନ ନିଯୁକ୍ତ ହୋଇଥିଲା । ଯେଉଁମାନେ ଉକ୍ତ ଅପରାଧରେ ଅପରାଧୀ ଥିଲେ, ସେମାନଙ୍କୁ କାର୍ଯ୍ୟଚ୍ୟୁତ କରଗଲା । ସେମାନେ କୌଣସି ଗୃହସ୍ଥ ଗୃହରେ ପୌରୋହିତ୍ୟ କରିବାକୁ ବା କୌଣସି ସ୍କୁଲରେ ଶିକ୍ଷା ଦେବାକୁ ନିଷିଦ୍ଧ ହେଲେ ।

କ୍ରମୱେଲ ଶାସନଭାର ପ୍ରାପ୍ତ ହୋଇ ଶାସନବ୍ୟବସ୍ଥାରେ ମନୋନିବେଶ କରିଥିଲେ । ସେ ଇଂଲଣ୍ଡକୁ ଦଶଟି ଜିଲ୍ଲାରେ ଭାଗ କରି ପ୍ରତ୍ୟେକ ଜିଲ୍ଲାରେ

**କ୍ରମୱେଲଙ୍କ ରାଜନୀତି**

ଏକ ଏକ ଜଣ ମେଜର ଜେନେରେଲ୍ ନିଯୁକ୍ତ କଲେ । ଶାସନ ବ୍ୟୟନିର୍ବାହାର୍ଥ ସେ 'ରୟାଲ୍ଷ୍ଟ' ମାନଙ୍କ ଆୟର ଶତକରା ଦଶ ହାରରେ କର ଆଦାୟ କଲେ । ଜର୍ଜମଙ୍କ ନାମକ ତାହାଙ୍କର ଏକ ସେନାନାୟକ ସ୍କଟଲଣ୍ଡର ଶାସନଭାର ପ୍ରାପ୍ତ ହୋଇ ସେଠାକୁ ପ୍ରେରିତ ହେଲେ । ସ୍କଟଲଣ୍ଡ ଓ ଇଂଲଣ୍ଡ ଏକ ଶାସନାଧୀନ ହେବାରୁ ସ୍କଟଲଣ୍ଡରେ ବାଣିଜ୍ୟର ଉନ୍ନତି ସଙ୍ଗେ ସଙ୍ଗେ ଅର୍ଥର ଉନ୍ନତି ମଧ୍ୟ ହେଲା । ମାତ୍ର କ୍ରମୱେଲଙ୍କ ଶାସନ କାଳରେ ଆୟର୍ଲଣ୍ଡ ନାନାପ୍ରକାରରେ ନିଗୃହୀତ ହେଲା । ଆୟର୍ଲଣ୍ଡର ଶାସନଭାର କ୍ରମୱେଲଙ୍କ ଦ୍ୱିତୀୟ ପୁତ୍ର ହେନେରୀ କ୍ରମୱେଲଙ୍କୁ ପ୍ରଦତ୍ତ ହେଲା । ସେ ସେଠାରେ ଉପସ୍ଥିତ ହୋଇ କାଥଲିକ୍ ଓ ଯେଉଁମାନେ ରାଜାଙ୍କ ସପକ୍ଷରେ ଥିଲେ, ସେମାନଙ୍କ ସମ୍ପତ୍ତି ବାଜେୟାପ୍ତ କରି କ୍ରମୱେଲଙ୍କ ଅନୁଚରମାନଙ୍କୁ ପ୍ରଦାନ କଲେ । ଏତଦ୍ଦ୍ୱାରା ଆୟର୍ଲଣ୍ଡର ଲୋକମାନେ ସର୍ବସ୍ୱାନ୍ତ ହେଲେ ।

ଇଂଲଣ୍ଡର ସୁଶାସନ ନିମିତ୍ତ ସେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଶିକ୍ଷାର ବିସ୍ତାର ନିମିତ୍ତ ଅକ୍ସଫୋର୍ଡସ୍ଥ ଏକ ଲାଇବ୍ରେରୀକୁ ବହୁ ପୁସ୍ତକ

ପ୍ରଦାନ କରିଥିଲେ ଓ ଦରିଦ୍ରମାନଙ୍କ ସୁବିଧାର ନିମିତ୍ତ ସେ ବିଗୃଢ଼ କାର୍ଯ୍ୟର ବ୍ୟୟ ସଙ୍କୋଚ କରିଥିଲେ ।

ନିୟମାନୁଯାୟୀ ଦେଶଶାସନ ନିମିତ୍ତ ସେ ୧୬୫୪ ଖ୍ରୀଷ୍ଟାବ୍ଦରେ ତାହାଙ୍କର ପ୍ରଥମ ପାର୍ଲିମେଣ୍ଟ ଅହ୍ୱାନ କଲେ । ନୂତନ ପ୍ରତିଷ୍ଠିତ ନଗର-

ତାହାଙ୍କ ପ୍ରଥମ ପାର୍ଲିମେଣ୍ଟ—୧୬୫୪

ମାନଙ୍କୁ ସଭ୍ୟ ନିର୍ବାଚିତ କରିବାର କ୍ଷମତା ପ୍ରଦତ୍ତ ହୋଇଥିଲା । ଇଂଲଣ୍ଡରୁ ୪୦୦, ସ୍କଟଲଣ୍ଡରୁ ୩୦ ଓ ଆୟର୍ଲାଣ୍ଡରୁ ୩୦ ସଭ୍ୟ ନିର୍ବାଚିତ ହେଲେ । କିନ୍ତୁ ଦେଶର ସମସ୍ତ ଶାସନଭାର ଏକ ବ୍ୟକ୍ତିଙ୍କ ହସ୍ତରେ ନ୍ୟସ୍ତ ଥିବାରୁ ଏହି ପାର୍ଲିମେଣ୍ଟର ସଭ୍ୟମାନେ ଘୋର ଆପତ୍ତି କଲେ । କ୍ରମ୍ୱେଲ ବିରକ୍ତ ହୋଇ ପାଞ୍ଚ ମାସ ଭିତରେ ଏହା ଭଙ୍ଗ କଲେ । ରାଜାଙ୍କ ପକ୍ଷୀୟ ଲୋକମାନେ କ୍ରମ୍ୱେଲ ଓ ତାହାଙ୍କର ପାର୍ଲିମେଣ୍ଟ ମଧ୍ୟରେ ବିବାଦ ଲକ୍ଷ୍ୟ କରି ତାହାଙ୍କ ବିରୁଦ୍ଧରେ ନାନାପ୍ରକାର ଷଡ଼ଯନ୍ତ୍ର କଲେ । ଏହି ଷଡ଼ଯନ୍ତ୍ରଗୁଡ଼ିକ ନିଷ୍ଫଳ ହୋଇଥିଲା ସତ୍ୟ; ମାତ୍ର ଭବିଷ୍ୟତରେ ଉକ୍ତ ପ୍ରକାର ଷଡ଼ଯନ୍ତ୍ର ଯେପରି ନ ହୁଏ, ସେଥିପାଇଁ କ୍ରମ୍ୱେଲ ଇଂଲଣ୍ଡକୁ ୧୦ ଗୋଟି ପ୍ରଦେଶ ବା ବିଭାଗରେ ବିଭକ୍ତ କରି ପ୍ରତ୍ୟେକର ଶାସନଭାର ଏକ ଏକ ସେନାପତି (Major General)ଙ୍କ ହସ୍ତରେ ଅର୍ପଣ କରିଥିଲେ । ଏହି ସେନାପତିମାନେ ରାଜାଙ୍କ ପକ୍ଷୀୟ (Royalist) ଜମିଦାରମାନଙ୍କ ଅସ୍ତ୍ରରୁ ସ୍ୱ ସ୍ୱ ବ୍ୟୟ ନିର୍ବାହ କରିବାକୁ ଲାଗିଲେ । ମୁଦ୍ରାଯନ୍ତ୍ର, ଥିଏଟର ଓ ଅନ୍ୟାନ୍ୟ ସାଧାରଣ ଉତ୍ସବ ପ୍ରଭୃତି ନିଷିଦ୍ଧ ହେଲା ।

ବୈଦେଶିକ ରାଜନୀତି

କ୍ରମ୍ୱେଲଙ୍କ ବୈଦେଶିକ ରାଜନୀତି ହେତୁ ଇଂଲଣ୍ଡ ଇଉରୋପରେ ଅତ୍ୟନ୍ତ ସମ୍ମାନ ଲାଭ କରିଥିଲା ଓ ଇଂଲଣ୍ଡର ଆର୍ଥିକ ଅବସ୍ଥାର ପ୍ରଭୂତ ଉନ୍ନତି ହୋଇଥିଲା ।

ହଲାଣ୍ଡ ଚାର୍ଲସଙ୍କ ସପକ୍ଷରେ ଥିବାରୁ ଇଂଲଣ୍ଡର ସାଧାରଣତନ୍ତ୍ରକୁ ଘୃଣା କରୁଥିଲା । ସାଧାରଣତନ୍ତ୍ରର ଦୂତ ବା ପ୍ରତିନିଧି ହଲାଣ୍ଡକୁ ପ୍ରେରିତ ହେବାରୁ ସେଠାର ଲୋକମାନେ ତାହାଙ୍କୁ ହତ୍ୟା କରିଥିଲେ ; ସେଥିପାଇଁ ଇଂରାଜ ପାର୍ଲିମେଣ୍ଟ ସହିତ ସେମାନଙ୍କ ବିରୋଧ ଉପସ୍ଥିତ ହେଲା ।

**ହଲାଣ୍ଡ ସହିତ ଯୁଦ୍ଧ**

୯) N୦॥

ଡଚମାନେ ସେ ସମୟରେ ନାନାଦେଶରେ ଉପନିବେଶ ସ୍ଥାପନ କରି ବାଣିଜ୍ୟର ଯଥେଷ୍ଟ ଉନ୍ନତି କରିଥିଲେ । ତାହାଙ୍କର ବାଣିଜ୍ୟ-ତରୀସମୂହ ଅପର ଦେଶମାନଙ୍କ ବାଣିଜ୍ୟରେ ମଧ୍ୟ ନିଯୁକ୍ତ ଥିଲା ଏବଂ ତଦ୍ଦ୍ୱାରା ସେମାନେ ପ୍ରଚୁର ଲାଭବାନ୍ ହେଉଥିଲେ । ସେଥିପାଇଁ ସ୍ୱ ଦେଶର ବାଣିଜ୍ୟ ବୃଦ୍ଧିକଳ୍ପେ ଇଂରାଜ ପାର୍ଲିମେଣ୍ଟ "ନେଭିଗେସନ ଆକ୍ଟ"(Navigation Act) ନାମକ ଏକ ଆଇନ ପ୍ରଣୟନ କରିଥିଲେ । ଏତଦ୍ଦ୍ୱାରା ବୈଦେଶିକ ବଣିକମାନେ ଇଂରେଜ ପୋତ ବା ସ୍ୱଦେଶର ପୋତ ବ୍ୟତୀତ ଅପର କୌଣସି ପୋତରେ ବାଣିଜ୍ୟ ଦ୍ରବ୍ୟ ଇଂଲଣ୍ଡକୁ ଆଣିବାକୁ ନିଷିଦ୍ଧ ହୋଇଥିଲେ । ଡଚମାନଙ୍କର ସେ ସମୟରେ ବହୁସଂଖ୍ୟକ ତରୀ ବୈଦେଶିକମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିଲା । ସୁତରାଂ ସେମାନଙ୍କର ଅତ୍ୟନ୍ତ କ୍ଷତି ହେବାରୁ ଇଂଲଣ୍ଡ ସହିତ ହଲାଣ୍ଡର ଯୁଦ୍ଧ ଘୋଷିତ ହେଲା ।

ଇଂଲିସ ଚ୍ୟାନେଲରେ ହଲାଣ୍ଡ ନୌବହର ଆଡମିରାଲ ଟ୍ରମ୍ପଙ୍କ ଅଧିନାୟକତ୍ୱରେ ଇଂରାଜ ନୌବହର ଆକ୍ରମଣ କରିଥିଲା । ମାତ୍ର ଏହି ଯୁଦ୍ଧରେ ହଲାଣ୍ଡ ପରାଜିତ ହେଲା । ତତ୍ପରବର୍ଷ ଟ୍ରମ୍ପ ବ୍ଲେକଙ୍କ ଦ୍ୱାରା ଚାଳିତ ଇଂରାଜ ନୌବହରକୁ ପରାସ୍ତ କରି ସ୍ୱୀୟ ପୋତର ମାସ୍ତୁଲର ଅଗ୍ରଭାଗରେ ଏକ ସମ୍ମାର୍ଜନୀ ବନ୍ଧନପୂର୍ବକ ପ୍ରକାଶ କରିଥିଲେ ଯେ, ସେ ଇଂରାଜମାନଙ୍କୁ ତାଙ୍କର ସମ୍ମାର୍ଜନୀ ଦ୍ୱାରା ଇଂଲିସ ଚ୍ୟାନେଲରୁ ଦୂର କରି ଦେଇଅଛନ୍ତି; କିନ୍ତୁ ପରବର୍ଷ ଡଚମାନେ ବ୍ଲେକଙ୍କ ଦ୍ୱାରା ପରାଜିତ ଓ ତାହାଙ୍କର

ଆଡମିରାଲ ଟ୍ରମ୍ପ ନିହତ ହୋଇଥିଲେ । ଏହି ଯୁଦ୍ଧ ଜୟରେ ଇଂଲଣ୍ଡର ସାଧାରଣତନ୍ତ୍ର ବିଦେଶରେ ସମ୍ମାନ ଲାଭ କରିଥିଲା ଓ ସମୁଦ୍ର ଉପରେ ଇଂରାଜମାନଙ୍କ ଆଧିପତ୍ୟ ବର୍ଦ୍ଧିତ ହୋଇଥିଲା ।

ସ୍ପେନ ସହିତ ଯୁଦ୍ଧ

ସ୍ପେନ ସେ ସମୟରେ ଅତ୍ୟନ୍ତ ଶକ୍ତିଶାଳୀ କାଥଲିକ୍ ଥିବାରୁ ତାହା ସହିତ ମିତ୍ରତା ସ୍ଥାପନ କରିବାକୁ ଚେଷ୍ଟା କରି ପ୍ରଥମ ଜେମସ ଲୋକମାନଙ୍କର ବିରାଗଭାଜନ ହୋଇଥିଲେ । ସେଥିପାଇଁ କ୍ରମୱେଲ ଏଲିଜାବେଥଙ୍କ ତୁଲ୍ୟ ଫ୍ରାନ୍ସ ସହିତ ମିଳିତ ହୋଇ ସ୍ପେନଦ୍ୱାରା ନିଗୃହୀତ ପ୍ରୋଟେଷ୍ଟାଣ୍ଟ ଧର୍ମରକ୍ଷାକଳ୍ପେ ତାହା ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ସ୍ପେନ, ଇଂଲଣ୍ଡ ଓ ଫ୍ରାନ୍ସର ମିଳିତ ସୈନ୍ୟ ଦ୍ୱାରା "ଡ଼ିଉନସ୍" ନାମକ ସ୍ଥାନରେ ପରାଜିତ ହେଲା । ଏହି ଯୁଦ୍ଧ ଫଳରେ ପ୍ରୋଟେଷ୍ଟାଣ୍ଟମାନଙ୍କ ପ୍ରତି ଅତ୍ୟାଚାର ନିବାରିତ ହେଲା । ଇଂଲଣ୍ଡ ଇଉରୋପରେ ଡନକାର୍କ ଓ ଅମେରିକାରେ ଜାମେକା ପ୍ରାପ୍ତ ହେବାରୁ ତାହାର ପ୍ରତିପତ୍ତି ଯଥେଷ୍ଟ ବୃଦ୍ଧି ପାଇଲା ।

ତାହାଙ୍କର ଦ୍ୱିତୀୟ ପାର୍ଲିମେଣ୍ଟ ୧୬୫୬

ପ୍ରୋଟେଷ୍ଟାଣ୍ଟ ଧର୍ମରକ୍ଷାକଳ୍ପେ କ୍ରମୱେଲ ସ୍ପେନ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇ ତାହାଙ୍କର ଦ୍ୱିତୀୟ ପାର୍ଲିମେଣ୍ଟ ଆହ୍ୱାନ କରିଥିଲେ । ଯେଉଁ ସାଧାରଣତନ୍ତ୍ର ଲୋକମାନେ ତାହାଙ୍କର ବିରୋଧୀ ଥିଲେ ସେମାନଙ୍କୁ ପାର୍ଲିମେଣ୍ଟରେ ସ୍ଥାନ ପ୍ରଦତ୍ତ ହେଲା ନାହିଁ । ଏହି ପାର୍ଲିମେଣ୍ଟ ଆରମ୍ଭ ହୁଅନ୍ତେ ମେମ୍ବରମାନେ କ୍ରମୱେଲଙ୍କୁ ଏକ ଆବେଦନ କରିଥିଲେ (Humble petition and Advice) । ତହିଁରେ ପାର୍ଲିମେଣ୍ଟ କ୍ରମୱେଲଙ୍କୁ ନୂତନ ହାଉସ ଅଫ୍ ଲର୍ଡ୍ସ ଗଠନ କରିବାକୁ କହି ପ୍ରାଦେଶିକ ଶାସନକର୍ତ୍ତା ସେନାନାୟକମାନଙ୍କଠାରୁ (Major Generals) ଶାସନଭାର ଗ୍ରହଣ କରିବାକୁ ଅନୁରୋଧ କରିଥିଲେ ଏବଂ ତାହାଙ୍କୁ ରାଜା ଆଖ୍ୟା ପ୍ରଦାନ କରିବାକୁ ଉଦ୍ୟତ ହୋଇଥିଲେ । ସୈନ୍ୟମାନଙ୍କ ବିରୋ

ଭୟରେ ସେ ରାଜା ଆଖ୍ୟା ପ୍ରତ୍ୟାଖ୍ୟାନ କରି ଏକ ନୂତନ ହାଉସ ଅଫ୍ ଲର୍ଡ୍‌ସ ଗଠନ କରିଥିଲେ ଏବଂ ସେନାନାୟକମାନଙ୍କ ହସ୍ତରୁ ପ୍ରାଦେଶିକ ଶାସନଭାର ଗ୍ରହଣ କରିଥିଲେ । ତହୁଁ ପାର୍ଲିମେଣ୍ଟ ତାହାଙ୍କୁ ତାହାଙ୍କ ଉତ୍ତରାଧିକାରୀ ମନୋନୀତ କରିବାର ଅଧିକାର ପ୍ରଦାନ କରି ଗୋଟିଏ ତରବାରୀ ଓ ଗୋଟିଏ ଶାସନଦଣ୍ଡ ଉପହାର ଦେଲେ । ଏହି ପାର୍ଲିମେଣ୍ଟର ଦ୍ୱିତୀୟ ଅଧିବେଶନ ସମୟରେ ହାଉସ ଅଫ୍ କମନ୍‌ସ ସହିତ ନୂତନ ହାଉସ ଅଫ୍ ଲର୍ଡ୍‌ସର କଳହ ହେବାରୁ କ୍ରମଓ୍ୱେଲ ବାଧ୍ୟ ହୋଇ ପାର୍ଲିମେଣ୍ଟ ଭଙ୍ଗକଲେ ।

କ୍ରମଓ୍ୱେଲଙ୍କ ମୃତ୍ୟୁ

ଦ୍ୱିତୀୟ ପାର୍ଲିମେଣ୍ଟ ଭଙ୍ଗ କରିବାର ଅଳ୍ପଦିନ ଉତ୍ତାରେ କ୍ରମଓ୍ୱେଲ ମୃତ୍ୟୁମୁଖରେ ପତିତ ହୋଇଥିଲେ । ସ୍ୱଦେଶର ଜନ୍ୟ ସିଦ୍ଧିକଲ୍ପେ ସେ ଆଜୀବନ ଅକ୍ଳାନ୍ତ ପରିଶ୍ରମ କରିଥିବାରୁ ୫୯ ବର୍ଷ ବୟସରେ ତାହାଙ୍କର ସ୍ୱାସ୍ଥ୍ୟ ଭଙ୍ଗ ହୋଇଥିଲା । ଦେଶର କେତେକ ଲୋକ ତାହାଙ୍କ ଶାସନରେ ସନ୍ତୁଷ୍ଟ ନ ଥିଲେ; ସୁତରାଂ ତାହାଙ୍କୁ ହତ୍ୟା କରିବା ପାଇଁ ନାନାପ୍ରକାର ଷଡ଼୍‌ଯନ୍ତ୍ର ହୋଇଥିଲା । ଏହି ସମୟରେ ଲେଡି କ୍ଲେପୋଲ ନାମ୍ନୀ ପ୍ରିୟ କନ୍ୟାଙ୍କ ମୃତ୍ୟୁ ହେବାରୁ କ୍ରମଓ୍ୱେଲଙ୍କର ଏହି ଆଘାତ ଅସହ୍ୟ ହୋଇ ପଡିଲା । ସେ ୧୬୫୯ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ମାସ ୩ ତାରିଖ ହଠାତ ଜ୍ୱରବେଗରେ ପ୍ରାଣତ୍ୟାଗ କଲେ ।

ସାଧାରଣତନ୍ତ୍ରର ପତନ

କ୍ରମଓ୍ୱେଲଙ୍କ ମୃତ୍ୟୁ ହେବାରୁ ତାହାଙ୍କର ପୁତ୍ର ରିଚାର୍ଡ କ୍ରମଓ୍ୱେଲ ଇଂଲଣ୍ଡର ଶାସନକର୍ତ୍ତା ହୋଇଥିଲେ; ମାତ୍ର ସେ ଅତ୍ୟନ୍ତ ଶାନ୍ତପ୍ରକୃତିବିଶିଷ୍ଟ ଓ ଶାସନକାର୍ଯ୍ୟରେ ଅପଟୁ ଥିଲେ । ଶାସନଭାର ଗ୍ରହଣ କରିବାକୁ ମଧ୍ୟ ତାହାଙ୍କର ବିଶେଷ ଇଚ୍ଛା ନ ଥିଲା । ଯାହାହେଉ, ପିତାଙ୍କ ମୃତ୍ୟୁ ପରେ ସେ ଲୋକମାନଙ୍କ ଦ୍ୱାରା ଦେଶର ଶାସନକର୍ତ୍ତାରୂପେ ମନୋନୀତ

ହୋଇ ତାହାଙ୍କ ପ୍ରଥମ ପାର୍ଲିମେଣ୍ଟ ଆହ୍ୱାନ କରିଥିଲେ । ପାର୍ଲିମେଣ୍ଟ ଓ ସୈନ୍ୟବାହିନୀ ମଧ୍ୟରେ କଳହ ଉପସ୍ଥିତ ହୁଅନ୍ତେ ସେ ପାର୍ଲିମେଣ୍ଟ ଭଙ୍ଗକରି ସ୍ୱୟଂ ଶାସନଭାର ପରିତ୍ୟାଗ କଲେ । ସୈନ୍ୟମାନେ ତହୁଁ କ୍ରମୱେଲଙ୍କ ଦ୍ୱାରା ତାଡ଼ିତ ଦୀର୍ଘ ପାର୍ଲିମେଣ୍ଟର ଅବଶିଷ୍ଟ ଅଂଶ ( Rump ) କୁ ଆହ୍ୱାନ କଲେ; ମାତ୍ର ଅଳ୍ପଦିନ ମଧ୍ୟରେ "ରମ୍ପ" ସହିତ ସୈନ୍ୟମାନଙ୍କର କଳହ ହେବାରୁ ଏହା ପୁନର୍ବାର ସୈନ୍ୟମାନଙ୍କ ଦ୍ୱାରା ତାଡ଼ିତ ହେଲା । ଦେଶ ଅରାଜକତାରେ ପୂର୍ଣ୍ଣ ହେଲା । ଏହି କାରଣରୁ ସ୍କଟ୍‌ଲଣ୍ଡର ଶାସନକର୍ତ୍ତା ଜେନେରଲ ମଙ୍କ ସ୍ୱୀୟ ସୈନ୍ୟବଳ ସହ ଇଂଲଣ୍ଡକୁ ଆଗମନ କରି ସମସ୍ତ ମେମ୍ବରମାନଙ୍କ ସହ ଦୀର୍ଘ ପାର୍ଲିମେଣ୍ଟ ଆହ୍ୱାନ କରିଥିଲେ । ଏହି ପୁରାତନ ଦୀର୍ଘ ପାର୍ଲିମେଣ୍ଟ ପୁନରାୟ ଏକତ୍ର ହୋଇ ଏକ ନୂତନ ପାର୍ଲିମେଣ୍ଟ ଆହ୍ୱାନର ଅନୁମତି ଦେଲେ । ତଦନୁସାରେ ଏକ ନୂତନ ପାର୍ଲିମେଣ୍ଟ ଆହୂତ ହେଲା । ଏହି ପାର୍ଲିମେଣ୍ଟ କୌଣସି ରାଜାଙ୍କ ଦ୍ୱାରା ଆହୂତ ନ ହେବାରୁ ଏହା 'କନଭେନସନ୍ ପାର୍ଲିମେଣ୍ଟ' ନାମରେ ବିଦିତ । ଏହି ପାର୍ଲିମେଣ୍ଟ ପ୍ରଥମ ଚାର୍ଲସଙ୍କ ପୁତ୍ର ଯୁବରାଜ ଚାର୍ଲସଙ୍କୁ ଇଂଲଣ୍ଡ ସିଂହାସନ ଆରୋହଣ କରିବାକୁ ଆହ୍ୱାନ କରିଥିଲା । ଯୁବରାଜ ଚାର୍ଲସ ହଲଣ୍ଡର 'ବ୍ରେଡା' ନାମକ ସ୍ଥାନରେ ଘୋଷଣା କରିଥିଲେ ଯେ, ସେ ପାର୍ଲିମେଣ୍ଟ ମତାନୁଯାୟୀ ଦେଶ ଶାସନ କରିବେ, କ୍ରମୱେଲଙ୍କ ପକ୍ଷୀୟ ଲୋକମାନଙ୍କୁ କ୍ଷମା କରିବେ ଓ କାହାରି ଧର୍ମରେ ହସ୍ତକ୍ଷେପ କରିବେ ନାହିଁ । ପାର୍ଲିମେଣ୍ଟର ଆହ୍ୱାନରେ ଚାର୍ଲସ ଇଂଲଣ୍ଡ ଆଗମନ କରି ପୁଷ୍ପସଜ୍ଜିତ ଆନନ୍ଦ କୋଳାହଳପୂର୍ଣ୍ଣ ରାଜମାର୍ଗରେ ଅଗ୍ରସର ହୋଇ ଲଣ୍ଡନରେ ପ୍ରବେଶ କଲେ । ୧୬୬୦ ମେ, ୨୯, (ତାହାଙ୍କର ଜନ୍ମଦିବସ) ଇତିହାସରେ ଏହା 'ରେଷ୍ଟୋରେଶନ' (Restoration) ନାମରେ ବିଦିତ ।

---

# ଦ୍ୱିତୀୟ ଚାର୍ଲସ୍ ।

ଜନ୍ମ—୧୬୩୦ । ରାଜତ୍ୱ—୧୬୬୦-୧୬୮୫ ର ୨୫ ବର୍ଷ



**ଚାର୍ଲସଙ୍କ ସିଂହାସନ ପ୍ରାପ୍ତିରେ ଦେଶର ଅବସ୍ଥା ।**

ଚାର୍ଲସଙ୍କ ସିଂହାସନ ପ୍ରାପ୍ତି ସଙ୍ଗେ ସଙ୍ଗେ ଇଂଲଣ୍ଡର ଅବସ୍ଥା ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଥିଲା । ଏହି ପରିବର୍ତ୍ତନ ତିନି ଦିଗରେ ଲକ୍ଷିତ ହୋଇଥିଲା । ଯଥାः— ସାମାଜିକ, ରାଜନୈତିକ, ଧର୍ମନୈତିକ ।

**ସାମାଜିକ**

କ୍ରମୱେଲଙ୍କ କଠୋର ଶାସନ ଓ ନୈଷ୍ଠିକ ଶାନ୍ତିଗାନ୍ଧରେ ଅଧିକାଂଶ ଲୋକ ବିରକ୍ତ ହୋଇ ପଡ଼ିଥିଲେ । ସୁତରାଂ ଆମୋଦପ୍ରିୟ ଚାର୍ଲସ୍ ସିଂହାସନ ଆରୋହଣ କଲାରୁ ଲୋକମାନେ ଆମୋଦପ୍ରିୟ ହୋଇ ପଡ଼ିଲେ । ଦେଶରେ ଅବାଧ ବିଳାସ-ସ୍ରୋତ ପ୍ରବାହିତ ହେଲା । ଧନମତ୍ତ ଲୋକମାନଙ୍କ ହେତୁ ରାସ୍ତାରେ ଯାତାୟାତ ବିପଜ୍ଜନକ ହୋଇ ପଡ଼ିଲା । କ୍ରମୱେଲଙ୍କ ଉପାସନା ସଭା ପରିବର୍ତ୍ତରେ ରଙ୍ଗାଳୟ, ପାନାଗାର ପ୍ରଭୃତି ସ୍ଥାପିତ ହେଲା ।

**ଧର୍ମନୈତିକ**

ପିଉରିଟାନମାନଙ୍କ କଠୋର ନିୟମ ଲୋକମାନେ ଭଲ ପାଉ ନ ଥିଲେ । ସୁତରାଂ ଚାର୍ଲସଙ୍କ ସିଂହାସନ ପ୍ରାପ୍ତି ସଙ୍ଗେ ସଙ୍ଗେ ଇଂଲଣ୍ଡରେ ପୁରାତନ ଏପିସ୍କୋପେସି ପ୍ରତିଷ୍ଠିତ ହୋଇ ପିଉରିଟାନମାନଙ୍କ ବିରୁଦ୍ଧରେ କଠୋର ନିୟମମାନ ପ୍ରବର୍ତ୍ତିତ ହୋଇଥିଲା । ଲୋକମାନେ ନୈଷ୍ଠିକ ଜୀବନଯାପନ ପରିବର୍ତ୍ତରେ ଦୁର୍ନୀତିପରାୟଣ ଓ ବ୍ୟଭିଚାରୀ ହୋଇ ପଡ଼ିଲେ ।

**ରାଜନୈତିକ**

ରାଜା ପୂର୍ବପରି ସ୍ୱେଚ୍ଛାଚାରୀ ବା ପାର୍ଲିମେଣ୍ଟର ବିରୁଦ୍ଧାଚାରୀ ନ ହୋଇ ତାହାର ପରାମର୍ଶମତେ ଶାସନଯନ୍ତ୍ର ପରିଚାଳନ କରିବାକୁ ଲାଗିଲେ । ପାର୍ଲିମେଣ୍ଟର କ୍ଷମତା ଯଥେଷ୍ଟ ବୃଦ୍ଧିପ୍ରାପ୍ତ ହେଲା ।

**ଚାର୍ଲସଙ୍କ ଚରିତ୍ର**

ସିଂହାସନ ଆରୋହଣ ସମୟରେ ଚାର୍ଲସଙ୍କୁ ୩୨ ବର୍ଷ ହୋଇଥିଲା । ୧୯ ବର୍ଷ ବୟସରୁ ବିଦେଶ ଭ୍ରମଣଦ୍ୱାରା ନାନା ଲୋକଙ୍କ ସଂସର୍ଗରେ ରହି ସେ ଯଥେଷ୍ଟ ଜ୍ଞାନ ଲାଭ କରିଥିଲେ । ସେ ଅତ୍ୟନ୍ତ ଚତୁର ଏବଂ ବୁଦ୍ଧିମାନ୍ ଥିଲେ ଏବଂ ଅବସ୍ଥା ବୁଝି ବ୍ୟବସ୍ଥା କରୁଥିଲେ । କିନ୍ତୁ ତାହାଙ୍କର ଚରିତ୍ର ଅତ୍ୟନ୍ତ ଆଳସ୍ୟପରାୟଣ ଓ ବିଳାସପ୍ରିୟ ଥିଲା । ସୁତରାଂ ଦେଶର ଉନ୍ନତି ପ୍ରତି ତାଙ୍କର ଦୃଷ୍ଟି ନ ଥିଲା । କେବଳ ଦୁଇ ଗୋଟି ବିଷୟ ତାଙ୍କର ଜୀବନର

ଲକ୍ଷ୍ୟ ଥିଲା । ସେ କାଥଲିକ୍ ଧର୍ମାନୁରାଗୀ ଥିଲେ ଏବଂ କାଥଲିକ୍ ଧର୍ମ ପ୍ରବର୍ତ୍ତନ ନିମିତ୍ତ ତାହାଙ୍କର ଆନ୍ତରିକ ଇଚ୍ଛା ଓ ଚେଷ୍ଟା ଥିଲା । କାରଣ ତାଙ୍କର ବିଶ୍ୱାସ ଥିଲା ଯେ, ପ୍ରୋଟେଷ୍ଟାଣ୍ଟମାନେ ରାଜଦ୍ରୋହୀ । ମାତ୍ର ସେ ଲୋକମତ ବିରୁଦ୍ଧରେ ପ୍ରକାଶ୍ୟଭାବରେ କାଥଲିକ୍ ଧର୍ମ ପ୍ରବର୍ତ୍ତନ ପାଇଁ ଚେଷ୍ଟା କରୁ ନ ଥିଲେ । ସେ ଅତ୍ୟନ୍ତ ଆମୋଦପ୍ରିୟ ଥିଲେ । ସୁତରାଂ ବିଳାସ ବାସନା ଚରିତାର୍ଥ କରିବାପାଇଁ ପାର୍ଲିମେଣ୍ଟର ଅନୁଗତ ହୋଇ ଅର୍ଥ ସଞ୍ଚୟ କରିବା ତାହାଙ୍କର ଦ୍ୱିତୀୟ ଉଦ୍ଦେଶ୍ୟ ଥିଲା ।

କନଭେନସନ୍ ପାର୍ଲିମେଣ୍ଟ ଚାର୍ଲସଙ୍କୁ ଇଂଲଣ୍ଡର ସିଂହାସନ ପ୍ରଦାନ କରି ବିଦାୟ ଗ୍ରହଣ କରିବା ପୂର୍ବେ କେତେଗୁଡ଼ିଏ ନିୟମ ପ୍ରବର୍ତ୍ତନ କରିଥିଲେ । (୧) ଯେଉଁ ଲୋକମାନେ ପ୍ରଥମ ଚାର୍ଲସଙ୍କ ବିଚାର କରି ତାହାଙ୍କୁ ମୃତ୍ୟୁଦଣ୍ଡ ପ୍ରଦାନ କରିଥିଲେ, ସେମାନଙ୍କ ମଧ୍ୟରୁ ଯେଉଁମାନେ ଜୀବିତ ଥିଲେ ସେମାନଙ୍କୁ ପ୍ରାଣଦଣ୍ଡ ପ୍ରଦତ୍ତ ହେଲା । କ୍ରମୱେଲ ଓ ତାହାଙ୍କର ଜାମାତା ଇରଟନ୍ ଓ ଅନ୍ୟାନ୍ୟ କେତେକ ରାଜଦ୍ରୋହୀ ବ୍ୟକ୍ତିଙ୍କ ମୃତଦେହ କବରରୁ ଉଠାଇନେଇ ଫାଶିକାଠରେ ଝୁଲାଇ ଦିଆଗଲା । ମାତ୍ର ଯେଉଁ ବ୍ୟକ୍ତିମାନେ କେବଳ ପାର୍ଲିମେଣ୍ଟ ପକ୍ଷରେ ଯୋଗ ଦେଇଥିଲେ, ସେମାନଙ୍କୁ "କ୍ଷମା ଓ ବିସ୍ମରଣ" (Act of indemnity and oblivion) ନାମକ ଏକ ନିୟମଦ୍ୱାରା କ୍ଷମା ପ୍ରଦତ୍ତ ହେଲା ।

କନ୍‌ଭେନସନ୍ ପାର୍ଲିମେଣ୍ଟର କାର୍ଯ୍ୟାବଳୀ

(୨) ପୂର୍ବେ ଲୋକମାନେ ଯୁଦ୍ଧ ସମୟରେ ସୈନ୍ୟ ଓ ଅର୍ଥଦ୍ୱାରା ରାଜାଙ୍କୁ ସାହାଯ୍ୟ କରିବେ ବୋଲି ଜମି ଭୋଗ କରୁଥିଲେ । ସେମାନଙ୍କୁ "ଫିଉଡାଲ ଡିଉଜ" ( Feudal dues ) ନାମକ କର ଦେବାକୁ ହେଉଥିଲା । ଏହି କର ସ୍ଥଗିତ କରା ହେଲା । ରାଜାଙ୍କ କ୍ରୀତ ଦ୍ରବ୍ୟମାନ

ପୂର୍ବେ ଲୋକମାନଙ୍କ ଯାନାଦରେ ବାଧିତ ହେଉଥିଲା । ଏହି ପ୍ରଥା ମଧ୍ୟ ପରିତ୍ୟକ୍ତ ହେଲା ।

(୩) ରାଜାଙ୍କୁ ନେ ସମୟରେ ଖାଗୃହାଳୟ, ସୈନ୍ୟବିଭାଗ ଓ ନୌବିଭାଗର ବ୍ୟୟ ବହନ କରିବାକୁ ହେଉଥିଲା । ଏହି ବ୍ୟୟଭାରର ବହନାର୍ଥ ରାଜାଙ୍କୁ ବାର୍ଷିକ ୧୨ ଲକ୍ଷ ପାଉଣ୍ଡ ପ୍ରଦତ୍ତ ହେଲା ।

(୪) ସୈନ୍ୟମାନଙ୍କୁ ବିଦାୟ କରାଗଲା । ମାତ୍ର ଚାର୍ଲସ ଆତ୍ମରକ୍ଷା ନିମତ୍ତ ୫୦୦୦ ସୈନ୍ୟ ରକ୍ଷା କଲେ । ଏଥି ପୂର୍ବେ ଯୁଦ୍ଧ ସମୟରେ ରାଜାଙ୍କୁ ସୈନ୍ୟ ସଂଗ୍ରହ କରିବାକୁ ହେଉଥିଲା ଏବଂ ଯୁଦ୍ଧ ଅନ୍ତେ ସେମାନଙ୍କୁ ବିଦାୟ ଦେବାକୁ ହେଉଥିଲା । ଏହି ସୈନ୍ୟଦଳ ଗଠନ ଦ୍ୱାରା ଇଂଲଣ୍ଡର ଏକ ସ୍ଥାୟୀ ସୈନ୍ୟଦଳର ସୃଷ୍ଟି ହେଲା ।

(୫) ଯେଉଁ ସମସ୍ତ ଜମି ରାଜାଙ୍କ ପକ୍ଷୀୟ ଲୋକମାନଙ୍କଠାରୁ କ୍ରମୱେଲ ଗ୍ରହଣ କରିଥିଲେ ତାହା ପୁନର୍ବାର ସେମାନଙ୍କୁ ପ୍ରଦତ୍ତ ହେଲା ।

(୬) ଯେଉଁ ସମସ୍ତ ନୂତନ ନିୟମ ଲଙ୍ଗ ପାର୍ଲିମେଣ୍ଟଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା, ସେଗୁଡ଼ିକ ରକ୍ଷିତ ହେଲା । 'ନୌଚାଳନ ନିୟମ (Navigation Act) ପୁନଃ ପ୍ରବର୍ତ୍ତିତ ହେଲା ।

ଚାର୍ଲସ ସିଂହାସନାରୋହଣ କରି କନଭେନସନ ପାର୍ଲିମେଣ୍ଟ ଭଙ୍ଗ କରିବା ଉତ୍ତାରେ ତାହାଙ୍କର ନୂତନ ପାର୍ଲିମେଣ୍ଟ ଅହ୍ୱାନ କରିଥିଲେ ।

**ଚାର୍ଲସଙ୍କ କେଭେଲିୟାର ପାର୍ଲିମେଣ୍ଟ — ୧୬୬୧ (କ୍ଲାରେଣ୍ଡନଙ୍କ ମନ୍ତ୍ରିତ୍ୱ)**

ରାଜପକ୍ଷୀୟ (Royalists or Cavaliers) ଅଧିକାଂଶ ବ୍ୟକ୍ତି ଏହାର ସଭ୍ୟରୂପେ ନିର୍ବାଚିତ ହୋଇଥିଲେ । ସେଥିପାଇଁ ଏହା କେଭେଲିୟାର ପାର୍ଲିମେଣ୍ଟ ଆଖ୍ୟା ପ୍ରାପ୍ତ ହୋଇଥିଲା ।

କେଭେଲିୟାର ପାର୍ଲିମେଣ୍ଟରେ ଅଧିକାଂଶ ସଭ୍ୟ ରାଜପକ୍ଷୀୟ ଥିବାରୁ ପାର୍ଲିମେଣ୍ଟ ଅଧିବେଶନ ସଙ୍ଗେ ସଙ୍ଗେ ସେମାନେ ତାହାଙ୍କର ପ୍ରଧାନ ଶତ୍ରୁ ପିଉରିଟାନମାନଙ୍କ ଉପରେ ପୂର୍ବ ବୈରତାର ପ୍ରତିଶୋଧ ନେବା ପାଇଁ

ନିର୍ଜୀବ ହୋଇ ପଡ଼ିଲେ । କ୍ରମୱେଲ ଇଂଲଣ୍ଡ ଏବଂ ସ୍କଟଲାଣ୍ଡକୁ ଏକ ପାର୍ଲିମେଣ୍ଟାଧୀନ କରିଥିଲେ । ବର୍ତ୍ତମାନ ଉଭୟ ଦେଶ ପାଇଁ ପୃଥକ୍ ପାର୍ଲିମେଣ୍ଟ ପ୍ରତିଷ୍ଠିତ ହେଲା । ଇଂଲଣ୍ଡରେ ପୁନର୍ବାର "ଏପିସ୍କୋପେସି ଧର୍ମ" ପ୍ରବର୍ତ୍ତିତ ହେଲା ଏବଂ ସ୍କଟଲାଣ୍ଡର ପ୍ରେସବାଇଟେରିଆନମାନଙ୍କ ଧର୍ମାଳୟମାନଙ୍କୁ ବିଶପମାନଙ୍କ ଶାସନାଧୀନ କରାଗଲା ।

ଯେଉଁ ପ୍ରେସବାଇଟେରିଆନମାନେ ତାହାଙ୍କର ପୂର୍ବ 'ଜାତୀୟ ସଂଘ' ( National Covenant ) ପୁନଃ ଗଠନ କରିବାକୁ ଚେଷ୍ଟା କଲେ, ସେମାନଙ୍କୁ କଠୋର ଦଣ୍ଡ ପ୍ରଦତ୍ତ ହେଲା । ରାଜକୀୟ ଦଳର ଧର୍ମମତ 'ଏପିସ୍କୋପେସି' ସୁଦୃଢ଼ଭାବରେ ପ୍ରତିଷ୍ଠିତ କରିବା ଉଦ୍ଦେଶ୍ୟରେ ଅନ୍ୟ ମତାବଲମ୍ବୀ ଲୋକମାନଙ୍କ ବିରୁଦ୍ଧରେ କେତେଗୁଡ଼ିଏ କଠୋର ନିୟମ ପ୍ରବର୍ତ୍ତିତ ହେଲା ।

୧ । କରପୋରେସନ ଅକ୍ଟ (Corporation Act)—୧୬୬୧

ଏତଦ୍ୱାରା ଏହି ନିୟମ କରାଗଲା ଯେ, କୌଣସି ନଗରର ମ୍ୟୁନିସିପାଲିଟି ଅଧୀନରେ କାର୍ଯ୍ୟ କରୁଥିବା ଲୋକମାନଙ୍କୁ ଇଂଲଣ୍ଡର ପ୍ରବର୍ତ୍ତିତ ଧର୍ମମତ (Episcopacy) ମତେ ଉପାସନା କରିବାକୁ ହେବ ।

୨ । ଇଉନିଫର୍ମିଟି ଅକ୍ଟ (Act of Uniformity)—୧୬୬୨

ଏତଦ୍ୱାରା ଏହି ନିୟମ ହୋଇଥିଲା ଯେ, ଯେଉଁ ବ୍ୟକ୍ତି ସାଧାରଣ ପ୍ରାର୍ଥନା ପୁସ୍ତକ ଅନୁଯାୟୀ ଇଂଲଣ୍ଡର ପ୍ରତିଷ୍ଠିତ ଧର୍ମାଳୟରେ ଉପାସନା ନ କରେ, ସେ ଧର୍ମମନ୍ଦିରରେ କୌଣସି କାର୍ଯ୍ୟ ପ୍ରାପ୍ତ ହେବ ନାହିଁ ।

୩ । କନ୍‌ଭେଣ୍ଟିକ୍ଲ ଅକ୍ଟ (Conventicle Act)—୧୬୬୪

ପୂର୍ବେ କ୍ରମୱେଲ କାଥଲିକ୍ ଓ ରାଜପକ୍ଷୀୟ ଲୋକମାନଙ୍କ ବିରୁଦ୍ଧରେ ନିୟମ କରିଥିଲେ ଯେ, ସେମାନେ ପ୍ରେସବାଇଟେରିଆନ ଧର୍ମାଳୟ

ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ଉପାସନା କରି ପାରିବେ ନାହିଁ । କେଭେଲିଅର ପାର୍ଲିମେଣ୍ଟ ଏହାର ପ୍ରତିଶୋଧ ମାନସରେ ନିୟମ କରିଥିଲେ ଯେ, କୌଣସି ବ୍ୟକ୍ତି ଇଂଲଣ୍ଡର ପ୍ରତିଷ୍ଠିତ "ହାଇଚର୍ଚ୍ଚ" ଧର୍ମାଳୟ ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ଉପାସନା କରିବେ ନାହିଁ । ପାଞ୍ଚଜଣରୁ ଅଧିକ ବ୍ୟକ୍ତି ଧର୍ମୋପାସନାର୍ଥ ପ୍ରତିଷ୍ଠିତ ଧର୍ମମନ୍ଦିର ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ସମ୍ମିଳିତ ହେଲେ ତାହା ଆଇନବିରୁଦ୍ଧ ବୋଲି ଗଣ୍ୟ ହେବ ।

୪ । ପାଞ୍ଚମାଇଲ ଅକ୍ଟ (Five miles Act)—୧୬୬୫

କ୍ରମ୍‌ୱେଲଙ୍କ ଭଳି କେଭେଲିଅର ପାର୍ଲିମେଣ୍ଟ ନିୟମ କରିଥିଲେ ଯେ, ଯେଉଁ ଧର୍ମଯାଜକମାନେ ଧର୍ମମନ୍ଦିରରୁ ତାଡ଼ିତ, ସେମାନେ କୌଣସି ନଗରର ପାଞ୍ଚ ମାଇଲ ମଧ୍ୟରେ ଅଧ୍ୟାପନା କିମ୍ବା ବାସ କରି ପାରିବେ ନାହିଁ ।

ଏହି ସମୟରେ ଲର୍ଡ କ୍ଲାରେଣ୍ଡନ ନାମକ ଚାର୍ଲସଙ୍କ ପୂର୍ବ ଶିକ୍ଷକ ତାହାଙ୍କ ପ୍ରଧାନ ପରାମର୍ଶଦାତା ବା ମନ୍ତ୍ରୀ ଥିବାରୁ ତାହାଙ୍କ ନାମାନୁସାରେ ଏହି ନିୟମ ଗୁଡ଼ିକର "କ୍ଲାରେଣ୍ଡନ କୋଡ" ନାମକରଣ ହୋଇଥିଲା । ଏହି କଠୋର ନିୟମ ଗୁଡ଼ିକଦ୍ୱାରା ବହୁ ଧର୍ମଯାଜକ ପଥର ଭିକାରୀ ହୋଇଥିଲେ ଏବଂ ଅନେକେ କାରାରୁଦ୍ଧ ହୋଇଥିଲେ । ଯନ୍ ବେନ୍‌ୟନ୍ ନାମକ ଏକ ବ୍ୟକ୍ତି "କନଭେଣ୍ଟିକଲ ଅକ୍ଟ" ଅମାନ୍ୟ କରି ଧର୍ମୋପଦେଶ ପ୍ରଚାର କରିବାରୁ ବେଡଫୋର୍ଡ ଜେଲରେ ଦ୍ୱାଦଶ ବର୍ଷ କାରାରୁଦ୍ଧ ଥିଲେ । ବନ୍ଦୀ ଦଶାରେ ସେ "ପିଲଗ୍ରିମସ୍ ପ୍ରୋଗ୍ରେସ୍" ନାମକ ସୁବିଖ୍ୟାତ ପୁସ୍ତକ ରଚନା କରିଥିଲେ । ଏହି ସମୟରେ ବହୁ ପିଉରିଟାନ ଇଂଲଣ୍ଡ ପରିତ୍ୟାଗ-ପୂର୍ବକ ଆମେରିକା ଗମନ କରି ସେଠାରେ ନୂତନ ଉପନିବେଶମାନ ସ୍ଥାପନ କଲେ । ଯେଉଁ ପିଉରିଟାନମାନେ "ହାଇଚର୍ଚ୍ଚ"ର ଅନ୍ତର୍ଭୁକ୍ତ ନ ଥିଲେ, ସେମାନେ "ଡିସେଣ୍ଟାର" (Dissenters) ନାମରେ ଅଭିହିତ ହେଲେ ।

ଲର୍ଡ କ୍ଲାରେଣ୍ଡନଙ୍କ ମନ୍ତ୍ରିତ୍ୱ କାଳରେ ଚାର୍ଲସ ପର୍ତ୍ତୁଗାଲ ରାଜକୁମାରୀଙ୍କୁ ବିବାହ କରି ଭାରତବର୍ଷର ବମ୍ବେ ଦ୍ୱୀପ ଯୌତୁକ ସ୍ୱରୂପ ପ୍ରାପ୍ତ ହେଲେ । ଏତଦ୍ଦ୍ୱାରା ଇଂରେଜମାନଙ୍କର ଭାରତବର୍ଷ ସହିତ ବାଣିଜ୍ୟର ସୁବିଧା ହୋଇଥିଲା । ମାତ୍ର ପର୍ତ୍ତୁଗାଲର ରାଜକୁମାରୀ କାଥଲିକ୍ ଥିବାରୁ ଓ ତାହାଙ୍କର ସନ୍ତାନାଦ ନ ହେବାରୁ ଏ ବିବାହରେ ଲୋକମାନେ ସନ୍ତୁଷ୍ଟ ହୋଇ ନ ଥିଲେ ।

ଚାର୍ଲସଙ୍କ ବିବାହ
୧୬୬୨

ଚାର୍ଲସଙ୍କ ପରିଣୟ ଉତ୍ତାରେ କ୍ଲେରେଣ୍ଡନ ଫ୍ରାନ୍ସ ସହିତ ସନ୍ଧି ସ୍ଥାପନପୂର୍ବକ "ଡନ୍‌କାର୍କ" ନାମକ ସ୍ଥାନ ଫରାସୀମାନଙ୍କୁ ବିକ୍ରୟ କରିଥିଲେ । ଏହି ସ୍ଥାନ କ୍ରମୱେଲ ସ୍ପେନ ସହିତ ଯୁଦ୍ଧ କରି ଲାଭ କରିଥିଲେ । ତାହା ବର୍ତ୍ତମାନ ଫ୍ରାନ୍ସକୁ ପ୍ରଦତ୍ତ ହେବାରୁ ଇଂରେଜମାନେ କ୍ଲାରେଣ୍ଡନଙ୍କ ପ୍ରତି ବିରୋଧୀ ହୋଇ ଉଠିଲେ ।

ବାଣିଜ୍ୟ କ୍ଷେତ୍ରରେ ପ୍ରତିଯୋଗିତା ହେତୁ ଇଂରେଜମାନଙ୍କ ସହିତ ଡଚମାନଙ୍କର ଶତ୍ରୁତା ଆରମ୍ଭ ହୋଇଥିଲା । ଇଂଲଣ୍ଡର ସାଧାରଣତନ୍ତ୍ର ସମୟରେ ଡଚମାନେ କ୍ରମୱେଲଙ୍କ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହୋଇ ଚାର୍ଲସଙ୍କ ବିରୋଧୀ ହୋଇଥିଲେ । ସେଥିପାଇଁ ଚାର୍ଲସଙ୍କ ସହିତ ଡଚମାନଙ୍କର ସଦ୍ଭାବ ନ ଥିଲା । ଏହି ସମୟରେ ଆଫ୍ରିକାରେ ଡଚ ଓ ଇଂରାଜ ନାବିକମାନଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେବାରୁ ଉଭୟ ଦେଶ ମଧ୍ୟରେ ଯୁଦ୍ଧ ଘୋଷିତ ହେଲା ଏବଂ ଇଂରାଜ ପାର୍ଲିମେଣ୍ଟ ଯୁଦ୍ଧ ନିମିତ୍ତ ୨୫୦୦୦୦୦ ପାଉଣ୍ଡ ମଞ୍ଜୁର କରିଥିଲେ ।

ଡଚ୍‌ମାନଙ୍କ ସହିତ ଯୁଦ୍ଧ
୧୬୬୫

ଇଂଲଣ୍ଡରେ ପ୍ଲେଗ
୧୬୬୫

ଏହି ସମୟରେ ଇଂଲଣ୍ଡରେ ଗୋଟିଏ ଭୟଙ୍କର ପ୍ଲେଗରୋଗ ଉପସ୍ଥିତ ହୋଇଥିଲା । ଲଣ୍ଡନ ନଗରର ତତ୍କାଳୀନ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିଲା । ସଙ୍କୀର୍ଣ୍ଣ ରାଜମାର୍ଗର ଉଭୟ ପାର୍ଶ୍ୱରେ ଉଚ୍ଚ ଅଟ୍ଟାଳିକାମାନ ଥିବାରୁ ନଗରଟି ଅତ୍ୟନ୍ତ ଅପରିଷ୍କାର, ଦୁର୍ଗନ୍ଧମୟ ଥିଲା । ସେଥିପାଇଁ ଉକ୍ତ ପ୍ଲେଗ ଭୟଙ୍କର ଆକାର ଧାରଣ କରିଥିଲା ଓ ପ୍ରାୟ ଏକ ଲକ୍ଷ ଲୋକ ପ୍ରାଣତ୍ୟାଗ କରିଥିଲେ । ରାଜା ପ୍ରଜା ସମସ୍ତେ ଲଣ୍ଡନ ପରିତ୍ୟାଗ କରି ପଳାୟନ କଲେ । ଯେଉଁ ଗୃହରେ ପ୍ଲେଗ ହେତୁ ଲୋକଙ୍କର ମୃତ୍ୟୁ ହେଉଥିଲା, ସେହି ଗୃହର ବହିର୍ଦ୍ୱାରରେ ଗୋଟିଏ ରକ୍ତବର୍ଣ୍ଣ କ୍ରସ୍ ପ୍ରଦତ୍ତ ହୋଇ ସେହି ଗୃହରେ ପ୍ଲେଗ ହୋଇଥିବାର ସୂଚନା କରୁଥିଲା ।

ଇଂଲଣ୍ଡରେ
ଅଗ୍ନିକାଣ୍ଡ
୧୬୬୬

ପ୍ଲେଗ ଉତ୍ତାରେ ଲଣ୍ଡନ ନଗର ଅଗ୍ନିରେ ଭସ୍ମୀଭୂତ ହୋଇଥିଲା । ଏହି ଅଗ୍ନିକାଣ୍ଡରେ ପ୍ରାୟ ୧୩,୦୦୦ ଗୃହ ଓ ୯୦ ଟି ଭଜନାଳୟ ଭସ୍ମୀଭୂତ ହେଲା । କିନ୍ତୁ ଏହି ଅଗ୍ନିକାଣ୍ଡ ହେତୁ ଲଣ୍ଡନ ସହରର ଶ୍ରୀବୃଦ୍ଧି ହୋଇଥିଲା । ରାଜମାର୍ଗଗୁଡ଼ିକ ପ୍ରଶସ୍ତ ହୋଇଥିଲା ଏବଂ କାଷ୍ଠଗୃହ ପରିବର୍ତ୍ତରେ ଇଷ୍ଟକନିର୍ମିତ ଗୃହ ପ୍ରସ୍ତୁତ ହୋଇଥିଲା । ଲଣ୍ଡନର ପ୍ରଧାନ ଧର୍ମାଳୟ, ସେଣ୍ଟପଲ୍ ଗୀର୍ଜା ଏହି ଅଗ୍ନିକାଣ୍ଡରେ ଭସ୍ମୀଭୂତ ହୋଇଥିଲା ।

କ୍ଲାରେଣ୍ଡନଙ୍କ ପତନ

ଇତିମଧ୍ୟରେ ଡଚମାନଙ୍କ ସହିତ ଇଂରେଜମାନଙ୍କର ଯୁଦ୍ଧ ଚାଲୁଥିଲା । ଡଚମାନଙ୍କ ନୌବିଭାଗର ଅଧ୍ୟକ୍ଷ ଡି-ରୁଏଟାର ୬୦ ଟି ରଣତରୀ ଘେନି ୩ ଗୋଟି ଇଂରେଜପୋତ ଧ୍ୱଂସ କରି ଟେମସ ନଦୀ ମୁହାଣ ଅବରୋଧ କରିଥିଲେ । ଡନକାର୍କ ବିକ୍ରୟ ଓ ଚାର୍ଲସଙ୍କ ବିବାହ ହେତୁ ଲୋକେ କ୍ଲାରେଣ୍ଡନଙ୍କ ପ୍ରତି ବିରୂପ ଥିଲେ । ବର୍ତ୍ତମାନ ସେମାନେ ତାହାଙ୍କ

ନାମରେ ହାଉସ ଅଫ୍ ଲର୍ଡସ୍ ସମକ୍ଷରେ ଅଭିଯୋଗ ଆନୟନ କଲେ । କ୍ଲାରେଣ୍ଡନ ଫ୍ରାନ୍‌ସକୁ ପଳାୟନ କରି ଆତ୍ମରକ୍ଷା କଲେ । ତାହାଙ୍କ ପତନ ସଙ୍ଗେ ସଙ୍ଗେ ରାଜାଙ୍କର ନୂତନ ମନ୍ତ୍ରୀ ଓ ନୂତନ ପାର୍ଲିମେଣ୍ଟ ହେଲା ଓ ଓଲନ୍ଦାଜମାନଙ୍କ ସହିତ 'ବ୍ରେଡ୍।' ନାମକ ସ୍ଥାନରେ ଇଂରେଜମାନଙ୍କର ଗୋଟିଏ ସନ୍ଧି ହେଲା ।

କ୍ଲାରେଣ୍ଡନଙ୍କ ପଦତ୍ୟାଗ ପରେ ମନ୍ତ୍ରିସଭାର (Privy Council) ପାଞ୍ଚ ଜଣ ସଭ୍ୟ ରାଜାଙ୍କର ପ୍ରଧାନ ମନ୍ତ୍ରୀ ହୋଇଥିଲେ । ଏହି ପାଞ୍ଚଜଣ ମନ୍ତ୍ରୀଙ୍କ ନାମ କ୍ଲିଫୋର୍ଡ (Clifford) ଆର୍ଲିଂଟନ (Arlington), ବକିଂହାମ (Buckingham), ଆସ୍‌ଲେ (Ashley), ଲଡାରଡେଲ (Landerdale) । ଏହି

କେବେଲ ମନ୍ତ୍ରିତ୍ୱ—
(Cabal Ministry)
୧୬୬୭-୧୬୭୩

ପାଞ୍ଚଜଣ ମନ୍ତ୍ରୀଙ୍କ ନାମର ଆଦ୍ୟ ଅକ୍ଷର ଦ୍ୱାରା କେବେଲ (Cabal) ଶବ୍ଦଟି ନିଷ୍ପନ୍ନ ହୋଇଥିବାରୁ ଏହା (Cabal Ministry) କେବେଲ ମନ୍ତ୍ରିତ୍ୱ ବୋଲି ଖ୍ୟାତ । 'କେବେଲ' (Cabal) ଶବ୍ଦ ଫରାସି (Cabale) ଶବ୍ଦ; ଅର୍ଥ କୁଚକ୍ରୁ ଉତ୍ପନ୍ନ । ଏହି ପାଞ୍ଚଜଣ ମନ୍ତ୍ରୀ ଚାର୍ଲସଙ୍କ ପ୍ରଧାନ ମନ୍ତ୍ରୀ ହୋଇଥିଲେ ସତ୍ୟ; ମାତ୍ର ଚାର୍ଲସ ସେମାନଙ୍କ ପରାମର୍ଶର ଅପେକ୍ଷା ନ ରଖି ସ୍ୱୀୟ ମତାନୁଯାୟୀ ସମସ୍ତ କାର୍ଯ୍ୟ ସମ୍ପାଦନ କରୁଥିଲେ ।

ଏହି ସମୟରେ ଫ୍ରାନ୍‌ସ ସ୍ପେନ ଅଧିକୃତ "ନେଦରଲାଣ୍ଡ"ର କେତେକ ସ୍ଥାନ ଅଧିକାର କରନ୍ତେ ଡଚମାନେ ଭୀତ ହୋଇ ଇଂଲଣ୍ଡ ଓ ସୁଇଡେନ ସହିତ ଏକ ସନ୍ଧି କରିଥିଲେ । ଏହି ତିନ ପ୍ରୋଟେଷ୍ଟାଣ୍ଟ ଶକ୍ତି ମଧ୍ୟରେ ଯେଉଁ ସନ୍ଧି ହେଲା, ତାହା ତ୍ରିଶକ୍ତି ସନ୍ଧି (Tripple Alliance) ନାମରେ ବିଦିତ ।

ତ୍ରିଶକ୍ତି ସନ୍ଧି—୧୬୬୮
Tripple Alliance-

ଏହି ସନ୍ଧି ବଳରେ ହଲାଣ୍ଡ ଫ୍ରାନ୍ସକୁ ଟେନ ସହିତ "ଏଲ୍ସ୍‌ଗ୍ରୃପେଲ" (Aix-la-chaplle) ନାମକ ସ୍ଥାନରେ ଏକ ସନ୍ଧି କରିବାକୁ ବାଧ୍ୟ କରିଥିଲା ।

ମାତ୍ର ଚାର୍ଲସଙ୍କ ଫ୍ରାନ୍ସ ରାଜାଙ୍କ ସହିତ ସଦ୍ଭାବ ଥିବାରୁ ଓ କାଥଲିକ ମାନଙ୍କ ପ୍ରତି ସହାନୁଭୂତି ହେତୁ ଓ ଏ ଜାତୀୟ ପ୍ରତି ଇଂରେଜ ପାର୍ଲି-

ଡୋଭରର ଗୁପ୍ତସନ୍ଧି
୧୬୭୦

ମେଣ୍ଟର ବିଦ୍ବେଷ ଭାବ ଜାଣି ସେ, ପାର୍ଲିମେଣ୍ଟ ଅଜ୍ଞାତରେ ଫ୍ରାନ୍ସ ସହିତ ଏକ ସନ୍ଧିସୂତ୍ରରେ ଆବଦ୍ଧ ହୋଇଥିଲେ । ଏହି ସନ୍ଧି ଡୋଭରଠାରେ ସ୍ୱାକ୍ଷରିତ ହୋଇଥିଲା ଏବଂ ତଦନୁଯାୟୀ ଚାର୍ଲସ ଫ୍ରାନ୍ସ ରାଜାଙ୍କଠାରୁ ବାର୍ଷିକ ତିନିଲକ୍ଷ ସ୍ୱର୍ଣ୍ଣ ମୁଦ୍ରା ପ୍ରାପ୍ତ ହୋଇ କାଥଲିକ ଧର୍ମ ଇଂଲଣ୍ଡରେ ପ୍ରବର୍ତ୍ତିତ କରି ଡଚମାନଙ୍କ ବିରୁଦ୍ଧରେ ଫ୍ରାନ୍ସକୁ ସାହାଯ୍ୟ କରିବାକୁ ଅଙ୍ଗୀକାର କରିଥିଲେ । ପାଞ୍ଚଜଣ ମନ୍ତ୍ରୀଙ୍କ ମଧ୍ୟରୁ କ୍ଲିଫୋର୍ଡ ଓ ଆର୍ଲିଙ୍ଗଟନ କାଥଲିକ ଥିବାରୁ ଏହି ଗୁପ୍ତ ସନ୍ଧି ବିଷୟ କେତେକ ପରିମାଣରେ ଜାଣିଥିଲେ; ମାତ୍ର ଅପର ତିନିଜଣ ମନ୍ତ୍ରୀ ପ୍ରୋଟେଷ୍ଟାଣ୍ଟ ଥିବାରୁ ଏ ବିଷୟ ସେମାନଙ୍କର ସମ୍ପୂର୍ଣ୍ଣ ଅଜ୍ଞାତ ଥିଲା ।

ଫ୍ରାନ୍ସ ରାଜାଙ୍କ ସହିତ ପୂର୍ବୋକ୍ତ ଗୁପ୍ତ ମନ୍ତ୍ର ହେତୁ ଚାର୍ଲସ ସମସ୍ତଙ୍କୁ ସ୍ୱାଧୀନ ଭାବରେ ଉପାସନା କରିବା ଆଦେଶ ପ୍ରଚାର କରିଥିଲେ । ଏହା

ଦ୍ୱିତୀୟ ଡଚ ଯୁଦ୍ଧ

"ଡିକ୍ଲାରେସନ ଅଫ୍ ଇନ୍‌ଡଲଜେନ୍ସ" (Declaration of indulgence) ନାମରେ ଖ୍ୟାତ । ଏହା ଉତ୍ତାରେ ତାହାଙ୍କ କନିଷ୍ଠ ଭ୍ରାତା ଜେମ୍ସ୍ ଆପଣାକୁ କାଥଲିକ ବୋଲି ଘୋଷଣା କଲେ । ତଦନନ୍ତର ରାଜା ପାର୍ଲିମେଣ୍ଟର ମତର ଅପେକ୍ଷା ନ କରି ହଲାଣ୍ଡ ବିରୁଦ୍ଧରେ ଫ୍ରାନ୍ସ ସହିତ ଯୁଦ୍ଧରେ ଯୋଗ ଦେଲେ । ଇଂରେଜମାନଙ୍କ ସାହାଯ୍ୟ ପ୍ରାପ୍ତ ହୋଇ ଫ୍ରାନ୍ସର ରାଜା ହଲାଣ୍ଡ ଆକ୍ରମଣ କଲେ । ମାତ୍ର ଅରେଞ୍ଜ ନାମକ ପ୍ରଦେଶର ଉଇଲିୟମ ଡଚମାନଙ୍କର ନେତା ହୋଇ ହଲାଣ୍ଡର ପ୍ରାକାର ଭଙ୍ଗ କରି ଦେଶକୁ ସମୁଦ୍ରଜଳରେ

ସ୍ଥାପିତ କରିବାକୁ ଫରାସୀମାନେ ବାଧ୍ୟ ହୋଇ ହଲାଣ୍ଡ ପରିତ୍ୟାଗ କରିଥିଲେ ।

ଅର୍ଥ ହେତୁ ଚାର୍ଲସ ପାର୍ଲିମେଣ୍ଟ ଆହ୍ୱାନ କରିବାରୁ ମେମ୍ବରମାନେ ଚାର୍ଲସଙ୍କ ପୂର୍ବ କାର୍ଯ୍ୟମାନ ପାଇଁ କ୍ରୁଦ୍ଧ ହୋଇ ତାହାଙ୍କୁ "ଡିକ୍ଲାରେସନ ଅଫ ଇନଡାଲଜେନ୍ସ" ପ୍ରତ୍ୟାହାର କରିବାକୁ କହି "ଟେଷ୍ଟ ଅକ୍ଟ" ନାମକ ଗୋଟିଏ ନୂତନ ନିୟମ ପ୍ରବର୍ତ୍ତନ କରିଥିଲେ । ଏତଦ୍ଦ୍ୱାରା ସମସ୍ତ ରାଜକର୍ମଚାରୀମାନଙ୍କୁ ଶପଥ କରିବାକୁ ହେଲା ଯେ, ସେମାନେ କାଥଲିକ ଧର୍ମ ବିଶ୍ୱାସ କରନ୍ତି ନାହିଁ ଏବଂ ଇଂଲଣ୍ଡର ପ୍ରବର୍ତ୍ତିତ "ଏପିସ୍କୋପେସି" ମତେ ଉପାସନା କରନ୍ତି । ପାର୍ଲିମେଣ୍ଟର କ୍ରୁଦ୍ଧ ଅବିଚଳିତ ଭାବ ଦର୍ଶନ କରି ଚାର୍ଲସ ଏଥିରେ ସ୍ୱୀକୃତ ହୋଇଥିଲେ ଏବଂ ତାହାଙ୍କର କନିଷ୍ଠ ଭ୍ରାତା କାଥଲିକ ଥିବାରୁ ତାହାଙ୍କୁ "ଆଡମିରାଲ" ବା ନୌବିଭାଗର ଅଧିନାୟକ ପଦ ତ୍ୟାଗ କରିବାକୁ ହୋଇଥିଲା । ତାଙ୍କର ୨ ଜଣ ମନ୍ତ୍ରୀ ମଧ୍ୟରୁ କ୍ଲିଫୋର୍ଡ ଓ ଅର୍ଲିଂଟନ କାଥଲିକ ଥିବାରୁ ସେ ଦୁହେଁ ମନ୍ତ୍ରୀପଦ ତ୍ୟାଗ କଲେ; "କେବଲ" ମନ୍ତ୍ରୀତ୍ୱର ଅବସାନ ହେଲା ।

ଟେଷ୍ଟ ଅକ୍ଟ (Test Act)—୧୬୭୩

କେବଲ ମନ୍ତ୍ରିତ୍ୱ ଉତ୍ତାରେ ଚାର୍ଲସ ପାର୍ଲିମେଣ୍ଟକୁ ସନ୍ତୁଷ୍ଟ କରିବା ପାଇଁ କମନ୍ସମାନଙ୍କ ପ୍ରିୟପାତ୍ର ଲର୍ଡ ଡାନବିଙ୍କୁ ତାହାଙ୍କର ପ୍ରଧାନ ମନ୍ତ୍ରୀ ନିଯୁକ୍ତ କଲେ ଏବଂ ଡାନବୀଙ୍କ ପରାମର୍ଶମତେ ତାହାଙ୍କ ଭ୍ରାତୃଷ୍ପୁତ୍ରୀ, ଜେମସଙ୍କ କନ୍ୟା ମେରୀଙ୍କୁ ଅରେଞ୍ଜର ଉଇଲିୟମଙ୍କ ସହିତ ବିବାହ ଦେଲେ । ଉଭୟେ ପ୍ରୋଟେଷ୍ଟାଣ୍ଟ ଥିବାରୁ ଏବଂ ଚାର୍ଲସ ଅପୁତ୍ରକ ଥିବାରୁ ପାର୍ଲିମେଣ୍ଟ ମେରୀଙ୍କୁ ସିଂହାସନର ଭାବୀ ଉତ୍ତରାଧିକାରୀ ଜାଣି ଏଥିରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ ।

ଡାନବୀଙ୍କ ମନ୍ତ୍ରିତ୍ୱ ୧୬୭୩—୧୬୭୯
ଅରେଞ୍ଜ ବିବାହ

**ଫ୍ରାନ୍ସ ସହିତ ଗୁପ୍ତସନ୍ଧି**

ଚାର୍ଲସ ପ୍ରକାଶ୍ୟଭାବରେ ପାର୍ଲିମେଣ୍ଟ ମତାନୁଯାୟୀ ଚଳିବାକୁ ଲାଗିଲେ ସତ୍ୟ; ମାତ୍ର ସେ ଗୁପ୍ତଭାବରେ ଫ୍ରାନ୍ସ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହୋଇ ବାର୍ଷିକ ୧୨୨୦୦୦ ପାଉଣ୍ଡ ପ୍ରାପ୍ତ ହେଲେ ଏବଂ ପାର୍ଲିମେଣ୍ଟ ଚାର୍ଲସଙ୍କୁ ଫ୍ରାନ୍ସ ସହିତ ଯୁଦ୍ଧ କରିବାକୁ ପରାମର୍ଶ ଦେବାରୁ ସେ ୨୪୦୦୦ ପାଉଣ୍ଡ ବଦଳରେ ପାର୍ଲମେଣ୍ଟ ଭଙ୍ଗ କରିବାକୁ ପ୍ରତିଶ୍ରୁତ ହୋଇଥିଲେ। ଏହି ସନ୍ଧିପତ୍ର ରାଜାଙ୍କ ଆଦେଶମତେ ଡାନବିଙ୍କ ଦ୍ୱାରା ଲିଖିତ ହୋଇଥିଲା। ଡାନବିଙ୍କ ପରାମର୍ଶମତେ "ଅରେଞ୍ଜ ବିବାହ" ହୋଇଥିବାରୁ ଫ୍ରାନ୍ସର ରାଜା ଡାନବିଙ୍କ ପରମ ଶତ୍ରୁ ହୋଇ ଉଠିଥିଲେ। ଡଚମାନଙ୍କ ସହିତ ଫ୍ରାନ୍ସର ଯୁଦ୍ଧ ସମାପ୍ତ ହେବାରୁ ସେ ପ୍ରତିଶୋଧ ମାନସରେ ଉକ୍ତ ସନ୍ଧିପତ୍ର ପ୍ୟାରିସ୍ଥ ବ୍ରିଟିଶ ରାଜଦୂତଙ୍କୁ ପ୍ରଦର୍ଶନ କରାଇଥିଲେ। ସେହି ଗୁପ୍ତସନ୍ଧି ପାର୍ଲମେଣ୍ଟ ଅଜ୍ଞାତରେ ହୋଇଥିବାରୁ ଓ ସେଥିରେ ଡାନବି ସଂଶ୍ଳିଷ୍ଟ ଥିବାରୁ ପାର୍ଲମେଣ୍ଟ ଏହି ସନ୍ଧିକୁ ଜାତୀୟ କଳଙ୍କସ୍ୱରୂପ ମନେ କରି ଡାନବିଙ୍କ ବିରୁଦ୍ଧରେ ଅଭିଯୋଗ ଆନୟନ କରିଥିଲେ। ଚାର୍ଲସ ଗତ୍ୟନ୍ତର ନ ଦେଖି ପାର୍ଲମେଣ୍ଟ ଭଙ୍ଗ କରିଥିଲେ। ମାତ୍ର ନୂତନ ପାର୍ଲମେଣ୍ଟ ଆହୂତ ହୁଅନ୍ତେ ଡାନବି ଅଭିଯୁକ୍ତ ହୋଇ ୫ବର୍ଷ ପାଇଁ କାରାରୁଦ୍ଧ ହୋଇଥିଲେ।

**କାଥଲିକ ଷଡ଼ଯନ୍ତ୍ର (The Popish plot) ୧୬୭୮**

ଏହି ସମୟରେ ଟିଟାସ ଓଟ୍‌ସ ନାମକ ଏକ ବ୍ୟକ୍ତି ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ ପ୍ରଚାର କରିଥିଲେ ଯେ, କାଥଲିକମାନେ ରାଜା ଏବଂ ପାର୍ଲମେଣ୍ଟ ସଭ୍ୟମାନଙ୍କୁ ହତ୍ୟା କରିବାକୁ ଏକ ଷଡ଼ଯନ୍ତ୍ର କରିଅଛନ୍ତି। ଏଥିରେ ବିଶ୍ୱାସ କରି ପାର୍ଲମେଣ୍ଟ କାଥଲିକମାନଙ୍କର ପରମ ଶତ୍ରୁ ହୋଇ ପଡ଼ିଲେ। କେତେକ ସମ୍ଭ୍ରାନ୍ତ କାଥଲିକ ପ୍ରାଣଦଣ୍ଡ ପ୍ରାପ୍ତ ହେଲେ ଏବଂ ଚାର୍ଲସଙ୍କ ଭ୍ରାତା ଜେମସ୍ କାଥଲିକ ଥିବାରୁ ସିଂହାସନର ଉତ୍ତରାଧିକାରୀ ହୋଇ ପାରିବେ ନାହିଁ ବୋଲି ଲର୍ଡ ସାଫ୍ଟେସବେରି ଏକ ବିଲ ( Exclusion Bill ) ଆଗତ କରିଥିଲେ; ମାତ୍ର ଚାର୍ଲସ୍

ପାର୍ଲିମେଣ୍ଟ ଭଙ୍ଗ କରିବାରୁ ଏହି ବିଲ୍ ପାଶ ହୋଇପାରି ନ ଥିଲା । ଏହି ସମୟରେ ଲର୍ଡ ସାଫ୍‌ଟେସ୍‌ବରୀ "ହେବସ୍ କରପସ୍ ଆକ୍ଟ" ( Habeas Corpus Act ) ନାମକ ଗୋଟିଏ ଆଇନ ପ୍ରଣୟନ କରିଥିଲେ । ଏତଦ୍ୱାରା କୌଣସି ଅଭିଯୁକ୍ତ ବ୍ୟକ୍ତି ବିନା ବିଚାରରେ କାରାରୁଦ୍ଧ ହୋଇ ପାରିବେ ନାହିଁ । ଏହା ଏଥି ପୂର୍ବେ ଇଂରେଜ ଆଇନ-ବଦ୍ଧ ହୋଇଥିଲା ସତ୍ୟ; ମାତ୍ର ରାଜା ଓ ବିଚାରକମାନେ ତଦନୁଯାୟୀ କାର୍ଯ୍ୟ କରୁ ନ ଥିଲେ ।

ହୁଇଗ୍ ଓ ଟୋରି ଦଳର ସୃଷ୍ଟି (Exclusion Bill)

ନୂତନ ପାର୍ଲିମେଣ୍ଟ ଆହୂତ ହୁଅନ୍ତେ ଲର୍ଡ ସାଫ୍‌ଟେସ୍‌ବରୀ ପୁନର୍ବାର ଏକ "ଏକ୍‌ସକ୍ଲୁଜନ୍ ବିଲ୍" ଆଗତ କରିଥିଲେ ଏବଂ ହାଉସ ଅଫ୍ କମନ୍ସରେ ତାହା ଗୃହୀତ ହୋଇଥିଲା । ମାତ୍ର ସାଫ୍‌ଟେସ୍‌ବରୀଙ୍କ ଇଚ୍ଛା ଥିଲା, ଚାର୍ଲସଙ୍କ ଅନ୍ତେ ଡିଉକ ଅଫ୍ ମନମାଉଥ ନାମକ ତାହାଙ୍କର ଏକ ଜାରଜ ପୁତ୍ର ସିଂହାସନ ପ୍ରାପ୍ତ ହେବ । ଏଥିରେ ଇଂଲଣ୍ଡର ବହୁ ସମ୍ଭ୍ରାନ୍ତ ଲୋକଙ୍କର ଆପତ୍ତି ହେବାରୁ ଏହା ହାଉସ ଅଫ୍ କମନ୍ସରେ ପରିତ୍ୟକ୍ତ ହେଲା । ଏହି ସମୟରେ ଇଂଲଣ୍ଡରେ ଦୁଇ ଗୋଟି ରାଜନୈତିକ ଦଳର ସୃଷ୍ଟି ହେଲା । ଯେଉଁମାନେ "ଏକ୍‌ସକ୍ଲୁଜନ ବିଲ୍" ସପକ୍ଷରେ ଥିଲେ, ସେମାନେ ରାଜାଙ୍କୁ ଏଥିରେ ସମ୍ମତି ଦେବାକୁ ପ୍ରାର୍ଥନା କରିଥିଲେ । ସେମାନେ "ପିଟିସିନାର" (Petitioner) ଆଖ୍ୟା ପ୍ରାପ୍ତ ହେଲେ । ଯେଉଁମାନେ ତାହା ବିପଜ୍ଜନକ ବୋଲି ଭୟ କରି ତାହା ବିପକ୍ଷରେ ଥିଲେ, ସେମାନେ "ଏବହରର" (Abhorer) ଆଖ୍ୟା ପ୍ରାପ୍ତ ହୋଇଥିଲେ । ଏହି ଦୁଇ ଦଳ କ୍ରମେ "ହୁଇଗ ଓ ଟୋରି" ଆଖ୍ୟା ପ୍ରାପ୍ତ ହେଲେ । ହୁଇଗରେ ପ୍ରକୃତ ଅର୍ଥ ଚୋର ଏବଂ ତାହା ସ୍କଟଲଣ୍ଡର ବିଦ୍ରୋହୀ-ମାନଙ୍କ ପ୍ରତି ପ୍ରଯୁକ୍ତ ହେଉଥିଲା । ଜେମସ୍‌ଙ୍କ ପକ୍ଷୀୟ ଲୋକମାନେ ଲର୍ଡ ସାଫ୍‌ଟେସ୍‌ବରୀଙ୍କ "ପିଟିସିନାର" ଦଳକୁ ବିଦ୍ରୋହୀ ବୋଲି 'ହୁଇଗ' ଆଖ୍ୟା ପ୍ରଦାନ କରିଥିଲେ । ଟୋରିର ପ୍ରକୃତ ଅର୍ଥ ଆୟର୍ଲଣ୍ଡର କାଥଲିକ

ଧର୍ମାବଲମ୍ବୀ ଡକାଏତ ବା ସମାଜଚ୍ୟୁତ ଲୋକମାନେ ସାଫ୍‌ଟ୍‌ସବରୀଙ୍କ ଦଳକୁ "ଏବହବର" ଦଳଙ୍କୁ ଏହି ଆଖ୍ୟା ପ୍ରଦାନ କରୁଥିଲେ । କାଳକ୍ରମେ ଏହି ଦୁଇଶବ୍ଦ ସେମାନଙ୍କର ପ୍ରକୃତ ଅର୍ଥରେ ବ୍ୟବହୃତ ନ ହୋଇ ଦୁଇଟି ବଡ଼ ରାଜନୈତିକ ଦଳ ଅର୍ଥରେ ବ୍ୟବହୃତ ହେଲା । ହୁଇଗମାନେ ଲୋକ-ମାନଙ୍କ ପକ୍ଷରେ ଓ ଟୋରୀମାନେ ରାଜାଙ୍କ ପକ୍ଷରେ ଥିଲେ । ହୁଇଗମାନେ ଏହି ବିଲ୍ ବାରମ୍ବାର ଅଗତ କରି କଳହ କରନ୍ତେ ଚାର୍ଲ୍‌ସ ପାର୍ଲିମେଣ୍ଟ ଭଙ୍ଗ କଲେ ।

ଅକ୍‌ସଫୋର୍ଡ ପାର୍ଲିମେଣ୍ଟ

ତଦନନ୍ତର ଚାର୍ଲ୍‌ସ ଅକ୍‌ସଫୋର୍ଡଠାରେ ପାର୍ଲିମେଣ୍ଟ ଆହ୍ୱାନ କରୁଥିଲେ । ସେ ମନେ କରୁଥିଲେ ଯେ, ଅକ୍‌ସଫୋର୍ଡଠାରେ ତାହାଙ୍କ ପିତାଙ୍କ ଗ୍ରାହକ ଥିବାରୁ ସେଠାରେ ଟୋରୀମାନଙ୍କ ସଂଖ୍ୟାଧିକ୍ୟ ହେବ ଏବଂ ଉକ୍ତ ଏକ୍‌ସକ୍ଲୁଜନ ବିଲ ଅଗତ ହେବ ନାହିଁ । ମାତ୍ର ହୁଇଗ ମେମ୍ବରମାନେ ସେଠାରେ କାଥଲିକମାନଙ୍କ ଷଡ଼ଯନ୍ତ୍ର ଆଶଙ୍କା କରି ଯୁଦ୍ଧାର୍ଥ ସଜ୍ଜିତ ହୋଇ ସସୈନ୍ୟେ ଗମନ କରୁଥିଲେ । ପୁନର୍ବାର ଗୋଟିଏ ଅନ୍ତର୍ବିପ୍ଳବ ହେବାର ଆଶଙ୍କା ହୋଇଥିଲା । ମାତ୍ର ଚାର୍ଲ୍‌ସ ହି ସୈନ୍ୟଦଳ ସହ ସେଠାରେ ଉପସ୍ଥିତ ହୋଇ ପ୍ରସ୍ତାବ କରୁଥିଲେ ଯେ ତାହାଙ୍କ ଉତ୍ତାରେ ଜେମସ ନାମମାତ୍ର ରାଜା ହେବେ । ଦେଶର ପ୍ରକୃତ ଶାସନଭାର ଅରେଞ୍ଜର ଯୁବରାଜଙ୍କ ହସ୍ତରେ ନ୍ୟସ୍ତ ହେବ । ହୁଇଗମାନେ ଏଥିରେ ଅସନ୍ତୁଷ୍ଟ ହୋଇଥିଲେ ସତ୍ୟ; ମାତ୍ର ସେମାନେ ଏହାର କୌଣସି ପ୍ରତିକାର କଲାପୂର୍ବେ ବା ଏ ବିଷୟରେ କୌଣସି ନିଷ୍ପତ୍ତି ହେବା ପୂର୍ବେ ଚାର୍ଲ୍‌ସ ହଠାତ୍ ପାର୍ଲିମେଣ୍ଟ ଭଙ୍ଗ କରୁଥିଲେ ।

ଅକ୍‌ସଫୋର୍ଡ ପାର୍ଲିମେଣ୍ଟ ଭଙ୍ଗ କରି ଚାର୍ଲ୍‌ସ ଅନ୍ୟ ପାର୍ଲିମେଣ୍ଟ ଆହ୍ୱାନ କରି ନାହାନ୍ତି । କାରଣ ହଲାଣ୍ଡର ଉଇଲିଅମ ଇଂଲଣ୍ଡର ଶାସନ-କର୍ତ୍ତା ହେବାଦ୍ୱାରା ଉଭୟ ଦେଶ ମିଳିତ ହେଲେ ଫ୍ରାନ୍‌ସର ସମୂହ ବିପଦ

ହେବ ଆଶଙ୍କା କରି ଫରାସୀ ରାଜା ଚାର୍ଲସଙ୍କୁ ପାର୍ଲିମେଣ୍ଟ ତୁଟିନ ରଖିବା ପାଇଁ ୨୪୦,୦୦୦ ପାଉଣ୍ଡ ପ୍ରଦାନ କରିଥିଲେ । ସେଥିପାଇଁ ଚାର୍ଲସଙ୍କ ଅର୍ଥାଭାବ ଘଟି ନାହିଁ ଏବଂ ପାର୍ଲିମେଣ୍ଟ ଉପରେ ମଧ୍ୟ ନିର୍ଭର କରିବାକୁ ହୋଇ ନାହିଁ ।

ଏଥିଅନ୍ତରରେ ଚାର୍ଲସ ଲର୍ଡ ସାଫ୍ଟେସବରୀଙ୍କ ବିରୁଦ୍ଧରେ ରାଜଦ୍ରୋହ ଅପରାଧ ଅଭିଯୋଗ ଆନୟନ କରିଥିଲେ; କିନ୍ତୁ ଜୁରୀମାନେ ସାଫ୍ଟେସ୍‌ବରୀଙ୍କ ପକ୍ଷରେ ଥିବାରୁ ଚାର୍ଲସ ନୂତନ ନିର୍ବାଚନ କରିଥିଲେ । ଇତିମଧ୍ୟରେ ସାଫ୍ଟେସ୍‌ବରୀ ହଲାଣ୍ଡକୁ ପଳାୟନ କଲେ ।

**ରାଇହାଉସ ଷଡ଼ଯନ୍ତ୍ର ୧୬୮୩**

ସାଫଟେସ୍‌ବରୀ ପଳାୟନ କଲାରୁ କେତେକ ହୁଇଗ ରାଜାଙ୍କ ବିରୁଦ୍ଧରେ ଗୋଟିଏ ଷଡ଼ଯନ୍ତ୍ର କରିଥିଲେ । ସେମାନେ ସ୍ଥିର କରିଥିଲେ ଯେ, ରାଜା ନିଉମାର୍କେଟ ନାମକ ସ୍ଥାନରୁ ଲଣ୍ଡନ ପ୍ରତ୍ୟାଗମନ କଲା ସମୟରେ ସେମାନେ ତାହାଙ୍କୁ ଏବଂ ତାହାଙ୍କ ଭ୍ରାତା ଜେମସ୍‌ଙ୍କୁ 'ରାଇହାଉସ୍ ନାମକ ସ୍ଥାନରେ ହତ୍ୟା କରିବେ । ମାତ୍ର ଏହି ଷଡ଼ଯନ୍ତ୍ର ଧରା ପଡ଼ିବାରୁ ଲର୍ଡ ରସେଲ ଓ ସିଡନି ଓ ଅପର କେତେକ ସମ୍ଭ୍ରାନ୍ତ ବ୍ୟକ୍ତି ଏଥିରେ ଲିପ୍ତ ଥିବାରୁ ପ୍ରାଣଦଣ୍ଡ ପ୍ରାପ୍ତ ହେଲେ ।

ଚାର୍ଲସଙ୍କ ବିରୁଦ୍ଧ ପକ୍ଷୀୟ ନେତାମାନଙ୍କର ପ୍ରାଣଦଣ୍ଡ ହେବାରୁ ଜେମସ୍ ନିରାପଦ ମନେକରି ପୁନର୍ବାର ନୌବିଭାଗରେ ଅଧିନାୟକ ପଦ ଗ୍ରହଣ କଲେ । ଧର୍ମଯାଜକମାନେ ରାଜକ୍ଷମତାର ବିରୁଦ୍ଧାଚରଣ ହେବା ଅନୁଚିତ ବୋଲି ପ୍ରଚାର କରିବାକୁ ଲାଗିଲେ । ଏହିପରି ସମୟରେ ଚାର୍ଲସଙ୍କର ମୃତ୍ୟୁ ହେଲା । ମୃତ୍ୟୁ ପୂର୍ବେ ସେ ଅପଣାକୁ କାଥଲିକ ବୋଲି ସ୍ୱୀକାର କରିଥିଲେ ।

**ଚାର୍ଲସଙ୍କ ମୃତ୍ୟୁ ୧୬୮୫**

---

# ଦ୍ୱିତୀୟ ଜେମ୍ସ

ଜନ୍ମ—୧୬୩୩; ରାଜତ୍ୱ—(୧୬୮୫—୮୮)=୩ବର୍ଷ



ଚାର୍ଲସଙ୍କ ମୃତ୍ୟୁ ପରେ ତାହାଙ୍କ କନିଷ୍ଠ ଭ୍ରାତା ଜେମସ୍ ସିଂହାସନ ଆରୋହଣ କଲେ । ସିଂହାସନ ଆରୋହଣ ସମୟରେ ସେ ଘୋଷଣା କରିଥିଲେ ଯେ, ସେ ନିୟମାନୁଯାୟୀ ଦେଶ ଶାସନ କରିବେ । କିନ୍ତୁ ସେ ତାଙ୍କ ପ୍ରତିଜ୍ଞା ରକ୍ଷା କଲେ ନାହିଁ । ସେ ଅତ୍ୟନ୍ତ ସଙ୍କୀର୍ଣ୍ଣଚେତା ଥିଲେ ଏବଂ ତାହାଙ୍କ ପିତାଙ୍କ ତୁଲ୍ୟ ଲୋକମତ ଉପେକ୍ଷା କରୁଥିଲେ । ସେ ପ୍ରକାଶ୍ୟ ଭାବରେ କାଥଲିକ୍ ଧର୍ମ ଗ୍ରହଣ କରିଥିଲେ ଏବଂ "ଟେଷ୍ଟ ଆକ୍ଟ" ଅମାନ୍ୟ କରି କାଥଲିକମାନଙ୍କୁ ଉଚ୍ଚ ରାଜକାର୍ଯ୍ୟ ପ୍ରଦାନ କରିବାରୁ ଇଂରେଜମାନେ ତାହାଙ୍କର ଶତ୍ରୁ ହୋଇ ଉଠିଲେ ।

ଚରିତ୍ର,

ସିଂହାସନ ଅଧିରୋହଣ କରି ଜେମସ୍ କାଥଲିକ ଧର୍ମମନ୍ଦିରମାନଙ୍କରେ "ମାସ୍" ନାମକ ଉପାସନା କରିବା ଅନୁମତି ଦେଇ ଯେଉଁ କାଥଲିକ୍-ମାନେ "ଟେଷ୍ଟ ଆକ୍ଟ" ଯୋଗୁଁ କାରାରୁଦ୍ଧ ହୋଇଥିଲେ ସେମାନଙ୍କୁ ମୁକ୍ତି ପ୍ରଦାନ କଲେ। ଚାର୍ଲସଙ୍କୁ ପ୍ରଦତ୍ତ ବାର୍ଷିକ ରାଜସ୍ୱ ପାର୍ଲିମେଣ୍ଟ ଆହୂତ ହେବା ପୂର୍ବେ ତାହାର ମତ ନ ନେଇ ଉପଭୋଗ କରିବାକୁ ଲାଗିଲେ। ମାତ୍ର ଚାର୍ଲସ ପାର୍ଲିମେଣ୍ଟ ମେମ୍ବର ନିର୍ବାଚନ କ୍ଷମତା ଏପରି ଲୋକମାନଙ୍କୁ ପ୍ରଦାନ କରିଥିଲେ ଯେ, ଜେମସ୍ଙ୍କ ଯେଉଁ ନୂତନ ପାର୍ଲିମେଣ୍ଟ ଆହୂତ ହେଲା, ତାହାର ମେମ୍ବରମାନେ ତାହାଙ୍କ କାର୍ଯ୍ୟର କୌଣସି ପ୍ରତିବାଦ ନ କରି ଚାର୍ଲସଙ୍କୁ ପ୍ରଦତ୍ତ ସମସ୍ତ ରାଜସ୍ୱ ଓ ଶୁଳ୍କ ଏବଂ ତାମ୍ରକୂଟ ଉପରେ ନିର୍ଦ୍ଧାରିତ କର ପ୍ରଦାନ କଲେ।

ତାହାଙ୍କର ସ୍ୱେଚ୍ଛାଚାର

ରାଇହାଉସ ଷଡ଼ଯନ୍ତ୍ର ଉତ୍ତାରେ ଯେଉଁ ପ୍ରୋଟେଷ୍ଟାଣ୍ଟମାନେ ହଲାଣ୍ଡରେ ଆଶ୍ରୟ ନେଇଥିଲେ ସେମାନେ ଜେମସ୍ଙ୍କ ସିଂହାସନ ଆରୋହଣ ପରେ ମନ୍ମଥଙ୍କୁ ଇଂଲଣ୍ଡର ରାଜା କରିବାକୁ ସଚେଷ୍ଟ ହେଲେ। ସ୍କଟଲାଣ୍ଡର ଅର୍ଗାଇଲ ନାମକ ପ୍ରଦେଶର ଡିଉକ୍ ଏଥିରେ ଯୋଗ ଦେଇଥିଲେ; ସ୍ଥିର ହେଲା, ଅର୍ଗାଇଲ ସ୍କଟଲାଣ୍ଡ ଯାଇ ତତ୍ରସ୍ଥ ପିଉରିଟାନମାନଙ୍କୁ ସଂଗ୍ରହ କରି ଇଂଲଣ୍ଡର ଉତ୍ତରଭାଗ ଆକ୍ରମଣ କରି ଲଣ୍ଡନ ଅଧିକାର କରିବେ ଏବଂ ମନ୍ମଥ ଦକ୍ଷିଣ ଭାଗ ଆକ୍ରମଣ କରି ତାହାଙ୍କ ସହିତ ଲଣ୍ଡନରେ ମିଳିତ ହେବେ। କିନ୍ତୁ ବ୍ୟବସ୍ଥା ଦୋଷରୁ ଅର୍ଗାଇଲ ପ୍ରଥମେ ସ୍କଟଲାଣ୍ଡରେ ଉପସ୍ଥିତ ହେଲେ। ରାଜପକ୍ଷୀୟ ଲୋକମାନେ ସତର୍କ ଥିବାରୁ ତାହାଙ୍କର ଲୋକ ସଂଗ୍ରହର ଚେଷ୍ଟା ବିଫଳ ହେଲା, ଏବଂ ସେ ଧୃତ ହୋଇ ମୃତ୍ୟୁଦଣ୍ଡ ପ୍ରାପ୍ତ ହେଲେ।

ମନ୍ମଥଙ୍କ ବିଦ୍ରୋହ
୧୬୮୫

ମନ୍ମଥ ଲଣ୍ଡନର ଦକ୍ଷିଣ ଉପକୂଳରେ ଉପସ୍ଥିତ ହୋଇ ପ୍ରାୟ ୧୫୦୦ ଲୋକ ସଂଗ୍ରହ କରି ଟନ୍ଟନ୍ ନାମକ ସ୍ଥାନ ଅଭିମୁଖରେ ଅଗ୍ରସର

ହେଲେ । ସେଠାରେ କୃଷକ ବାଳକାମାନେ ତାହାଙ୍କୁ ଗୋଟିଏ ବାଇବେଲ ଓ ଗୋଟିଏ ତରବାରୀ ଉପହାର ଦେଇଥିଲେ । ସେ ସେଠାରେ ରାଜା ବୋଲି ଘୋଷିତ ହେଲେ । ମାତ୍ର ତାହାଙ୍କ ସହିତ କୌଣସି ସମ୍ଭ୍ରାନ୍ତ ବ୍ୟକ୍ତି ଯୋଗ ଦେଲେ ନାହିଁ । କାରଣ ସେମାନେ ବୁଝିଥିଲେ ମନ୍ମଥଙ୍କର ସିଂହାସନ ପ୍ରତି କୌଣସି ଦାବି ନାହିଁ । ଜେମସ୍‌ଙ୍କ କନ୍ୟା ମେରୀହିଁ ସିଂହାସନର ପ୍ରକୃତ ଅଧିକାରୀ । ଇତିମଧ୍ୟରେ ରାଜାଙ୍କ ସୈନ୍ୟଦଳ ତାହାଙ୍କ ସମ୍ମୁଖୀନ ହୋଇ ସେଜମୂର ନାମକ ସ୍ଥାନରେ ସୈନ୍ୟ ସମାବେଶ କଲେ ଏବଂ ଶିବିର ରକ୍ଷା ନିମିତ୍ତ ଗୋଟିଏ ପରିଖା ଖନନ କଲେ । ମନମଥ ତାହାଙ୍କ ଅଶିକ୍ଷିତ ସୈନ୍ୟ ଘେନ ରାତ୍ରିକାଳରେ ରାଜାଙ୍କ ଶିକ୍ଷିତ ସୈନ୍ୟ-ମାନଙ୍କୁ ଅତର୍କିତ ଭାବରେ ଆକ୍ରମଣ କଲେ । କିନ୍ତୁ ସେ ପରିଖା ବିଷୟ ଜାଣି ନ ଥିବାରୁ ତାହାଙ୍କ ସୈନ୍ୟମାନେ ସେହି ପରିଖାରେ ପତିତ ହୋଇ ନାନା ବିଶୃଙ୍ଖଳା ଜାତ କଲେ । ଇତିମଧ୍ୟରେ ରାଜାଙ୍କ ସୈନ୍ୟମାନେ ତାହାଙ୍କ ସୈନ୍ୟଦଳ ଉପରେ ପତିତ ହୋଇ ତାହା ବିଧ୍ୱସ୍ତ କଲେ । ମନମଥ ବନ୍ଦୀ ହୋଇ ମୃତ୍ୟୁଦଣ୍ଡ ପ୍ରାପ୍ତ ହେଲେ ।

ମନମଥଙ୍କ ମୃତ୍ୟୁ ଉତ୍ତାରେ କର୍ଣ୍ଣେଲ କାର୍କି ନାମକ ରାଜାଙ୍କର ଏକ ସେନାନାୟକ ଶାନ୍ତି ସ୍ଥାପନାର୍ଥ ଏକଦଳ ସୈନ୍ୟ ସହ ସେଜମୂର ନିକଟସ୍ଥ ବ୍ରିଜ୍‌ଓ୍ୱାଟାରଠାରେ ଅବସ୍ଥାନ କରିବାକୁ ଲାଗିଲେ । ତାହାଙ୍କ ପତାକାରେ ଏକ ମେଷ ଚିହ୍ନ ଥିବାରୁ ଓ ତାହାଙ୍କ ସୈନ୍ୟମାନେ ଅତ୍ୟନ୍ତ ନିଷ୍ଠୁର ଥିବାରୁ ଲୋକେ ତାହାଙ୍କୁ ବିଦ୍ରୂପ କରି "କାର୍କିଙ୍କ ମେଷଦଳ" ଆଖ୍ୟା ପ୍ରଦାନ କରିଥିଲେ । କାର୍କିଙ୍କ ଆଦେଶରେ ତାହାଙ୍କ ଲୋକମାନେ ବନ୍ଦୀମାନଙ୍କୁ ଫାଶି ଦେଇ ସେମାନଙ୍କୁ ଅଲକାତାରେ ବୁଡ଼ାଇ ଦଗ୍ଧ କରୁଥିଲେ । ତଦନନ୍ତର ବିଦ୍ରୋହରେ ସଂଶ୍ଳିଷ୍ଟ ଲୋକମାନଙ୍କ ବିଚାର ନିମିତ୍ତ ଜେଫ୍‌ରେ ନାମକ ଏକ ବିଚାରପତି ପ୍ରେରିତ ହେଲେ । ଯେଉଁ ଲୋକମାନେ ମନମଥଙ୍କ ବିଦ୍ରୋହରେ ସଂଶ୍ଳିଷ୍ଟ ଥିଲେ ସେ ସେମାନଙ୍କୁ ମୃତ୍ୟୁଦଣ୍ଡ ପ୍ରଦାନ କରୁଥିଲେ କିମ୍ବା କ୍ରୀତଦାସରୂପେ ବିକ୍ରୀତ ହେବାକୁ

ଆମେରିକାକୁ ପ୍ରେରଣ କରିଥିଲେ । ଏହି ପ୍ରକାରେ ପ୍ରାୟ ୩୦୦ ଲୋକ ମୃତ୍ୟୁମୁଖରେ ପତିତ ହୋଇଥିଲେ ଏବଂ ପ୍ରାୟ ୮୦୦ ଲୋକ କ୍ରୀତଦାସ-ରୂପେ ବିକ୍ରୀତ ହୋଇଥିଲେ ।

ମନମଥଙ୍କ ବିଦ୍ରୋହ ହେତୁ ରାଜା ପାର୍ଲିମେଣ୍ଟର ମତାମତର ଅପେକ୍ଷା ନ କରି ସୈନ୍ୟସଂଖ୍ୟା ଦ୍ୱିଗୁଣ କଲେ ଓ ସେମାନଙ୍କ ପରିଚାଳନା ଭାର

ସୈନ୍ୟବିଭାଗରେ କାଥଲିକ୍ କର୍ମଚାରୀ ନିୟୋଗ

କାଥଲିକ୍‌ମାନଙ୍କୁ ପ୍ରଦତ୍ତ ହେଲା । ପ୍ରିଭିକାଉନ୍‌ସିଲର ସଭାପତି ଲର୍ଡ ହାଲିଫାକ୍ସ ଏଥିରେ ଆପତ୍ତି କରିଥିବାରୁ ତାଙ୍କୁ କାର୍ଯ୍ୟଚ୍ୟୁତ କରାଗଲା ।

ଏଲିଜାବେଥଙ୍କ ସମୟରେ ଫ୍ରାନ୍ସର ରାଜା ଚତୁର୍ଥ ହେନ୍‌ରୀ ପ୍ରୋଟେଷ୍ଟାଣ୍ଟ ବା "ହିଉଗନଟ"ମାନଙ୍କ ଉପରେ କୌଣସି ଅତ୍ୟାଚାର କରିବେ ନାହିଁ

ଫ୍ରାନ୍ସରେ ପ୍ରୋଟେଷ୍ଟାଣ୍ଟ ମାନଙ୍କ ପ୍ରତି ଅତ୍ୟାଚାର

ବୋଲି "ନେଣ୍ଟିସ" ନାମକ ସ୍ଥାନରେ ଏକ ଘୋଷଣାପତ୍ର ପ୍ରଚାର କରିଥିଲେ । ମାତ୍ର ବର୍ତ୍ତମାନ ଫ୍ରାନ୍ସର ରାଜା ଉକ୍ତ ଘୋଷଣାପତ୍ର ପ୍ରତ୍ୟାହାର କରି (Revocation of the Edict of Nantis) "ହିଉଗନଟ" ମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର ଆରମ୍ଭ କଲେ । ଫରାସୀ ରାଜାଙ୍କ ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ପ୍ରାୟ ଏକଲକ୍ଷ "ହିଉ-ଗନଟ" ଜରମାନୀ, ହଲାଣ୍ଡ ଏବଂ ଇଂଲଣ୍ଡରେ ଆଶ୍ରୟ ଗ୍ରହଣ କଲେ । ଫ୍ରାନସର ରାଜାଙ୍କର ପ୍ରୋଟେଷ୍ଟାଣ୍ଟମାନଙ୍କ ଉପରେ ଅତ୍ୟାଚାର ଦେଖି ଇଂଲଣ୍ଡର ଲୋକମାନେ ଜେମସଙ୍କ ବ୍ୟବହାରରେ ଶଙ୍କିତ ହୋଇ ଉଠିଲେ । ପାର୍ଲିମେଣ୍ଟର ବୈଠକ ଆରମ୍ଭ ହୁଅନ୍ତେ ମେମ୍ବରମାନେ ସୈନ୍ୟ ବିଭାଗରେ ନିୟମବିରୁଦ୍ଧ କାଥଲିକ କର୍ମଚାରୀ ନିୟୋଗର ପ୍ରତିବାଦ କରିବାକୁ ଲାଗିଲେ । ମାତ୍ର ଜେମ୍‌ସ ସେଥିରେ କର୍ଣ୍ଣପାତ ନ କରି ପାର୍ଲିମେଣ୍ଟ ବନ୍ଦ କଲେ ।

ପାର୍ଲିମେଣ୍ଟ ବନ୍ଦ ହେଲା ସତ୍ୟ; ମାତ୍ର ଲୋକମାନେ କଫି ଦୋକାନରେ ଏକତ୍ରିତ ହୋଇ ସେଠାରେ ରାଜାଙ୍କ "ଟେଷ୍ଟଆକ୍ଟ" ବିରୁଦ୍ଧ କାର୍ଯ୍ୟର

**ରାଜାଙ୍କ ଆଇନ ଲଙ୍ଘନ କ୍ଷମତା (Suspending and dispensing power)**

ତୀବ୍ର ସମାଲୋଚନା କରିବାକୁ ଲାଗିଲେ । ଜେମ୍‌ସ ସେଥିରେ ଭ୍ରୂକ୍ଷେପ ନ କରି ସ୍ୱୀୟ ଅଧୀନସ୍ଥ କେତେକ ବିଚାରପତିଙ୍କ ସହିତ ପରାମର୍ଶ କରି ପ୍ରଚାର କଲେ ଯେ ନିୟମ ଲଙ୍ଘନ କରିବା କ୍ଷମତା ରାଜାଙ୍କର ଅଛି । ତଦନୁଯାୟୀ "ଟେଷ୍ଟଆକ୍ଟ" ଅମାନ୍ୟ କରି ସାର୍ ଏଡ୍‌ୱାର୍ଡ୍ ହେଲ୍‌ସ ନାମକ ଏକ କାଥଲିକଙ୍କୁ ଡୋଭର ପ୍ରଦେଶର ଶାସନକର୍ତ୍ତା ନିଯୁକ୍ତ କଲେ । "ଟେଷ୍ଟଆକ୍ଟ" ଭଙ୍ଗ-ହେତୁ ହେଲ୍‌ସ୍ ଅଭିଯୁକ୍ତ ହୁଅନ୍ତେ ରାଜାଙ୍କ ଅଧୀନସ୍ଥ ବିଚାରପତିମାନେ ତାହାଙ୍କୁ ମୁକ୍ତି ପ୍ରଦାନ କଲେ ।

ତଦନନ୍ତର ଜେମ୍‌ସ ଟେଷ୍ଟଆକ୍ଟ ଅମାନ୍ୟ କରି ଉଚ୍ଚ ରାଜକାର୍ଯ୍ୟମାନ କାଥଲିକମାନଙ୍କୁ ପ୍ରଦାନ କରିବାକୁ ଲାଗିଲେ । ତାହାଙ୍କର ଶ୍ୟାଳକ ଲର୍ଡ କ୍ଲାରେଣ୍ଡନ ଆୟରଲାଣ୍ଡର ଶାସନକର୍ତ୍ତା ଥିଲେ; ମାତ୍ର ସେ ପ୍ରୋଟେ-

**ରାଜକାର୍ଯ୍ୟରେ କାଥଲିକ ନିଯୁକ୍ତ**

ଷ୍ଟାଣ୍ଟ ଥିବାରୁ ତାହାଙ୍କ ପଦ ଲର୍ଡ ଟିରକୋନେଲ ନାମକ ଏକ କାଥଲିକ ପ୍ରାପ୍ତ ହେଲେ । ତାହାଙ୍କ କନିଷ୍ଠ ଶ୍ୟାଳକ ଲର୍ଡ ରଚେଷ୍ଟାର ପ୍ରଧାନ କୋଷାଧ୍ୟକ୍ଷ ପଦରୁ ବହିଷ୍କୃତ ହେଲେ ଏବଂ ଫାଦାର ପିଟର ନାମକ ସ୍ୱୀୟ ପୁରୋହିତ ପ୍ରିଭି କାଉନ୍‌ସିଲର ସଦସ୍ୟଭୁକ୍ତ ହେଲେ ।

ଧର୍ମଯାଜକମାନଙ୍କୁ ସପକ୍ଷରେ ରଖିବା ପାଇଁ ଜେମସ ପାର୍ଲିମେଣ୍ଟ ମତ ଗ୍ରହଣ ନ କରି ପୁନର୍ବାର ଏକ୍ଲେଜିୟାସଟିକାଲ କମିଶନ (Court of Ecclesiastical Commission)

**ଧର୍ମମନ୍ଦିରମାନଙ୍କରେ ହସ୍ତକ୍ଷେପ ୧୬୮୭**

ନାମକ ବିଚାରାଳୟ ସ୍ଥାପନ କଲେ ଏବଂ ଯେଉଁ ଧର୍ମଯାଜକମାନେ ତାହାଙ୍କ ମତ ବିରୋଧୀ ହେଲେ ସେମାନଙ୍କୁ ତଦ୍ଦ୍ୱାରା ଦଣ୍ଡ ଦେବାକୁ ଲାଗିଲେ । ତଦନନ୍ତର ରାଜପରିବାର

ଓ ବୈଦେଶିକ ଦୂତମାନଙ୍କ ପାଇଁ କାଥଲିକ ଧର୍ମମନ୍ଦିରମାନ ନିର୍ମିତ ହେବାକୁ ଲାଗିଲା ଏବଂ କାଥଲିକମାନଙ୍କ ଦ୍ୱାରା ସ୍କୁଲମାନ ସ୍ଥାପିତ ହେଲା । ପୋପଙ୍କ ପ୍ରତିନିଧିଙ୍କୁ ସେ ପ୍ରକାଶ୍ୟଭାବରେ ସମ୍ବର୍ଦ୍ଧନା କଲେ । ଏଥିରେ ଲୋକମାନେ ଅସନ୍ତୁଷ୍ଟ ହୋଇ ଲଣ୍ଡନରେ ଗୋଳମାଳ ଆରମ୍ଭ କରିବାରୁ ସେମାନଙ୍କ ଦମନାର୍ଥ ସେ "ହନସ୍ଲୋ" ନାମକ ସ୍ଥାନରେ ୧୩୦୦୦ ସୈନ୍ୟ ରକ୍ଷା କଲେ ।

ବିଶ୍ୱବିଦ୍ୟାଳୟମାନ ତାହାଙ୍କ ଦୌରାତ୍ମ୍ୟରୁ ରକ୍ଷା ପାଇ ନ ଥିଲା । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଭାଇସ ଚାନସେଲର ଜଣେ କାଥଲିକଙ୍କୁ ଏମ ଏ. ଉପାଧି ଦେବାକୁ ଅସ୍ୱୀକୃତ ହେବାରୁ ସେ ସ୍ୱ କାର୍ଯ୍ୟରୁ ବହିଷ୍କୃତ ହେଲେ । ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟର ମେଗ୍ଡେଲେନ କଲେଜର ସଦସ୍ୟମାନେ ଜଣେ କାଥଲିକଙ୍କୁ ସଭାପତିରୂପେ ଗ୍ରହଣ କରିବାକୁ ଅସ୍ୱୀକୃତ ହୁଅନ୍ତେ ତାଡ଼ିତ ହେଲେ ଏବଂ କାଥଲିକମାନଙ୍କୁ ଉକ୍ତ କାର୍ଯ୍ୟମାନ ପ୍ରଦତ୍ତ ହେଲା ।

ବିଶ୍ୱବିଦ୍ୟାଳୟମାନଙ୍କରେ ହସ୍ତକ୍ଷେପ ୧୬୮୭

କାଥଲିକ ଓ ନନ୍‌କନଫରମିଷ୍ଟ ନାମକ ପ୍ରୋଟେଷ୍ଟାନ ମତାବଲମ୍ବୀମାନଙ୍କୁ ସ୍ୱ ପକ୍ଷକୁ ଆଣିବା ପାଇଁ ସେ ଲୋକମାନଙ୍କୁ ସ୍ୱମତାନୁଯାୟୀ ଉପାସନା କରିବାର ଅଧିକାର ପ୍ରଦାନ କଲେ ଏବଂ "ଟେଷ୍ଟ ଅକ୍ଟ" ଅନୁଯାୟୀ ଶପଥ ଗ୍ରହଣ ନ କରି ଲୋକେ ରାଜକାର୍ଯ୍ୟ ଗ୍ରହଣ କରି ପାରିବେ ବୋଲି ଘୋଷଣା କଲେ । ସେ ଆଶା କରିଥିଲେ; ଏତଦ୍ୱାରା ପ୍ରୋଟେଷ୍ଟାନମାନେ ସନ୍ତୁଷ୍ଟ ହୋଇ ତାହାଙ୍କ ପକ୍ଷ ଅବଲମ୍ବନ କରିବେ । ମାତ୍ର ପ୍ରୋଟେଷ୍ଟାନମାନେ ବୁଝିଥିଲେ ଯେ, ରାଜାଙ୍କର ଏହି ଘୋଷଣା କେବଳ କାଥଲିକମାନଙ୍କ ସୁବିଧା ନିମନ୍ତେ । ସୁତରାଂ ରାଜା ସେମାନଙ୍କୁ ଏତଦ୍ୱାରା ସନ୍ତୁଷ୍ଟ କରି ପାରିଲେ ନାହିଁ ।

ଲୋକମାନଙ୍କୁ ସ୍ୱମତାନୁଯାୟୀ ଉପାସନାର ଅଧିକାର ପ୍ରଦାନ (Declaration Indulgence.)

ଏହାର ଉତ୍ତରରେ ଧର୍ମଯାଜକମାନେ ରାଜାଙ୍କର ଏହି ଘୋଷଣା ପତ୍ର (Declaration of Indulgence) ରବିବାର ଦିବସ ଉପାସନା ସମୟରେ ଧର୍ମାଳୟମାନଙ୍କରୁ ପ୍ରଚାର କରିବାକୁ ଅବଜ୍ଞା ଦେଲେ । ମାତ୍ର କାଣ୍ଟରବେରୀର ଆର୍ଚ୍ଚବିଶପ ପ୍ରମୁଖ ସାତଜଣ ବିଶପ ଏହି ଆଦେଶ ଅନ୍ୟାୟ ବୋଲି ରାଜାଙ୍କ ନିକଟରେ ଆବେଦନ କରନ୍ତେ ରାଜା ଏଥିରେ କ୍ରୁଦ୍ଧ ହୋଇ ରାଜଦ୍ରୋହ ହେତୁ ସେମାନଙ୍କୁ "ଲଣ୍ଡନ ଟାୱାର" ନାମକ ପ୍ରସିଦ୍ଧ ଦୁର୍ଗରେ ବନ୍ଦୀ କରିଥିଲେ । ବିଚାର ଦିବସ ବିଚାରାଳୟର ଚତୁର୍ଦ୍ଦିଗରେ କ୍ରୁଦ୍ଧ ଜନତାର ଏପରି ସମାବେଶ ହୋଇଥିଲା ଯେ, ଜୁରି ଓ ବିଚାରକମାନେ ଭୀତ ହୋଇ ସେମାନଙ୍କୁ ମୁକ୍ତି ପ୍ରଦାନ କଲେ । ଲଣ୍ଡନରେ ଆନନ୍ଦ ଚହଳ ପଡ଼ିଗଲା । ନଗରଟି ଆଲୋକମାଳାରେ ସଜ୍ଜିତ ହେଲା ।

ସାତଜଣ ବିଶପଙ୍କ ବିଚାର

ରାଜାଙ୍କର ଏହି ପ୍ରକାର କାର୍ଯ୍ୟକଳାପ ହେତୁ ଇଂଲଣ୍ଡର ଲୋକମାନେ ଅତ୍ୟନ୍ତ ବିରକ୍ତ ହୋଇ ପଡ଼ିଥିଲେ । "ହନସ୍ଲୋ"ରେ ତାହାଙ୍କର ଅବସ୍ଥିତ ସୈନ୍ୟଦଳ ମଧ୍ୟ ବିଶପମାନଙ୍କର ମୁକ୍ତିରେ ଜନସାଧାରଣଙ୍କ ସହିତ ଆନନ୍ଦ କୋଳାହଳରେ ଯୋଗଦାନ କରିଥିଲେ ।

## ବିଷପଙ୍କ ମୁକ୍ତି



ବିଷପମାନଙ୍କ ବିଚାର ଆରମ୍ଭ ହେବା ପୂର୍ବେ ରାଜାଙ୍କର ଏକ ନବ କୁମାର ଜାତ ହୋଇଥିଲା । ଲୋକେ ମନେ କରୁଥିଲେ ଯେ, ଯେମସଙ୍କ ଅନ୍ତେ ତାହାଙ୍କ କନ୍ୟା ମେରି ସିଂହାସନ ପ୍ରାପ୍ତ ହେଲେ ସେମାନଙ୍କର ସମସ୍ତ ଦୁଃଖ ଦୂର ହେବ । ମାତ୍ର ରାଜାଙ୍କର ଏକ ପୁତ୍ର ଜାତ ହୁଅନ୍ତେ ଲୋକମାନଙ୍କର ସେ ଆଶା ଦୂର ହେଲା । ସେମାନେ ବୁଝିପାରିଲେ ରାଜାଙ୍କ ଶିଶୁପୁତ୍ର ମଧ୍ୟ କାଥଲିକ-ମତେ ଶିକ୍ଷାଦୀକ୍ଷା ପ୍ରାପ୍ତ ହୋଇ ପିତାଙ୍କ ତୁଲ୍ୟ ଯଥେଚ୍ଛାଚାରୀ ହେବ । କେତେକ ଲୋକ ଉକ୍ତ ଶିଶୁପୁତ୍ର ଯେମସଙ୍କ ପ୍ରକୃତ ପୁତ୍ର ନୁହେଁ ବୋଲି ଏକ ଜନରବ ପ୍ରଚାର କଲେ ଏବଂ ଯେମ୍‌ସଙ୍କୁ ସିଂହାସନଚ୍ୟୁତ କରି ତାହାଙ୍କ ଜ୍ୟେଷ୍ଠା କନ୍ୟା ମେରି ଓ ଜାମାତା ଉଇଲିୟମଙ୍କୁ ସିଂହାସନ ପ୍ରଦାନ କରିବାକୁ ସ୍ଥିର କରି ହଲାଣ୍ଡକୁ ଲୋକ ପ୍ରେରଣ କଲେ । ସେ ସମୟରେ ଫ୍ରାନ୍‌ସ୍ ସହିତ ଉଇଲିୟମଙ୍କ ବିରୋଧ ଥିବାରୁ ତାହାଙ୍କ ଅନୁପସ୍ଥିତିରେ ଫରାସି ରାଜା ହଲାଣ୍ଡ ଆକ୍ରମଣ କରି ପାରନ୍ତି, ଏହି ଆଶଙ୍କା କରି ସେ ଇଂଲଣ୍ଡ ଆକ୍ରମଣ କରିବାକୁ ପଶ୍ଚାତ୍‌ପଦ ହେଲେ । ଇଂଲଣ୍ଡର ସମସ୍ତ ଶ୍ରେଣୀର ଲୋକ ତାହାଙ୍କ ପକ୍ଷରେ ଯୋଗ ନ ଦେଲେ ତାହାଙ୍କର ଦଶା ମନମଥଙ୍କ ଦଶା ତୁଲ୍ୟ ହେବ, ଏ ଆଶଙ୍କା ମଧ୍ୟ ଥିଲା ।

ରାଜାଙ୍କର ନବପୁତ୍ର ଲାଭ

ବିଷପମାନଙ୍କ ବିଚାର ଉତ୍ତାରେ ଇଂଲଣ୍ଡର ସମସ୍ତ ଶ୍ରେଣୀର ଲୋକ ଯେମସଙ୍କୁ ସିଂହାସନଚ୍ୟୁତ କରିବାକୁ କୃତସଂକଳ୍ପ ହୋଇ ଉଇଲିୟମଙ୍କ ନିକଟକୁ ସ୍ୱ ସ୍ୱ ଦଳର ଜଣେ ଲେଖାଏଁ ପ୍ରତିନିଧି ପ୍ରେରଣ କଲେ । ଏହି ସମୟରେ ଫ୍ରାନ୍‌ସ ରାଜାଙ୍କ ସହିତ ପୋପ ଓ ଜର୍ମାନିର ରାଜାଙ୍କର ବିବାଦ ଉପସ୍ଥିତ ହେବାରୁ ଓ ଇଂଲଣ୍ଡର ସମସ୍ତ ଶ୍ରେଣୀର ଲୋକଙ୍କ ଦ୍ୱାରା ଆହୂତ ହେବାରୁ ଉଇଲିୟମ ୧୩୦୦୦ ସୈନ୍ୟ ସହ ଇଂଲଣ୍ଡର ଦକ୍ଷିଣ ଭାଗରେ ଉପସ୍ଥିତ ହେଲେ । ଉଇଲିୟମ ଇଂଲଣ୍ଡରେ ଉପସ୍ଥିତ ହେବାରୁ ଇଂଲଣ୍ଡର ସମସ୍ତ ଶ୍ରେଣୀର ଲୋକ ତାହାଙ୍କ ସହିତ ଯୋଗ ଦେଲେ । ରାଜାଙ୍କ

ଉଇଲିୟମଙ୍କର ଇଂଲଣ୍ଡ ଆଗମନ—୧୬୮୮

ସେନାପତି ଲର୍ଡ ଚର୍ଚ୍ଚିଲ୍ ସୈନ୍ୟଦଳ ସହ ଉଇଲିୟମଙ୍କ ସୈନ୍ୟଦଳ ସଙ୍ଗେ ଯୋଗଦାନ କଲେ । ଜେମସଙ୍କ କନିଷ୍ଠା କନ୍ୟା ଏନ୍ ସ୍ୱୀୟ ସ୍ୱାମୀ ଡେନମାର୍କର ରାଜା ଜର୍ଜଙ୍କ ସହିତ ପିତାଙ୍କୁ ପରିତ୍ୟାଗ କରି ଇଂଲଣ୍ଡର ଉତ୍ତରାଞ୍ଚଳକୁ ପଳାୟନ କଲେ । ଜେମସ୍ ସମସ୍ତଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ସ୍ୱୀୟ ସ୍ତ୍ରୀପୁତ୍ରଙ୍କୁ ଫ୍ରାନ୍ସକୁ ପ୍ରେରଣ କଲେ ଓ ସ୍ୱୟଂ ସେମାନଙ୍କର ଅନୁଗମନ କରିବା ସମୟରେ ଇଂଲଣ୍ଡର ଉପକୂଳ ଭାଗରେ କେତେକ ମତ୍ସ୍ୟଜୀବୀଙ୍କ ଦ୍ୱାରା ଧୃତ ହୋଇ ଉଇଲିୟମଙ୍କ ସମୀପକୁ ଆନୀତ ହେଲେ । ଉଇଲିୟମ ତାହାଙ୍କୁ "ରଚେଷ୍ଟର" ନାମକ ସ୍ଥାନରେ ସାମାନ୍ୟ କେତେକ ପ୍ରହରୀଙ୍କ ତତ୍ତ୍ୱାବଧାନରେ ଅସତର୍କ ଅବସ୍ଥାରେ ରକ୍ଷା କରିଥିଲେ । ସୁତରାଂ ଜେମସ୍ ସେ ସ୍ଥାନରୁ ନିର୍ବିଘ୍ନରେ ପଳାୟନ କରି ଫ୍ରାନ୍ସରେ ଉପସ୍ଥିତ ହୋଇ ଅତ୍ୟନ୍ତ ସମାଦର ସହିତ ଫରାସୀ ରାଜାଙ୍କ ଦ୍ୱାରା ଗୃହୀତ ହୋଇଥିଲେ ।

## ଉଇଲିୟମ ଓ ମେରୀଙ୍କ ସିଂହାସନ ପ୍ରାପ୍ତି



ଜେମସ୍ ଲଣ୍ଡନ ପରିତ୍ୟାଗ କରିବାର ଅଳ୍ପଷଣ ଉତ୍ତାରେ ଉଇଲିୟମ ସେଠାରେ ଉପସ୍ଥିତ ହେଲେ । ସେ ସମୟରେ ପାର୍ଲିମେଣ୍ଟ ନ ଥିବାରୁ

ଉଇଲିୟମ ଓ ମେରୀଙ୍କ ସିଂହାସନାରୋହଣ

ସେ ଦେଶର ସମସ୍ତ ସମ୍ଭ୍ରାନ୍ତ ଲୋକ ଦ୍ୱିତୀୟ ଚାର୍ଲସଙ୍କ ପାର୍ଲିମେଣ୍ଟର ସମସ୍ତ ମେମ୍ବରମାନଙ୍କୁ ଆହ୍ୱାନ କରି ସେମାନଙ୍କ ସହିତ ଦେଶ ଶାସନ ବିଷୟରେ ପରାମର୍ଶ କରିବାକୁ ପ୍ରବୃତ୍ତ ହେଲେ । ସେମାନଙ୍କ ପରାମର୍ଶ ଅନୁଯାୟୀ ଗୋଟିଏ "କନଭେନସନ୍ ପାର୍ଲିମେଣ୍ଟ" ଆହୂତ ହେଲା । ଏହି କନଭେନସନ୍ ପାର୍ଲିମେଣ୍ଟ ଏକ ଘୋଷଣାପତ୍ର ( Declaration of Rights) ପ୍ରକାଶ କରି ସ୍ଥିର କରିଥିଲେ ଯେ, ଉଇଲିୟମ ଓ ମେରୀ ଇଂରେଜ ଜାତିର ଜାତୀୟ ଅଧିକାରରେ ହସ୍ତକ୍ଷେପ ନ କରି ଯୁଗ୍ମଭାବରେ ରାଜାରାଣୀରୂପେ ଇଂଲଣ୍ଡର ସିଂହାସନ ଆରୋହଣ କରିବେ । ଏଥି ଉତ୍ତାରେ ଏହି ଘୋଷଣାପତ୍ର ଏକ ନିୟମରେ ପରିଣତ ହେଲା । (Bill of Rights) ଏହା ପାର୍ଲିମେଣ୍ଟ ଓ ରାଜାଙ୍କ କ୍ଷମତାର ସୀମା ନିର୍ଦ୍ଦେଶ କରି ଉଭୟଙ୍କ ମଧ୍ୟରେ ବିରୋଧର ପରିସମାପ୍ତି କରିଥିଲା । ଏହା ଦ୍ୱାରା ସ୍ଥିର ହୋଇଥିଲା ଯେ-

(୧) ରାଜା ପାର୍ଲିମେଣ୍ଟ କର୍ତ୍ତୃକ ପ୍ରତିଷ୍ଠିତ କୌଣସି ନିୟମ ଉଠାଇ ଦେଇ ପାରିବେ ନାହିଁ ।

(୨) ପାର୍ଲିମେଣ୍ଟ ଅମତରେ ଜେମସଙ୍କ ଦ୍ୱାରା ପ୍ରତିଷ୍ଠିତ ଧର୍ମସମ୍ବନ୍ଧୀୟ ବିଚାରାଳୟ (Ecclesiastical Commission Court) ନିୟମବିରୁଦ୍ଧ; ତାହା ଭଙ୍ଗ କରାଗଲା ।

(୩) ପାର୍ଲିମେଣ୍ଟ ଅମତରେ ଲୋକମାନଙ୍କଠାରୁ ଅର୍ଥ ଆଦାୟ କରିବା ଗର୍ହିତ । ରାଜା ତାହା କରି ପାରିବେ ନାହିଁ ।

(୪) ପାର୍ଲିମେଣ୍ଟ ଅମତରେ ଶାନ୍ତି ସମୟରେ ଦେଶରେ ସୈନ୍ୟ ଦଳ ରକ୍ଷା କରିବା ଅନ୍ୟାୟ ।

(୫) ପ୍ରଜାମାନେ ସେମାନଙ୍କ ଅଭାବ ଅଭିଯୋଗ ରାଜାଙ୍କୁ ଜ୍ଞାପନ କରିପାରନ୍ତି । ସେଥିପାଇଁ ସେମାନଙ୍କୁ କାରାରୁଦ୍ଧ କରିବା ଉଚିତ ନୁହେଁ ।

(୬) ପାର୍ଲିମେଣ୍ଟର ସଭ୍ୟ ନିର୍ବାଚନକ୍ଷେତ୍ରରେ ରାଜା ହସ୍ତକ୍ଷେପ କରି ପାରିବେ ନାହିଁ ।

(୭) ପାର୍ଲିମେଣ୍ଟର ସଭ୍ୟମାନେ ସ୍ୱ ସ୍ୱ ମତାମତ ବ୍ୟକ୍ତ କଲେ ଦଣ୍ଡିତ ହେବେ ନାହିଁ ।

(୮) ଅତ୍ୟଧିକ ଅର୍ଥଦଣ୍ଡ ଲୋକମାନଙ୍କୁ ପ୍ରଦତ୍ତ ହେବ ନାହିଁ । ରାଜଦ୍ରୋହୀ ଅପରାଧର ବିଚାର ସମୟରେ ସ୍ୱାଧୀନ ଲୋକମାନେ ଜୁରି ନିଯୁକ୍ତ ହେବେ ।

(୯) ଦେଶର ନିୟମ ରକ୍ଷାର୍ଥ ଓ ଲୋକମାନଙ୍କର ଦୁଃଖ ଦୂରୀକରଣାର୍ଥ ସର୍ବଦା ପାର୍ଲିମେଣ୍ଟ ଆହୂତ ହେବ ।

(୧୦) କୌଣସି କାଥଲିକ ଇଂଲଣ୍ଡର ସିଂହାସନ ପ୍ରାପ୍ତ ହେବ ନାହିଁ ।

ଏହି ବିଲ ଅଫ୍ ରାଇଟସ୍ (Bill of rights) ଇଂରାଜ ଜାତିର ତୃତୀୟ ସ୍ୱାଧୀନତା ସନନ୍ଦ ନାମରେ ପରିଚିତ ।

ଉପରୋକ୍ତ ସର୍ତ୍ତ ଅନୁଯାୟୀ ଉଇଲିୟମ ଓ ମେରୀ ଇଂଲଣ୍ଡର ସିଂହାସନ ଆରୋହଣ କଲେ । ସେମାନଙ୍କର ସନ୍ତାନାଦି ନ ହେଲେ ଜେମସଙ୍କ ଦ୍ୱିତୀୟା କନ୍ୟା ଏନ୍ ସିଂହାସନ ପ୍ରାପ୍ତ ହେବେ, ସ୍ଥିର ହେଲା ।

ଏହି ମହାନ୍ "ଅନ୍ତର୍ବିପ୍ଳବ" (Glorious Revolution) ନାମରେ ଖ୍ୟାତ । ଏଥିରେ ଏକ ବିନ୍ଦୁ ରକ୍ତପାତ ହୋଇ ନାହିଁ । କିନ୍ତୁ ଜଣେ ରାଜା ସିଂହାସନଚ୍ୟୁତ ହୋଇଅଛନ୍ତି ଏବଂ ଦେଶର ଶାସନଯନ୍ତ୍ର ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇଅଛି । ଏଥି ପୂର୍ବେ ରାଜଶକ୍ତି ପ୍ରବଳ ଥିଲା । ତାହା

ବର୍ତ୍ତମାନ ଲୋପ ହୋଇ ପାର୍ଲିମେଣ୍ଟ ସର୍ବଶକ୍ତିମାନ୍ ଏବଂ ଦେଶର ପ୍ରକୃତ ଶାସକ ହୋଇ ଉଠିଲା ।

---

## ତୃତୀୟ ଉଇଲିୟମ ଓ ମେରୀ

[୧୬୮୯—୧୭୦୨]

ଉଇଲିୟମ, ଜନ୍ମ—୧୬୫୦; ବିବାହ—୧୬୭୭; ମୃତ୍ୟୁ—୧୭୦୨

ମେରୀ, ଜନ୍ମ—୧୬୬୨; ମୃତ୍ୟୁ—୧୬୯୪



ଉଇଲିୟମ ଅତ୍ୟନ୍ତ ଗମ୍ଭୀର ଓ ମୌନ ପ୍ରକୃତିବିଶିଷ୍ଟ ଥିବାରୁ ଲୋକପ୍ରିୟ ହୋଇ ପାରି ନ ଥିଲେ; ମାତ୍ର ଯେଉଁମାନେ ଯୁଦ୍ଧକ୍ଷେତ୍ରରେ ତାହାଙ୍କର ସାହସ ଓ ତତ୍ପରତା ଅବଲୋକନ କରିଥିଲେ, ସେମାନେ ତାହାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ଧର୍ମ ବିଷୟରେ ସେ ସାମ୍ୟବାଦୀ ଥିଲେ ଏବଂ ବାହ୍ୟିକ ଆଡ଼ମ୍ବରର ବିରୋଧୀ ଥିଲେ । ରାଜନୈତିକ କ୍ଷେତ୍ରରେ ସେ ଇଂଲଣ୍ଡର ବିଭିନ୍ନ ମତାବଲମ୍ବୀମାନଙ୍କ ମଧ୍ୟରେ ମିଳନ ସମ୍ପାଦନପୂର୍ବକ ଦେଶ ମଧ୍ୟରେ ଶାନ୍ତି ରକ୍ଷା କରି ସମସ୍ତ ଶକ୍ତି ଇଂଲଣ୍ଡ ଓ ହଲାଣ୍ଡର ପ୍ରଧାନ ଶତ୍ରୁ ଫ୍ରାନ୍ସ ବିରୁଦ୍ଧରେ ପ୍ରୟୋଗ କରି ଇଉରୋପର ରାଜଶକ୍ତିମାନଙ୍କ ମଧ୍ୟରେ ସମତା (Balance of Power)ରକ୍ଷା କରିବାକୁ ପ୍ରୟାସୀ ହୋଇଥିଲେ । ସେଥିପାଇଁ ସେ ହୁଇଗ୍ ଓ ଟୋରି ଉଭୟ ଦଳ ମଧ୍ୟରୁ ପ୍ରିୟ ମନ୍ତ୍ରୀମାନଙ୍କୁ ନିଯୁକ୍ତ କରିଥିଲେ ।

ଚରିତ୍ର

ଉଇଲିୟମ ସିଂହାସନ ଆରୋହଣ କରି ଇଂଲଣ୍ଡର ଭୂତପୂର୍ବ ମନ୍ତ୍ରୀ, ତାହାଙ୍କର ପୂର୍ବ ବନ୍ଧୁ ଲର୍ଡ଼ ଡ୍ୟାନ୍‌ବିକୁ ପ୍ରଧାନ ମନ୍ତ୍ରୀ ଓ ପ୍ରିଭିକାଉନସିଲର ସଭାପତି ପଦରେ ପ୍ରତିଷ୍ଠିତ କଲେ ଏବଂ ଜେମସଙ୍କ ବିଚାରପତିମାନଙ୍କ ପରିବର୍ତ୍ତେ ନୂତନ ବିଚାରପତି ନିଯୁକ୍ତ ହେଲେ । ବାର୍ଷିକ ୧୨ ଲକ୍ଷ ପାଉଣ୍ଡ ରାଜାଙ୍କ ନିମିତ୍ତ ମଞ୍ଜୁର ହେଲା; ମାତ୍ର ଏଥିମଧ୍ୟରୁ କେବଳ ୭ ଲକ୍ଷ ପାଉଣ୍ଡ ରାଜାଙ୍କ ବ୍ୟୟ ନିମିତ୍ତ 'ସିଭିଲଲିଷ୍ଟ' ନାମରେ ନିର୍ଦ୍ଦିଷ୍ଟ ହେଲା । ଅବଶିଷ୍ଟ ୫ ଲକ୍ଷ ପାଉଣ୍ଡ ମନ୍ତ୍ରୀମାନଙ୍କ ଦ୍ୱାରା ପ୍ରସ୍ତୁତ ବାର୍ଷିକ ବ୍ୟୟତାଲିକା ( Budget ) ମତେ ପ୍ରଦତ୍ତ ହେଲା । ତଦବଧି ମନ୍ତ୍ରୀମାନଙ୍କ ଦ୍ୱାରା ପ୍ରସ୍ତୁତ ବାର୍ଷିକ ବ୍ୟୟତାଲିକା ମତେ ଶାସନସଂକ୍ରାନ୍ତ ସମସ୍ତ ବ୍ୟୟ ପାର୍ଲିମେଣ୍ଟ ଦ୍ୱାରା ପ୍ରଦତ୍ତ ହୁଏ ।

ଉଇଲିୟମଙ୍କ ପାର୍ଲିମେଣ୍ଟ ବାର୍ଷିକବ୍ୟୟ ମଞ୍ଜୁର

ଇଂଲଣ୍ଡର କାଥଲିକମାନଙ୍କ ବ୍ୟତୀତ ସକଳ ଧର୍ମ ସମ୍ପ୍ରଦାୟର ଲୋକମାନେ ଯେମସଙ୍କ ବିରୁଦ୍ଧରେ ୱିଲିୟମଙ୍କ ପକ୍ଷ ଅବଲମ୍ବନ କରି ତାହାଙ୍କୁ ସିଂହାସନ ପ୍ରଦାନ କରିଥିଲେ; ସେଥି-ପାଇଁ "ଟଲରେସନ୍ ଆକ୍ଟ" ନାମକ ଏକ ନିୟମ ହୋଇଥିଲା । ତଦ୍ଦ୍ୱାରା କାଥଲିକ ବ୍ୟତୀତ ସକଳ ଧର୍ମସମ୍ପ୍ରଦାୟର ଲୋକେ ସ୍ୱ ସ୍ୱ ମତାନୁଯାୟୀ ଉପାସନା କରିବାର ଅଧିକାର ପ୍ରାପ୍ତ ହେଲେ ।

ସାମାନ୍ୟ ନୀତି ପ୍ରଚାର (Toleration Act)

ୱିଲିୟମଙ୍କ ସିଂହାସନ ଆରୋହଣ ସମୟରେ "ଜାତୀୟ ଅଧିକାର" ଘୋଷଣା ସମୟରେ ସ୍ଥିର ହୋଇଥିଲା ଯେ, ଶାନ୍ତି ସମୟରେ ସୈନ୍ୟ ପୋଷଣ କରିବା ଅନ୍ୟାୟ; ମାତ୍ର ସେ ସମୟରେ ଇଉରୋପର ସମସ୍ତ ରାଜାମାନେ ଏକ ଏକ ଦଳ ସୈନ୍ୟରକ୍ଷା କରି ଥିଲେ । ଇଂଲଣ୍ଡର ଲୋକେ ମଧ୍ୟ ତାହାର ପ୍ରୟୋଜନୀୟତା ବୁଝିଥିଲେ । ସେହି ସମୟରେ ସ୍କଟଲଣ୍ଡରେ ସୈନ୍ୟମାନଙ୍କ ମଧ୍ୟରେ ବିଦ୍ରୋହ ହେବାରୁ ସେହି ଉପଲକ୍ଷରେ ପାର୍ଲିମେଣ୍ଟ "ବିଦ୍ରୋହ ଆଇନ" (Mutiny Bill) ନାମକ ଏକ ଆଇନ୍ ପ୍ରସ୍ତୁତ କରିଥିଲେ ।

ସାମରିକ ଆଇନ ବିଧି ୧୬୮୯

ଏତଦ୍ଦ୍ୱାରା ସମର ବିଭାଗର କର୍ମଚାରୀମାନେ ବିଦ୍ରୋହୀ ସୈନ୍ୟମାନଙ୍କୁ ସାମରିକ ଆଇନମତେ ସ୍ୱତନ୍ତ୍ର ବିଚାର କରିବା ଅଧିକାର ପ୍ରତିବର୍ଷ ପ୍ରାପ୍ତ ହେଲେ ଓ ରାଜାଙ୍କୁ ମଧ୍ୟ ସୈନ୍ୟବିଭାଗ ଉପରେ ଉକ୍ତ ସମୟ ପାଇଁ କର୍ତ୍ତୃତ୍ୱ ପ୍ରଦତ୍ତ ହେଲା । ପାର୍ଲିମେଣ୍ଟ ସୈନ୍ୟବିଭାଗର ବ୍ୟୟ ନିମିତ୍ତ ପ୍ରତିବର୍ଷ ଅର୍ଥ ମଞ୍ଜୁର କରିବାକୁ ଲାଗିଲା । ଅର୍ଥାତ୍ ସୈନ୍ୟରକ୍ଷା ନିମିତ୍ତ ରାଜାଙ୍କୁ ସମ୍ପୂର୍ଣ୍ଣରୂପେ ପାର୍ଲିମେଣ୍ଟର ମୁଖାପେକ୍ଷୀ ହେବାକୁ ହେଲା ଓ ପ୍ରତିବର୍ଷ ପାର୍ଲିମେଣ୍ଟ ଡାକିବାକୁ ହେଲା ।

ଉଇଲୟମଙ୍କ ବିରୋଧୀ ଲୋକମାନଙ୍କୁ ଧର୍ମାଳୟ ଓ ରାଜକାର୍ଯ୍ୟରୁ ବହିଷ୍କୃତ କରିବା ପାଇଁ ପାର୍ଲିମେଣ୍ଟ ନିୟମ କରିଥିଲେ ଯେ, ସମସ୍ତ ରାଜକର୍ମଚାରୀ ଓ ଧର୍ମଯାଜକମାନଙ୍କୁ ଶପଥ ଗ୍ରହଣପୂର୍ବକ ସ୍ୱୀକାର କରିବାକୁ ହେବ ଯେ, ସେମାନେ ରାଜାନୁଗତ । ଯେଉଁମାନେ ଉକ୍ତ ଶପଥ ଗ୍ରହଣ ନ କରିବେ, ସେମାନେ ସ୍ୱ ସ୍ୱ କାର୍ଯ୍ୟରୁ ବହିଷ୍କୃତ ହେବେ । ଯେଉଁମାନେ ଉକ୍ତ ଶପଥ ଗ୍ରହଣ କରିବାକୁ ଅସମ୍ମତ, ସେମାନେ "ନନ-ଜୁରର" (Non Juror) ନାମରେ ଅଭିହିତ ହୋଇ ସ୍ୱ ସ୍ୱ କାର୍ଯ୍ୟରୁ ବଞ୍ଚିତ ହେଲେ; ସେମାନେ ଓ କାଥଲିକମାନେ ଜେମସଙ୍କ ସପକ୍ଷରେ ଥିବାରୁ "ଜାକବାଇଟ" (Jacobite) ଆଖ୍ୟା ମଧ୍ୟ ପ୍ରାପ୍ତ ହୋଇଥିଲେ ।

ରାଜଭକ୍ତିର ଶପଥ ଗ୍ରହଣ (Oath of allegiance)

ସ୍କଟ୍‌ଲଣ୍ଡର ଘଟଣା

ସ୍କଟ୍‌ଲଣ୍ଡ ଅଧିକାଂଶ ଲୋକ ପ୍ରେସବାଇଟେରିଅନ ମତାବଲମ୍ବୀ ଥିଲେ; ମାତ୍ର ଦ୍ୱିତୀୟ ଚାର୍ଲସ ଲୋକମତ ବିରୁଦ୍ଧରେ ସେଠାରେ "ଏପିସ୍କୋପେସି" ପ୍ରତିଷ୍ଠିତ କରିଥିଲେ । ଏହି ମତାବଲମ୍ବୀ ଲୋକ ବ୍ୟତୀତ ଅନ୍ୟ କୌଣସି ଲୋକର ପାର୍ଲିମେଣ୍ଟର ସଭ୍ୟ ହେବା ଅଧିକାର ବା ସଭ୍ୟ ନିର୍ବାଚନ କରିବାର କ୍ଷମତା ନ ଥିଲା । ପ୍ରେସବାଇଟେରିଅନମାନଙ୍କ ପ୍ରତି ନାନାପ୍ରକାର ଅତ୍ୟାଚାର ହେଉଥିଲା । ସୁତରାଂ ଉଇଲୟମ ସିଂହାସନ ଆରୋହଣ କରନ୍ତେ ସ୍କଟଲଣ୍ଡର ପ୍ରେସବାଇଟେରିଅନମାନେ ପୂର୍ବବତ୍ ଜାତୀୟ ସଙ୍ଘ (National Covenant) ଗଠନ କରି ଉଇଲୟମ ଓ ମେରୀଙ୍କୁ ରାଜା ଓ ରାଣୀ ବୋଲି ସାନନ୍ଦରେ ଘୋଷଣା କରିଥିଲେ । ମାତ୍ର ସ୍କଟ୍‌ଲଣ୍ଡର ଉତ୍ତରାଞ୍ଚଳର ପାର୍ବତ୍ୟମୟ ପ୍ରଦେଶର ଲୋକମାନେ ଅଧିକାଂଶ କାଥଲିକ ଥିବାରୁ ଭାଇକାଉଣ୍ଟ ଡଣ୍ଡି ନାମକ ନେତାଙ୍କ ଅଧୀନରେ ଇଂରାଜମାନଙ୍କ ସହିତ ଯୁଦ୍ଧାର୍ଥ ପ୍ରବୃତ୍ତ ହେଲେ । "କିଲିକ୍ରାଙ୍କି" ନାମକ ସ୍ଥାନରେ ଇଂରାଜ ଓ ସ୍କଟଲଣ୍ଡର ପାର୍ବତୀୟମାନଙ୍କ (Highlanders) ସହିତ ଗୋଟିଏ ଯୁଦ୍ଧ ହେଲା । ସେଥିରେ ଇଂରାଜମାନେ ପରାଜିତ ହେଲେ ସତ୍ୟ; ମାତ୍ର ସ୍କଟ୍‌ଲଣ୍ଡର

-ନେଭାଉଣ୍ଡି ନିହତ ହେବାରୁ ତାହାଙ୍କ ଲୋକମାନେ ପଳାୟନ କଲେ ଏବଂ ଉଇଲିୟମ ଓ ମେରୀ ରାଜା ଓ ରାଣୀରୂପେ ଘୋଷିତ ହେଲେ ।

ତଦନନ୍ତର ସ୍କଟଲଣ୍ଡରେ ଶାନ୍ତି ସ୍ଥାପନାର୍ଥ ଉଇଲିୟମ ଆଦେଶ ଦେଇଥିଲେ ଯେ, ସେ ସ୍ଥାନର ସାମନ୍ତମାନେ ୧୬୯୨ ଖ୍ରୀଷ୍ଟାବ୍ଦର ଜାନୁଆରୀମାସ ୧ ତାରିଖ ପୂର୍ବେ "ରାଜଭକ୍ତି ଶପଥ" (Oath of allegiance) ଗ୍ରହଣପୂର୍ବକ ତାହାଙ୍କ ଅନୁଗତ ରହିବାକୁ ଶପଥ କରିବେ । ସମସ୍ତ ପାର୍ବତ୍ୟ ସାମନ୍ତମାନେ ସେହି ଦିବସ ଉପସ୍ଥିତ ହୋଇ ଉକ୍ତ ଶପଥ ଗ୍ରହଣ କରିଥିଲେ; ମାତ୍ର ଗ୍ଲେଙ୍କୋ ପ୍ରଦେଶର ଆୟାନ ମାକଡୋନାଲ୍ ନାନା କାରଣବଶତଃ ଉକ୍ତ ଦିବସ ଉପସ୍ଥିତ ହୋଇ ପାରି ନ ଥିଲେ । ଏହି ସୁଯୋଗରେ ଜନ୍ ଡାଲ୍‌ରିମ୍ପଲ୍ ନାମକ ତାହାଙ୍କର ପ୍ରଧାନ ଶତ୍ରୁ ମାକଡୋନାଲ ବଂଶ ଉଚ୍ଛେଦ ସାଧନାର୍ଥ ରାଜାଜ୍ଞା ଆନୟନପୂର୍ବକ ତାହାଙ୍କ ଅନୁଚରବର୍ଗଙ୍କ ସହ କେତେକ ଦିବସ ଆୟାନ ମାକ୍‌ଡୋନାଲ୍‌ଡଙ୍କ ଅତିଥିରୂପେ ଅବସ୍ଥାନ କରି ଏକଦିନ ଅତି ପ୍ରତ୍ୟୁଷରେ ସେମାନଙ୍କୁ ବିଶ୍ୱାସଘାତକତାପୂର୍ବକ ହତ୍ୟା କରିଥିଲେ । ଏହି ନୃଶଂସ ହତ୍ୟା ହେତୁରୁ ସ୍କଟଲଣ୍ଡର ପାର୍ବତ୍ୟ ଲୋକମାନେ ଉଇଲିୟମ ଓ ମେରିଙ୍କ ପ୍ରତି ଅତ୍ୟନ୍ତ ବିରୂପ ହୋଇ ପଡ଼ିଥିଲେ ।

ଗ୍ଲେଙ୍କୋ ହତ୍ୟା ୧୬୯୨ (Massacre of Glencoe)

ଆୟାର୍‌ଲଣ୍ଡର ଅଧିକାଂଶ ଲୋକ କାଥଲିକ୍ ଥିଲେ । ଅଷ୍ଟମ ହେନେରିଙ୍କ ସମୟରୁ ସେମାନଙ୍କ ଉପରେ ନାନା ସମୟରେ ନାନାପ୍ରକାର ଅତ୍ୟାଚାର ହେବାରୁ ଓ ସେମାନଙ୍କ ଜମି ଇଂରାଜ ଓ ସ୍କଟମାନଙ୍କୁ ପ୍ରଦତ୍ତ ହୋଇଥିବାରୁ ସେମାନେ ଇଂରାଜଶାସନ ପ୍ରତି ବିରୂପ ହୋଇ ଉଠିଥିଲେ । ସୁତରାଂ ଏହି ସୁଯୋଗରେ ସେମାନେ ଆୟାରଲଣ୍ଡର ଶାସନକର୍ତ୍ତା ଟିରକୋନେଲଙ୍କ ଅଧୀନରେ ମିଳିତ ହୋଇ ସ୍ୱୀୟ ସ୍ୱାଧୀନତା ନିମିତ୍ତ ତତ୍ରସ୍ଥ ଇଂରାଜ ଓ ସ୍କଟମାନଙ୍କୁ

ଆୟାର୍ଲାଣ୍ଡର ବିଦ୍ରୋହ ୧୬୮୯ (ଲଣ୍ଡନଡେରି ଅବରୋଧ)

ଆକ୍ରମଣ କରୁଥିଲେ, ଫ୍ରାନ୍‌ସ ରାଜାଙ୍କ ସାହାଯ୍ୟ ଲାଭର ମଧ୍ୟ ଆଶା ଥିଲା । ଆୟାରଲ୍ୟାଣ୍ଡର ଇଂରାଜ ଓ ସ୍କଟ ପ୍ରୋଟେଷ୍ଟାଣ୍ଟମାନେ "ଏନସ୍‌କିଲେନ" ଓ "ଲଣ୍ଡନଡେରୀ" ନାମକ ସ୍ଥାନଦ୍ୱୟରେ ଆଶ୍ରୟ ଗ୍ରହଣ କଲେ । ଇତ୍ୟବସରରେ ଜେମସ୍ ଫ୍ରାନ୍‌ସରୁ ଆଗମନ ପୂର୍ବକ ବିଦ୍ରୋହୀମାନଙ୍କ ନେତୃତ୍ୱ ଗ୍ରହଣ କରି ଲଣ୍ଡନଡେରୀ ଅବରୋଧ କଲେ । ପ୍ରାୟ ଦୁଇମାସ ପର୍ଯ୍ୟନ୍ତ ଉକ୍ତ ନଗର ଅବରୁଦ୍ଧ ହେଲା ଏବଂ ଇଂରାଜମାନେ ଜଳପଥରେ ଯେପରି କୌଣସି ଖାଦ୍ୟ ଓ ସାହାଯ୍ୟ ପ୍ରଦାନ କରି ନ ପାରନ୍ତି, ସେଥିପାଇଁ ସେମାନେ ନଦୀମଧ୍ୟରେ ଗୋଟିଏ କାଷ୍ଠର ଭେଳା ପ୍ରସ୍ତୁତ କରି ନୌକାଦିର ଯାତାୟାତ ବନ୍ଦ କରିଥିଲେ । ଅବରୁଦ୍ଧ ସ୍ଥାନର ଲୋକମାନଙ୍କର ଭୟଙ୍କର ଖାଦ୍ୟକଷ୍ଟ ଉପସ୍ଥିତ ହୋଇଥିଲା । ଏପରି କି ଅଶ୍ୱମାଂସ ମଧ୍ୟ ଦୁଷ୍ପ୍ରାପ୍ୟ ହୋଇ ପଡ଼ିଥିଲା । ତାହାହେଲେ, ଉଇଲିୟମଙ୍କ ଆଦେଶରେ ବ୍ରାଉନିଂ ଓ ଡଗଲସ୍ ନାମକ ଜଣେ ଇଂରାଜ ଓ ଜଣେ ସ୍କଟ ସେମାନଙ୍କ ଖାଦ୍ୟପୂର୍ଣ୍ଣ ତରୀଦ୍ୱୟ ଲଣ୍ଡନଡେରୀ ଲୋକମାନଙ୍କ ସାହାଯ୍ୟାର୍ଥ ନେଇଯିବାକୁ ଅଗ୍ରସର ହୋଇଥିଲେ । ସେମାନଙ୍କ ତରୀଦ୍ୱୟର ଆଘାତ ବେଗରେ ନଦୀର କାଷ୍ଠଭେଳା ଭଗ୍ନ ହୋଇଥିଲା ଓ ଖାଦ୍ୟପୂର୍ଣ୍ଣ ତରୀଦ୍ୱୟ ଲଣ୍ଡନଡେରୀରେ ଉପସ୍ଥିତ ହୋଇ ଲୋକମାନଙ୍କ ଖାଦ୍ୟକଷ୍ଟ ଦୂର କରିଥିଲା । ଏହି ପ୍ରକାରେ ଭଗ୍ନମନୋରଥ ହୋଇ ଆୟର୍ଲାଣ୍ଡର ଲୋକମାନେ ଲଣ୍ଡନଡେରୀ ତ୍ୟାଗ କରିଥିଲେ । ଯେଉଁ ଦିବସ ଆଇରିସ୍‌ମାନେ ଲଣ୍ଡନଡେରୀ ତ୍ୟାଗ କଲେ ସେହି ଦିବସ କର୍ଣ୍ଣେଲ ଓଲ୍‌ସେ ନାମକ ଇଂରାଜ ସେନାନାୟକ "ଏନସ୍‌କିଲେନ୍" ନାମକ ସ୍ଥାନରେ ଅପର ଏକଦଳ ବିଦ୍ରୋହୀ ସୈନ୍ୟଙ୍କୁ ପରାସ୍ତ କରିଥିଲେ ।

ଜେମସ୍ ଲଣ୍ଡନଡେରୀ ହସ୍ତଗତ କରିବାକୁ ଅସମର୍ଥ ହୋଇଥିଲେ ସତ୍ୟ; ମାତ୍ର ସେ ଡବଲିନଠାରେ ରାଜାରୂପେ ଶାସନ କରିବାକୁ ଲାଗିଲେ ।

ବାଇନ ଯୁଦ୍ଧ

ଅର୍ଥର ଅଭାବ ହୁଅନ୍ତେ ସେ ପିତ୍ତଳର ସିଲିଂ ଓ ପେନ୍‌ସ ପ୍ରସ୍ତୁତ କରି ଚଳାଇବାକୁ ଲାଗିଲେ ଏବଂ ଲୋକମାନଙ୍କୁ ବୁଝାଇଥିଲେ ଯେ, ସେ ଇଂଲଣ୍ଡର ସିଂହାସନ ପ୍ରାପ୍ତ ହେଲେ

ତାମ୍ର ମୁଦ୍ରା ବଜାରରେ ପ୍ରକୃତ ରୌପ୍ୟମୁଦ୍ରା ପ୍ରଦାନ କରିବେ । ଯେଉଁ ଲୋକମାନେ ଉଇଲିୟମଙ୍କ ସପକ୍ଷରେ ଥିଲେ, ସେମାନଙ୍କ ବିରୁଦ୍ଧରେ କଠୋର ନିୟମମାନ ପ୍ରବର୍ତ୍ତିତ ହେଲା । ତଦନନ୍ତର ଜେମସଙ୍କ ସାହାଯ୍ୟାର୍ଥ ଫ୍ରାନ୍‌ସର ରାଜା ଏକଦଳ ସୈନ୍ୟ ପ୍ରେରଣ କଲେ । ତହୁଁ ଉଇଲିୟମ ସ୍ୱୟଂ ଏକଦଳ ଇଂରେଜ ସୈନ୍ୟ ଘେନି ଆୟରଲଣ୍ଡରେ ବେଲ୍‌-ଫାଷ୍ଟ୍‌ଠାରେ ଉପସ୍ଥିତ ହୋଇ ଡବ୍‌ଲିନ ଅଭିମୁଖରେ ଅଗ୍ରସର ହେଲେ । ତାହାଙ୍କୁ ବାଧା ଦେବା ପାଇଁ ଜେମସ ବେଲଫାଷ୍ଟ ଓ ଡବଲିନ୍ ମଧ୍ୟରେ "ବଇନ" ନାମକ ସ୍ଥାନରେ ସୈନ୍ୟ ସଜ୍ଜିତ କରିଥିଲେ । ଉଇଲିୟମ କୌଶଳଯୋଗେ ଜେମସ୍‌ଙ୍କ ସୈନ୍ୟଙ୍କ ପଶ୍ଚାଦ୍‌ଭାଗରୁ ଆକ୍ରମଣ କରିବାକୁ ଏକ ଦଳ ସୈନ୍ୟ ପ୍ରେରଣ କରି ସ୍ୱୟଂ ତାହାଙ୍କୁ ସମ୍ମୁଖରୁ ଆକ୍ରମଣ କଲେ । ଏହି ଯୁଦ୍ଧରେ ଉଇଲିୟମଙ୍କ ଜର୍ମାନ୍ ସେନାନାୟକ ସ୍କମ୍‌ବାର୍ଗ ନିହତ ଓ ଉଇଲିୟମ ସ୍ୱୟଂ ଆହତ ହୋଇଥିଲେ; ମାତ୍ର ଜେମସଙ୍କ ସୈନ୍ୟଦଳ ପରାସ୍ତ ହୋଇଥିଲେ ଓ ଜେମସ୍ ସ୍ୱୟଂ ଡବଲିନକୁ ପଳାୟନ କରି ସେଠାରୁ ଫ୍ରାନ୍‌ସ ଯାତ୍ରା କରିଥିଲେ । ତଦନନ୍ତର "ଲିମାରିକ୍" ନାମକ ସ୍ଥାନରେ ଆଇରିସ୍‌ମାନଙ୍କ ସହିତ ଏକ ସନ୍ଧି ହୋଇ ସେମାନଙ୍କୁ ସ୍ୱୀୟ ମତାନୁଯାୟୀ ଉପାସନା କରିବାର ଅଧିକାର ପ୍ରଦତ୍ତ ହୋଇଥିଲା ଓ ଯେଉଁ ଆଇରିସ୍‌ମାନେ ଆୟରଲଣ୍ଡ ପରିତ୍ୟାଗ କରି ଫ୍ରାନ୍‌ସକୁ ଯିବାକୁ ଇଚ୍ଛୁକ ହୋଇଥିଲେ, ସେମାନଙ୍କୁ ସେ ଅଧିକାର ପ୍ରଦତ୍ତ ହୋଇଥିଲା (୧୬୯୧) ।

ଉଇଲିୟମଙ୍କ ସହିତ ଫରାସୀ ରାଜାଙ୍କର ଶତ୍ରୁତା ଥିଲା । ସେଥି-ପାଇଁ ଉଇଲିୟମ ଆୟରଲଣ୍ଡରେ ଯୁଦ୍ଧରେ ବ୍ୟାପୃତ ଥିବା ସମୟରେ ଫରାସୀ ରାଜା ଲୁଇ ଇଂଲଣ୍ଡ ଆକ୍ରମଣ କରିବାକୁ ଅଗ୍ରସର ହେଲେ । "ବିଚିହେଡ଼" ନାମକ ସ୍ଥାନରେ ଲର୍ଡ଼ ଟରିଂଟନଙ୍କ ଅଧୀନରେ ଇଂରାଜ ଓ ଡଚମାନେ ପରାଜିତ ହେଲେ ।

**ଫ୍ରାନ୍‌ସ ସହିତ ଯୁଦ୍ଧ (୧୬୮୯—୧୬୯୭)**

ଏହି ଯୁଦ୍ଧବାର୍ତ୍ତା ଶ୍ରବଣ କରି ୱିଲିୟମ ଅୟର୍ଲଣ୍ଡରୁ ପ୍ରତ୍ୟାଗତ ହୋଇ ଫରାସୀ ରାଜାଙ୍କ ବିରୁଦ୍ଧରେ ସମରସଜ୍ଜା କରିବାକୁ ପ୍ରବୃତ୍ତ ହେଲେ । ଇଂରେଜମାନେ ଓ୍ୱିଲିୟମଙ୍କୁ ବିଶେଷ ଶ୍ରଦ୍ଧା କରୁ ନ ଥିଲେ; ମାତ୍ର ଦେଶର ଏପରି ବିପଦ ସମୟରେ ଲୋକମାନେ ସ୍ୱତ୍ୱ ବିରୋଧ ଭୁଲିଯାଇ ଦେଶ-ହିତାର୍ଥ ପ୍ରାଣ ଦେବାକୁ ଅଗ୍ରସର ହେଲେ । "ଲାହୋଗ" ନାମକ ସ୍ଥାନରେ ନୌଯୁଦ୍ଧରେ ଫରାସୀମାନେ ସମ୍ପୂର୍ଣ୍ଣରୂପେ ପରାଜିତ ହୋଇଥିଲେ (୧୬୯୨) ।

ସ୍ଥଳଯୁଦ୍ଧରେ ୱିଲିୟମ "ଷ୍ଟିନକାର୍କ" ଓ "ଲେନଡେନା" ନାମକ ଦୁଇ ସ୍ଥାନରେ ପରାଜିତ ହୋଇଥିଲେ ଓ ବ୍ରେଷ୍ଟ ନାମକ ସ୍ଥାନର ନୌଯୁଦ୍ଧରେ ମାର୍ଲବରୋଙ୍କ ବିଶ୍ୱାସଘାତକତାପ୍ରଯୁକ୍ତ ଇଂରେଜ ନୌବହରର ଅଧ୍ୟକ୍ଷ "ଟାଲମାସ୍" ନିହତ ହୋଇଥିଲେ ।

କିନ୍ତୁ ଓ୍ୱିଲିୟମ ନେମୁର ନାମକ ସ୍ଥାନ ଅଧିକାର କରି ଇଂରେଜ ଜାତିର ଭୂତମାନ ପୁନରୁଦ୍ଧାର କଲେ । ତଦନନ୍ତର "ରିସ୍ଵିକ" (Ryswick) ନାମକ ସ୍ଥାନରେ ଫରାସୀ ଓ ଇଂରାଜମାନଙ୍କ ମଧ୍ୟରେ ଗୋଟିଏ ସନ୍ଧି ସ୍ଥାପିତ ହୋଇଥିଲା । ଏହି ସନ୍ଧି ଅନୁସାରେ ଫରାସୀରାଜା ୱିଲିୟମଙ୍କୁ ଇଂଲଣ୍ଡର ରାଜା ବୋଲି ସ୍ୱୀକାର କଲେ ଓ ଯେଉଁ ସମସ୍ତ ସ୍ଥାନ ଇଂରେଜ ଓ ଡଚମାନଙ୍କଠାରୁ ଅଧିକାର କରିଥିଲେ ତାହା ପ୍ରତ୍ୟର୍ପଣ କଲେ (୧୬୯୭) ।

ହୁଇଗ ଓ ଟୋରି ଉଭୟ ଦଳ ସାହାଯ୍ୟରେ ଓ୍ୱିଲିୟମ ସିଂହାସନ ପ୍ରାପ୍ତ ହୋଇଥିବାରୁ ଦେଶ ଶାସନ ନିମିତ୍ତ ଉଭୟ ଦଳ ମଧ୍ୟରୁ ସେ ଲୋକ ଗ୍ରହଣ କରିଥିଲେ; ମାତ୍ର ହୁଇଗ ଓ ଟୋରି-ମାନଙ୍କ ମଧ୍ୟରେ ମତଭେଦ ହେବାରୁ ଓ୍ୱିଲିୟମ ଲର୍ଡ ସଣ୍ଡାରଲଣ୍ଡ ନାମକ ଯେମସଙ୍କର ଏକ ମନ୍ତ୍ରୀଙ୍କ ପରାମର୍ଶମତେ ଶାସନ ବିଭାଗରୁ ସମସ୍ତ ଟୋରିମାନଙ୍କୁ କ୍ରମେ କ୍ରମେ ବହିଷ୍କୃତ କରି ହୁଇଗମାନଙ୍କ

ୱିଲିୟମଙ୍କ ଶାସନ

ଉପରେ ଦେଶର ଶାସନ ଭାର ଅର୍ପଣ କଲେ । ଏହି ହୁଇଗମାନଙ୍କ ମନ୍ତ୍ରିତ୍ବ 'ହୁଇଗଜୁଣ୍ଟୋ' । (Whig Junto) ନାମରେ ବିଦିତ । ତଦବଧି ଇଂଲଣ୍ଡର ମନ୍ତ୍ରୀମାନେ ଏକ ଦଳରୁ ଗୃହୀତ ହେଉଅଛନ୍ତି ଓ 'କେବିନେଟ ଗଭର୍ଣ୍ଣମେଣ୍ଟ'(Cabinet Government) ର ସୂତ୍ରପାତ ହୋଇଅଛି ।

ଗ୍ରୀନିଚ ଚିକିତ୍ସାଳୟ

ଫ୍ରାନ୍ସର "ଲହେଗ" ନାମକ ଯୁଦ୍ଧ ଉତ୍ତାରେ ଯେଉଁ ସୈନ୍ୟମାନେ ଆହତ ହୋଇ ଇଂଲଣ୍ଡ ପ୍ରତ୍ୟାଗମନ କରିଥିଲେ ସେମାନଙ୍କ ଶୁଶ୍ରୂଷା ଓ ଆବାସ ନିମିତ୍ତ ମେରୀଙ୍କ ଆଦେଶରେ ଗ୍ରୀନିଚ ପ୍ରାସାଦ ଗୋଟିଏ ଚିକିତ୍ସାଳୟରେ ପରିଣତ ହୋଇଥିଲା । ପ୍ରାୟ ୧୭୩ ବର୍ଷ ଉତ୍ତାରେ ଏହା ଗୋଟିଏ ନୌବିଭାଗର କଲେଜରେ ପରିଣତ ହୋଇଥିଲା ।

ଜାତୀୟ ଋଣ (National Debt) ୧୬୯୨

ଯୁଦ୍ଧହେତୁ ଅର୍ଥାଭାବବଶତଃ ଉଇଲୟମଙ୍କ ଶାସନକାଳରେ ନାନାପ୍ରକାର ଅର୍ଥନୈତିକ ପରିବର୍ତ୍ତନ ସାଧିତ ହୋଇଥିଲା । ସେଥମଧ୍ୟରୁ ଜାତୀୟ ଋଣ ପ୍ରଧାନ । ପୂର୍ବେ ଅର୍ଥର ଆବଶ୍ୟକ ହେଲେ ରାଜାମାନେ ଲୋକମାନଙ୍କ ଉପରେ କର ଧାର୍ଯ୍ୟ କରୁଥିଲେ କିମ୍ବା ସେମାନଙ୍କଠାରୁ ଋଣ ଗ୍ରହଣ କରୁଥିଲେ । ମାତ୍ର ଏହି ସମୟରେ ଲୋକମାନେ ନାନାପ୍ରକାର କର ଭାରରେ ପ୍ରପୀଡ଼ିତ ଥିବାରୁ ଯୁଦ୍ଧବ୍ୟୟ ନିମିତ୍ତ ଏକ ନୂତନ କର ଲୋକମାନଙ୍କ ଉପରେ ଧାର୍ଯ୍ୟ କରିବା ଅସମ୍ଭବ ହୋଇ ପଡ଼ିଲା । କାରଣ ମନ୍ତ୍ରୀମାନେ ବୁଝିଥିଲେ ଯେ, ନୂତନ କର ଧାର୍ଯ୍ୟ ହେଲେ ଲୋକମାନେ ରାଜାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇ ଉଠିବେ ଏବଂ ସେହି ସୁଯୋଗରେ ଜେମସ ତାହାଙ୍କୁ ସିଂହାସନଚ୍ୟୁତ କରିବାକୁ ଚେଷ୍ଟା କରିବେ । ଅଧିକନ୍ତୁ ସେ ସମୟରେ ଉଇଲୟମଙ୍କ ସିଂହାସନ ଦୃଢ଼ ହୋଇ ନ ଥିଲା । ସେ ବୁଝିଥିଲେ ଲୋକମାନେ ତାହାଙ୍କୁ ବିଶ୍ବାସ କରି ଋଣ ପ୍ରଦାନ କରିବେ ନାହିଁ । ସେଥିପାଇଁ ମେଣ୍ଟେଗୁ ନାମକ ଜୈନେକ ସଭ୍ୟଙ୍କ ପରାମର୍ଶମତେ ଯୁଦ୍ଧ-

ବ୍ୟୟ ନିମିତ୍ତ ସେ ସ୍ୱୀୟ ନାମରେ ଋଣ ଗ୍ରହଣ ନ କରି ଗଭର୍ଣ୍ଣମେଣ୍ଟ ନାମରେ ଋଣ ଗ୍ରହଣ କଲେ । ଲୋକମାନେ ରାଜାଙ୍କୁ ଋଣ ପ୍ରଦାନ ନ କରି ଗଭର୍ଣ୍ଣମେଣ୍ଟଙ୍କୁ ପ୍ରଦାନ କଲେ । ସେମାନେ ବୁଝିଥିଲେ ଯେପର୍ଯ୍ୟନ୍ତ ଜାତୀୟ ଗଭର୍ଣ୍ଣମେଣ୍ଟର ଅସ୍ତିତ୍ୱ ଥିବ, ସେପର୍ଯ୍ୟନ୍ତ ସେମାନଙ୍କ ଅର୍ଥ ନିରାପଦ ରହିବ । ଏତଦ୍ୱାରା ରାଜା ପ୍ରାୟ ଦଶଲକ୍ଷ ପାଉଣ୍ଡ ପ୍ରାପ୍ତ ହୋଇ ତାହା ଯୁଦ୍ଧରେ ବ୍ୟୟ କରିଥିଲେ ଏବଂ ଏହିପ୍ରକାରରେ ଜାତୀୟ ଋଣର ସୃଷ୍ଟି ହୋଇଥିଲା ।

ଜାତୀୟ ଋଣ ଦ୍ୱାରା ଗୃହୀତ ଅର୍ଥ ଯୁଦ୍ଧବ୍ୟୟାର୍ଥ ଅପ୍ରଚୁର ହେବାରୁ ପେଟାରସନ ନାମକ ବ୍ୟକ୍ତିଙ୍କ ପରାମର୍ଶମତେ ଇଂଲଣ୍ଡର ବ୍ୟାଙ୍କ ପ୍ରତିଷ୍ଠିତ ହେଲା । କେତେକ ଲୋକଙ୍କ ଦ୍ୱାରା ଗଠିତ ଗୋଟାଏ କମ୍ପାନୀ ରାଜାଙ୍କଠାରୁ ସନନ୍ଦ ପ୍ରାପ୍ତ ହୋଇ ଲୋକମାନଙ୍କଠାରୁ ଅର୍ଥ ଗ୍ରହଣପୂର୍ବକ ଉକ୍ତ ଅର୍ଥ ବାଣିଜ୍ୟାଦିରେ ବ୍ୟୟ କରି ଲାଭବାନ୍ ହେବାକୁ ଲାଗିଲେ ଏବଂ ଅର୍ଥଦାତାମାନଙ୍କୁ ତାହାର ଅଂଶ ପ୍ରଦାନ କରିବାକୁ ଲାଗିଲେ । ଆବଶ୍ୟକ ସମୟରେ ସେମାନେ ରାଜାଙ୍କୁ ମଧ୍ୟ ଅର୍ଥ ସାହାଯ୍ୟ କଲେ । ବର୍ତ୍ତମାନ କାଳରେ ଗଭର୍ଣ୍ଣମେଣ୍ଟର ସମସ୍ତ ଅର୍ଥ ଏହି ବ୍ୟାଙ୍କରେ ରକ୍ଷିତ ।

ଇଂଲଣ୍ଡର ବ୍ୟାଙ୍କ (Bank of England) ୧୬୯୪

ଏଥିପୂର୍ବେ ପ୍ରଥମ ଚାର୍ଲସଙ୍କ ସମୟରେ ଦୀର୍ଘ ପାର୍ଲମେଣ୍ଟ ଦ୍ୱାରା ଏକ ତ୍ରୈବାର୍ଷିକ ନିୟମ ପ୍ରବର୍ତ୍ତିତ ହୋଇଥିଲା । ମାତ୍ର ତାହା ଭିନ୍ନ ଅର୍ଥରେ ପ୍ରଯୁକ୍ତ ହୋଇଥିଲା । ତଦ୍ଦ୍ୱାରା ରାଜା ତିନିବର୍ଷ ମଧ୍ୟରେ ପାର୍ଲମେଣ୍ଟ ଅହ୍ୱାନ କରିବାକୁ ବାଧ୍ୟ ହୋଇଥିଲେ; ମାତ୍ର ଏକ ନୂତନ ତ୍ରୈବାର୍ଷିକ ନିୟମଦ୍ୱାରା ସ୍ଥିର ହୋଇଥିଲା ଯେ, ତିନି ବର୍ଷ ଉତ୍ତାରେ ନୂତନ ପାର୍ଲିମେଣ୍ଟ ନିର୍ବାଚିତ ହେବ ।

ତ୍ରୈବାର୍ଷିକ ନିୟମ ? (Triennial Act) ୧୬୯୪

ଏହି ସମୟରେ ମୁଦ୍ରାଯନ୍ତ୍ରକୁ ସ୍ୱାଧୀନତା ପ୍ରଦତ୍ତ ହେଲା । ଲୋକମାନେ ଏଥେଷ୍ଟ ପୁସ୍ତକାଦି ପ୍ରକାଶ କରିବାକୁ ଲାଗିଲେ । ଦେଶରେ ନାନାପ୍ରକାର ସମ୍ବାଦପତ୍ର ପ୍ରକାଶିତ ହେବାକୁ ଲାଗିଲା ।

ମୁଦ୍ରାଯନ୍ତ୍ରର ସ୍ୱାଧୀନତା ୧୬୯୫

ଅଷ୍ଟମ ହେନେରୀଙ୍କ ସମୟରେ ଟମାସ୍ କ୍ରମ୍‌ୱେଲ ନାମକ ତାହାଙ୍କ ପ୍ରଧାନ ମନ୍ତ୍ରୀଙ୍କ ଦ୍ୱାରା ରାଜଦ୍ରୋହ ଆଇନ (Law of Treason) ନାମକ ଏକ ଆଇନ ହୋଇଥିଲା । ତଦ୍ଦ୍ୱାରା ରାଜଦ୍ରୋହ ଅପରାଧରେ ଅଭିଯୁକ୍ତ ବ୍ୟକ୍ତି ବିଚାର ସମୟରେ ସ୍ୱୀୟ ପକ୍ଷ ସମର୍ଥନ କରି ପାରୁ ନ ଥିଲେ । ମାତ୍ର ବର୍ତ୍ତମାନ ଏହି ନିୟମ ପରିବର୍ତ୍ତିତ ହୋଇ ସ୍ଥିର ହେଲା ଯେ, ରାଜଦ୍ରୋହ ଅପରାଧରେ ଅଭିଯୁକ୍ତ ବ୍ୟକ୍ତି ସ୍ୱୀୟ ପକ୍ଷ ସମର୍ଥନାର୍ଥ ଏକ କିମ୍ବା ତତୋଽଧିକ ବ୍ୟବହାରଜୀବୀ ନିଯୁକ୍ତ କରି ପାରିବେ ।

ରାଜଦ୍ରୋହ ଆଇନ ୧୬୯୬

ଏଥିପୂର୍ବେ ଇଂଲଣ୍ଡର ମୁଦ୍ରାଗୁଡ଼ିକର ଧାର ଆମ୍ଭମାନଙ୍କ ଦେଶର ତାମ୍ରମୁଦ୍ରା ତୁଲ୍ୟ ଚିକ୍କଣ ଥିବାରୁ ଦୁଷ୍ଟ ଲୋକେ ତାହାର ପାର୍ଶ୍ୱକୁ କାଟି କାଟି କର୍ତ୍ତନ କରି ଲାଭବାନ ହେଉଥିଲେ । ଫଳତଃ ମୁଦ୍ରାଗୁଡ଼ିକର ଓଜନ ହ୍ରାସ ଏବଂ ଆକାର ମଧ୍ୟ କ୍ଷୁଦ୍ର ହୋଇ ପଡ଼ୁଥିଲା । ଏହାର ପ୍ରତିକାର ନିମିତ୍ତ ଦ୍ୱିତୀୟ ଚାର୍ଲସଙ୍କ ସମୟରେ ଅଶ୍ୱଚାଳିତ ଯନ୍ତ୍ରଦ୍ୱାରା ପ୍ରସ୍ତୁତ, ଆମ୍ଭ ଦେଶର ରୌପ୍ୟମୁଦ୍ରାର ଧାର ତୁଲ୍ୟ କଣ୍ଟାଧାରଯୁକ୍ତ ମୁଦ୍ରା ପ୍ରସ୍ତୁତ ହୋଇଥିଲା; ମାତ୍ର ପୁରାତନ ମୁଦ୍ରାଗୁଡ଼ିକ ପ୍ରଚଳିତ ଥିବାରୁ ଦୁଷ୍ଟ ଲୋକେ ନୂତନ କଣ୍ଟା-ଧାରଯୁକ୍ତ ମୁଦ୍ରାଗୁଡ଼ିକ ବିଦେଶକୁ ନେଇଯାଇ ସେଠାରେ ତାହା ଇଂଲଣ୍ଡର ପୁରାତନ ଚିକ୍କଣ ଧାରଯୁକ୍ତ କର୍ତ୍ତିତ ମୁଦ୍ରା ଅପେକ୍ଷା ଅଧିକ ମୂଲ୍ୟରେ ବିକ୍ରୟ କରୁଥିଲେ । ଏହାର ପ୍ରତିବିଧାନ ନିମନ୍ତେ ମେଣ୍ଟେଗୁ ନାମକ ଚାନସେଲର୍ ଓ ସାର୍ ଆଇଯାକ ନିଉଟନ ନାମକ ବୈଜ୍ଞାନିକ ଓ ଲକ

ନୂତନ ମୁଦ୍ରା ୧୬୯୬

ନାମକ ଦାର୍ଶନିକ ପଣ୍ଡିତମାନଙ୍କ ପରାମର୍ଶମତେ ଇଂଲଣ୍ଡର ସମସ୍ତ ପୁରାତନ ମୁଦ୍ରା ଗୃହୀତ ହୋଇ ତତ୍ପରିବର୍ତ୍ତେ କର୍ତ୍ତିତ ଧାରଯୁକ୍ତ ନୂତନ ମୁଦ୍ରା ପ୍ରଚଳିତ ହୋଇଥିଲା ।

ଗବାକ୍ଷ କର (Window Tax)

ଏତଦ୍ଦ୍ୱାରା ଗଭର୍ଣ୍ମେଣ୍ଟଙ୍କ ବହୁ ଋଣ ହେବାରୁ "ଗବାକ୍ଷକର" ନାମକ ଏକ କର ପ୍ରବର୍ତ୍ତିତ ହେଲା । ଯେଉଁ ଲୋକର ଗୃହରେ ଯେତେ ଅଧିକ-ସଂଖ୍ୟକ ଗବାକ୍ଷ ଥିଲା, ସେ ତେତେ ଅଧିକ କର ଦେଉଥିଲା ।

ଦେଶର ସୈନ୍ୟ-ସଂଖ୍ୟା ହ୍ରାସ

ରିସ୍‌ଉଇକ (Ryswick) ସନ୍ଧି ଦ୍ୱାରା ଫ୍ରାନ୍ସ ସହିତ ଯୁଦ୍ଧ ସ୍ଥଗିତ ହୁଅନ୍ତେ ପାର୍ଲିମେଣ୍ଟ ଦେଶର ସୈନ୍ୟ ସଂଖ୍ୟା ହ୍ରାସ କରିଥିଲେ ଓ ଉଇଲିୟମଙ୍କ ଡଚ୍ ଶରୀରରକ୍ଷୀମାନଙ୍କୁ ବିଦାୟ କରି ଦେଇଥିଲେ । ଏଥିରେ ଉଇଲିୟମ ଅସନ୍ତୁଷ୍ଟ ହୋଇଥିଲେ ସତ୍ୟ; ମାତ୍ର ଅବଶେଷରେ ପାର୍ଲିମେଣ୍ଟର ବ୍ୟବସ୍ଥାରେ ସମ୍ମତ ହୋଇଥିଲେ ।

ଉତ୍ତରାଧିକାରୀ ନିର୍ଣ୍ଣୟ (Act of Settlement)

ଉଇଲିୟମ ଅପୁତ୍ରକ ଥିବାରୁ ସ୍ଥିର ହୋଇଥିଲା ଯେ, ତାହାଙ୍କ ଅନ୍ତେ ଦ୍ୱିତୀୟ ଜେମସ୍‌ଙ୍କ ଦ୍ୱିତୀୟା କନ୍ୟା ଏନ୍ ସିଂହାସନ ଆରୋହଣ କରିବେ । ଏନ୍‌ଙ୍କର ବହୁ ପୁତ୍ରକନ୍ୟା ଥିଲେ । ସେଥିପାଇଁ ଲୋକେ ମନେ କରିଥିଲେ ଯେ, ଏନ୍‌ଙ୍କ ଅନ୍ତେ ତାହାଙ୍କ ପୁତ୍ରମାନଙ୍କ ମଧ୍ୟରୁ ଜଣେ ସିଂହାସନ ପ୍ରାପ୍ତ ହେବେ । ମାତ୍ର ଇତିମଧ୍ୟରେ ଏନ୍‌ଙ୍କ ସମସ୍ତ ପୁତ୍ରକନ୍ୟା କାଳଗ୍ରାସରେ ପତିତ ହୋଇଥିଲେ; ସୁତରାଂ ତାହାଙ୍କ ଉତ୍ତାରେ ସିଂହାସନର ଉତ୍ତରାଧିକାରୀ ନିର୍ଣ୍ଣୟ କରିବା ପାଇଁ "ସେଟଲ୍‌ମେଣ୍ଟ ଆଇନ" ( Act of settlement ) ହୋଇଥିଲା । ଏତଦ୍ଦ୍ୱାରା ସ୍ଥିର ହୋଇଥିଲା ଯେ, ଆଏନ୍‌ଙ୍କ ଅନ୍ତେ ପ୍ରଥମ ଜେମସଙ୍କ କନ୍ୟା

ଏଲିଜାବେଥଙ୍କ ବଂଶଧରମାନେ ପ୍ରୋଟେଷ୍ଟାଣ୍ଟ ଥିବାରୁ ଇଂଲଣ୍ଡର ସିଂହାସନ ପ୍ରାପ୍ତ ହେବେ ।

ବିଚାରପତିମାନଙ୍କର ସ୍ୱାଧୀନତା ୧୭୦୧

ଏହି ଉତ୍ତରାଧିକାରୀ ନିର୍ଣ୍ଣୟ ସମୟରେ ସ୍ଥିର ହୋଇଥିଲା ଯେ, ବିଚାରପତିମାନଙ୍କୁ ବିଚାର ବିଷୟରେ ସମ୍ପୂର୍ଣ୍ଣ ସ୍ୱାଧୀନତା ପ୍ରଦତ୍ତ ହେବ, ସେମାନଙ୍କ ଉପରେ ରାଜାଙ୍କର କୌଣସି ଅଧିକାର ରହିବ ନାହିଁ । ସେମାନଙ୍କର ବେତନ ନିର୍ଦ୍ଦିଷ୍ଟ ହେବ ଏବଂ ସେମାନଙ୍କୁ ନିଯୁକ୍ତ ବା ପଦଚ୍ୟୁତ କରିବାର ଅଧିକାର ରାଜାଙ୍କ ହସ୍ତରେ ନ ରହି ପାର୍ଲିମେଣ୍ଟ ହସ୍ତରେ ରହିବ ।

✓ 12 N...

ସ୍ପେନ୍‌ର ଉତ୍ତରାଧିକାର-ସୂତ୍ରେ ଯୁଦ୍ଧ (War of Spanish Succession) ୧୭୦୧

ଏହି ସମୟରେ ଇଉରୋପରେ ସ୍ପେନ ଅତ୍ୟନ୍ତ ଶକ୍ତିଶାଳୀ ଓ ତାହାର ସାମ୍ରାଜ୍ୟ ଅତ୍ୟନ୍ତ ବିସ୍ତୃତ ଥିଲା । ମାତ୍ର ତାହାର ରାଜା ଚାର୍ଲସ ଅପୁତ୍ରକ ଓ ଅତ୍ୟନ୍ତ ରୁଗ୍ଣ ଥିବାରୁ ତାହାଙ୍କର ଉତ୍ତରାଧିକାରୀ ନିର୍ଣ୍ଣୟ ପାଇଁ ଇଉରୋପର ରାଜା ଓ ରାଜନୈତିକମାନଙ୍କ ମଧ୍ୟରେ ଅତ୍ୟନ୍ତ ଚାଞ୍ଚଲ୍ୟ ଉପସ୍ଥିତ ହୋଇଥିଲା । ସ୍ପେନ ରାଜାଙ୍କର ତିନିଜଣ ନିକଟ ଆତ୍ମୀୟ ସ୍ପେନ ସାମ୍ରାଜ୍ୟର ଉତ୍ତରାଧିକାରୀ ବୋଲି ବିବେଚିତ ହୋଇଥିଲେ ଯଥା—(୧) ଫ୍ରାନ୍ସର ରାଜା ଚତୁର୍ଦ୍ଦଶ ଲୁଇଙ୍କ ପୌତ୍ର ଆନଜୁର ଡ୍ୟୁକ ଫିଲିପ, (୨) ଜରମାନୀ ସମ୍ରାଟ ଲିଓପୋଲ୍‌ଡଙ୍କ ପୌତ୍ର ବେଭେରିୟାର ରାଜା ଯୋସେଫ (୩) ଜର୍ମାନୀର ସମ୍ରାଟ ଲିଓପୋଲ୍‌ଡଙ୍କ ଦ୍ୱିତୀୟା ସ୍ତ୍ରୀଙ୍କ ପୁତ୍ର, ଅଷ୍ଟ୍ରିଆର ଆର୍ଚ୍‌ଡ୍ୟୁକ୍ ଚାର୍ଲସ । ସ୍ପେନ ରାଜାଙ୍କ ପଦ୍ଧତି ସେମାନଙ୍କ ସମ୍ପର୍କ ନିମ୍ନରେ ପ୍ରଦତ୍ତ ହେଲା ।




ସେ ସମୟରେ ଇଉରୋପରେ ନେଦରଲାଣ୍ଡ, ସ୍ପେନ, ସିସିଲି, ମିଲାନ ନେପଲ୍‌ସ ; ଦକ୍ଷିଣ ଆମେରିକାରେ ମେକ୍‌ସିକୋ, ପେରୁ, ଚିଲି ଏବଂ କ୍ୟୁବା, ଏବଂ ଏସିଆ ମହାଦେଶରେ ଫିଲିପାଇନ ଦ୍ୱୀପପୁଞ୍ଜ ସ୍ପେନରାଜାଙ୍କ ଅଧୀନ ଥିଲା । ଦ୍ୱିତୀୟ ପୌତ୍ର ଅନଜୁର ଡ୍ୟୁକଙ୍କ ଉତ୍ତରାଧିକାରସୂତ୍ରେ ଏହି ସମସ୍ତ ଭୂଭାଗ ଫରାସୀରାଜା ପ୍ରାପ୍ତ ହେଲେ ଇଉରୋପର ସମସ୍ତ ରାଜାଙ୍କୁ ତାହାଙ୍କ ପଦାନତ ହେବାକୁ ହେବ ଏହି, ଆଶଙ୍କା କରି ଇଉରୋପୀୟ ରାଜାମାନେ ଏକ ସନ୍ଧିପତ୍ର ସ୍ୱାକ୍ଷର କରିଥିଲେ (First Partition

Treaty)। ଏହି ସନ୍ଧିରେ ସ୍ଥିର ହୋଇଥିଲା ଯେ, ବାଭେରିଆର ରାଜା ହୀନବଳ ଥିବାରୁ ସ୍ପେନ ଓ ନେଦରଲାଣ୍ଡ ତାଙ୍କୁ ପ୍ରଦତ୍ତ ହେବ। କିନ୍ତୁ ଦୁର୍ଭାଗ୍ୟବଶତଃ ସ୍ପେନ ରାଜାଙ୍କର ମୃତ୍ୟୁ ପୂର୍ବେ ୧୬୯୯ ଖ୍ରୀଷ୍ଟାବ୍ଦରେ ବେଭେରିଆର ରାଜାଙ୍କ ମୃତ୍ୟୁ ହେବାରୁ ଇଉରୋପୀୟ ରାଜାମାନଙ୍କ ମଧ୍ୟରେ ଦ୍ୱିତୀୟ ସନ୍ଧି ସ୍ୱାକ୍ଷରିତ ହେଲା ( Second Partition Treaty)। ଏହି ସନ୍ଧିରେ ସ୍ଥିର ହେଲା ଯେ, ସ୍ପେନ ଓ ନେଦରଲାଣ୍ଡ ଅଷ୍ଟ୍ରିଆର ଆର୍ଚଡିଉକଙ୍କୁ ପ୍ରଦତ୍ତ ହେବ। ସ୍ପେନ ସାମ୍ରାଜ୍ୟର ଅପର ଭୂଖଣ୍ଡମାନ ଅଞ୍ଜୁର ଡିଉକ ପ୍ରାପ୍ତ ହେବେ।

ଏହି ସନ୍ଧିଗୁଡ଼ିକ ସ୍ପେନ ମନ୍ତ୍ରୀମାନଙ୍କ ଅଗୋଚରରେ ହୋଇଥିବାରୁ ସେମାନେ ଏଥିରେ କ୍ରୁଦ୍ଧ ହୋଇ ତାହାଙ୍କ ରାଜାଙ୍କୁ ଗୋଟିଏ ସ୍ୱତନ୍ତ୍ର 'ଉଇଲ' କରିବାକୁ ଅନୁରୋଧ କରିଥିଲେ। ସେମାନଙ୍କ ପରାମର୍ଶମତେ ସେ ଆନଜୁର ଡିଉକଙ୍କୁ ତାହାଙ୍କ ସମସ୍ତ ସାମ୍ରାଜ୍ୟର ଉତ୍ତରାଧିକାରୀ କରିଥିଲେ। ତଦନନ୍ତର ୧୭୦୦ ଖ୍ରୀ; ଅ; ରେ ତାହାଙ୍କର ମୃତ୍ୟୁ ହେବାରୁ ଫରାସୀ ରାଜା ଏକ୍ତ ଉଇଲ ଅନୁଯାୟୀ ସ୍ୱୀୟ ପୌତ୍ର ଆନଜୁର ଡିଉକଙ୍କ ନାମରେ ନେଦାରଲାଣ୍ଡ ଓ ସ୍ପେନ ଅଧିକାର କଲେ ଏବଂ ଏହି ସୂତ୍ରରେ ଇଂଲଣ୍ଡର ରାଜା ଉଇଲିୟମଙ୍କ ସହ ବିବାଦ ଅବଶ୍ୟମ୍ଭାବୀ ଜାଣି ଦ୍ୱିତୀୟ ଜେମସଙ୍କ ଅନ୍ତେ ତାହାଙ୍କ ପୁତ୍ରଙ୍କୁ ଇଂଲଣ୍ଡର ରାଜା ତୃତୀୟ ଜେମସ୍ ବୋଲି ଘୋଷଣା କଲେ। ଏଥିରେ ଇଂଲଣ୍ଡ ଉତ୍ତେଜିତ ହୋଇ ଫ୍ରାନ୍ସ ସହିତ ଯୁଦ୍ଧ ଘୋଷଣା କଲେ। ପୁରାତନ ଟୋରି ପାର୍ଲିମେଣ୍ଟ ପରିବର୍ତ୍ତରେ ଏକ ନୂତନ ପାର୍ଲିମେଣ୍ଟ ଆହୂତ ହେଲା। ସେଥିରେ ହୁଇଗମାନଙ୍କ ସଂଖ୍ୟା ଅଧିକ ଥିବାରୁ ତାହା ଫ୍ରାନ୍ସ ସହିତ ଯୁଦ୍ଧ ଘୋଷଣା କରି ଯୁଦ୍ଧ ନିମିତ୍ତ ଅର୍ଥ ଓ ସୈନ୍ୟ ମଞ୍ଜୁର କଲା। ଫ୍ରାନ୍ସ ସହିତ ଯୁଦ୍ଧ ଘୋଷିତ ହେଲା। ଉଇଲିୟମ ସ୍ୱୟଂ ଅସୁସ୍ଥ ଥିବାରୁ ଯୁଦ୍ଧ ଚାଳନା ନିମିତ୍ତ ଲର୍ଡ ଚର୍ଚ୍ଚିଲ ବା ମାର୍ଲବରୋର ଡିଉକ ସେନାନାୟକ ନିଯୁକ୍ତ ହେଲେ। ଏହାର ଅଳ୍ପଦିନ ପରେ ଅଶ୍ୱପୃଷ୍ଠରୁ ପତିତ ହେବାରୁ ଉଇଲିୟମଙ୍କର ମୃତ୍ୟୁ ହେଲା (୧୭୦୨)।

---

# ଏନ୍

(୧୭୦୨—୧୭୧୪)=ବ ୧୨ ର୍ଷ

ଜନ୍ମ—୧୬୬୫ । ବିବାହ—୧୬୮୩ । ମୃତ୍ୟୁ—୧୭୧୪ ।



ଏନ୍ ଅତ୍ୟନ୍ତ ଧୀର ପ୍ରକୃତିର ଧାର୍ମିକା ଓ ଅତ୍ୟନ୍ତ ଲୋକପ୍ରିୟ ଥିଲେ । ଏଲିଜାବେଥଙ୍କ ତୁଲ୍ୟ ଲୋକମାନଙ୍କ ମଙ୍ଗଳ ସାଧନ ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ମାର୍ଲବରୋର ଡ୍ୟୁକଙ୍କ ସ୍ତ୍ରୀ ସାରା ଜେନିଂସ୍ ତାହାଙ୍କର ପ୍ରଧାନ ବନ୍ଧୁ ଥିଲେ । ସୁତରାଂ ଏନ୍ ସର୍ବବିଷୟରେ ମାର୍ଲବରୋଙ୍କ ଦ୍ୱାରା ଚାଳିତ ହେଉଥିଲେ । ତାହାଙ୍କ ସ୍ୱାମୀ, ଡେନମାର୍କର ରାଜା ଜର୍ଜ ଅତ୍ୟନ୍ତ ଧୀର ଓ ଅମାୟିକ ପ୍ରକୃତିର ଲୋକ ଥିଲେ ଓ ରାଜକାର୍ଯ୍ୟରେ ହସ୍ତକ୍ଷେପ କରୁ ନ ଥିଲେ । ସୁତରାଂ ପ୍ରକୃତପକ୍ଷରେ ଲର୍ଡ ମାର୍ଲବରୋ ଇଂଲଣ୍ଡର ଶାସନକର୍ତ୍ତା ହୋଇ ପଡ଼ିଥିଲେ ।

ଚରିତ୍ର

ଏନ୍ ସିଂହାସନ ଆରୋହଣ କରି ଉଇଲିୟମଙ୍କ ନୀତି ଅନୁସରଣ କରି ଫ୍ରାନ୍ସ ସହିତ ଯୁଦ୍ଧ ଘୋଷଣା କଲେ ଏବଂ ମାର୍ଲବରୋ ଇଂରାଜ ସୈନ୍ୟର ପ୍ରଧାନ ସେନାପତି ନିଯୁକ୍ତ ହୋଇ ହଲଣ୍ଡ ଯାତ୍ରା କଲେ । ଇତିମଧ୍ୟରେ ଫରାସୀମାନେ ନେଦରଲଣ୍ଡ ଅଧିକାର କରି ଡଚମାନଙ୍କୁ ଆକ୍ରମଣ କରୁଥିଲେ । ମାର୍ଲବରୋ ହଲଣ୍ଡରେ ଉପସ୍ଥିତ ହୋଇ "ଲିଜ" ନାମକ ସ୍ଥାନ ଅଧିକାର କରି ଡ୍ୟୁକ ପଦ ଓ ବାର୍ଷିକ ପଞ୍ଚସହସ୍ର ପାଉଣ୍ଡ ବୃତ୍ତିସ୍ୱରୂପ ପ୍ରାପ୍ତ ହେଲେ ( ୧୭୦୨ ) । ଏହି ଯୁଦ୍ଧରେ ଫ୍ରାନ୍ସ ସହିତ ବେଭେରିଆ ଯୋଗଦାନ କରିଥିଲା । ମାତ୍ର ହଲଣ୍ଡ, ଜରମାନୀ, ଇଂଲଣ୍ଡ ଅଷ୍ଟ୍ରିଆର ସପକ୍ଷରେ ଫ୍ରାନ୍ସ ବିରୁଦ୍ଧରେ ଯୋଗ ଦେଇଥିଲେ; କାରଣ ଫରାସୀମାନେ ନେଦରଲଣ୍ଡ ଅଧିକାର କରିବାରୁ ଡଚମାନେ ସେମାନଙ୍କୁ ସେଠାରୁ ବହିଷ୍କୃତ କରିବାକୁ ଇଚ୍ଛୁକ ଥିଲେ । ଜର୍ମାନୀର ସମ୍ରାଟ ସ୍ୱୀୟ ପୁତ୍ର ଅଷ୍ଟ୍ରିଆର ଆର୍ଚ୍ଚ ଡ୍ୟୁକଙ୍କ ପକ୍ଷ ଅବଲମ୍ବନ କରିଥିଲେ ଏବଂ ଫରାସୀ ରାଜା ଜେମସଙ୍କ ପକ୍ଷ ଅବଲମ୍ବନ କରିଥିବାରୁ ଉଇଲିୟମ ତାଙ୍କର ବିରୋଧୀ ହୋଇଥିଲେ ।

ଫ୍ରାନ୍ସ ସହିତ ଯୁଦ୍ଧ
( War of Spanish Succession.)
୧୭୦୨—୧୭୧୩

ଫରାସୀମାନେ ବେଭେରିଅର ସାହାଯ୍ୟ ଲାଭ କରି ଅଷ୍ଟ୍ରିଆର ରାଜଧାନୀ ଭିଏନା ଅଧିକାର କରିବା ଉଦ୍ଦେଶ୍ୟରେ ଟେଲାର୍ଡ ନାମକ ସେନାପତିଙ୍କ ଅଧୀନରେ ଏକଦଳ ସୈନ୍ୟ ପ୍ରେରଣ କଲେ । ମାତ୍ର ମାର୍ଲବରୋ ତାହାଙ୍କ ଉଦ୍ଦେଶ୍ୟ ଅବଗତ ହୋଇ ଫରାସୀମାନଙ୍କ ଆକ୍ରମଣରୁ ଇଂଲଣ୍ଡ ଓ ହଲାଣ୍ଡ ରକ୍ଷା କରିବା ପାଇଁ ହଲାଣ୍ଡରେ ଏକଦଳ ସୈନ୍ୟ ରକ୍ଷା କରି ସ୍ୱୟଂ ଏକ ଦଳ ସୈନ୍ୟ ସହ ଅଷ୍ଟ୍ରିଆର ସେନାନାୟକ ଯୁବରାଜ ଇଉଜିନଙ୍କ ସହିତ ମିଳିତ ହେଲେ । ଡାନ୍ୟୁବ ନଦୀ ତୀରରେ ବ୍ଲେନାହାମ ନାମକ ଏକ ଗ୍ରାମ ନିକଟରେ ଫରାସୀ ଓ ବେଭେରିଆର ସୈନ୍ୟମାନଙ୍କ ସହିତ ତାହାଙ୍କର ସଂଘର୍ଷ ଉପସ୍ଥିତ ହେଲା । ଏହି ଯୁଦ୍ଧରେ ଇଂରାଜମାନେ ମାର୍ଲବରୋଙ୍କ ନେତୃତ୍ୱରେ ଜୟୀ ହେଲେ ଏବଂ ଅଧିକାଂଶ ଫରାସୀ ସୈନ୍ୟ ନିହତ ବା ବନ୍ଦୀ ହେଲେ । ଏହି ଯୁଦ୍ଧ ଉତ୍ତାରେ ମାର୍ଲବରୋଙ୍କ ଯଶଃ ଚତୁର୍ଦ୍ଦିଗରେ ବ୍ୟାପ୍ତ ହେଲା ଏବଂ ଇଂଲାଣ୍ଡରେ ଉଡ୍‌ଷ୍ଟକ୍ ନାମକ ଏକ ଜାଗିର ତାଙ୍କୁ ପୁରସ୍କାରସ୍ୱରୂପ ପ୍ରଦତ୍ତ ହେଲା । ସେଠାରେ ସେ "ବ୍ଲେନହାମ ପ୍ରାସାଦ" ନାମକ ଏକ ସୁରମ୍ୟ ହର୍ମ୍ମ୍ୟ ନିର୍ମାଣ କରିଥିଲେ ।

ବ୍ଲେନହାମ ଯୁଦ୍ଧ (୧୭୦୪)

ଯେଉଁ ବର୍ଷ ଇଂରାଜମାନେ ବ୍ଲେନହାମଠାରେ ଜୟୀ ହୋଇଥିଲେ, ସେହି ବର୍ଷ ସାର ଜର୍ଜରୁକ ନାମକ ଏକ ଇଂରାଜ ନୌବହରର ଅଧିନାୟକ ସ୍ପେନଠାରୁ ଭୂମଧ୍ୟସାଗର ପ୍ରବେଶ ପଥରେ ଅବସ୍ଥିତ ଜିବ୍ରାଲଟାର ନାମକ ପ୍ରଧାନ ବନ୍ଦର ଦଖଲ କରିଥିଲେ । ତାହା ଅଦ୍ୟାବଧି ଇଂରେଜମାନଙ୍କ ହସ୍ତଗତ ଅଛି ।

ଜିବ୍ରାଲଟାର ଅଧିକାର (୧୭୦୪)

ଇତିମଧ୍ୟରେ ଫରାସୀମାନେ ନେଦାରଲ୍ୟାଣ୍ଡ ରକ୍ଷା କରିବା ଉଦ୍ଦେଶ୍ୟରେ ଏନ୍‌ଟ୍ୱାର୍ପଠାରୁ ନେମୁର ପର୍ଯ୍ୟନ୍ତ କେତେଗୁଡ଼ିଏ ଦୁର୍ଗ ନିର୍ମାଣ କରି ସେଥିରେ ଫରାସୀ ସୈନ୍ୟ ରକ୍ଷା କରିଥିଲେ । ମାତ୍ର ମାର୍ଲବରୋ ସେସମସ୍ତ ଅତିକ୍ରମ କରି "ରମିଲିସ୍" ନାମକ ସ୍ଥାନରେ ଫରାସୀମାନଙ୍କୁ ପରାଜିତ କରି ଫ୍ଲାଣ୍ଡାର୍ସ ଓ ବ୍ରାବାନ୍ଟ ମଧ୍ୟବର୍ତ୍ତୀ ଏନ୍‌ଟ୍ୱାର୍ପ ପ୍ରଭୃତି କେତେଗୁଡ଼ିଏ ଦୁର୍ଗ ଅଧିକାର କରିଥିଲେ । ଏଥିରେ ଅଷ୍ଟ୍ରିଆର ରାଜା ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ମାର୍ଲବରୋଙ୍କୁ ସ୍ପେନୀୟ ନେଦାରଲ୍ୟାଣ୍ଡର ଶାସନକର୍ତ୍ତା ନିଯୁକ୍ତ କରିବାକୁ ଅଗ୍ରସର ହୋଇଥିଲେ । ମାତ୍ର ଏଥିରେ ଇଂରାଜ ଓ ଡଚମାନେ ଆପତ୍ତି କରିବାରୁ ମାର୍ଲବରୋଙ୍କୁ ତାହା ପ୍ରତ୍ୟାଖ୍ୟାନ କରିବାକୁ ହୋଇଥିଲା ।

ରାମିଲିସ ଯୁଦ୍ଧ (୧୭୦୬)

ସେହି ସମୟରେ ଆର୍ଲ ଅଫ ପିଟରବରୋ ନାମକ ଅପର ଏକ ଇଂରାଜ ସେନାନାୟକ ସ୍ପେନର 'ବାର୍ସିଲୋନା' ପ୍ରଦେଶ ଅଧିକାର କରି ଫରାସୀମାନଙ୍କୁ ସ୍ପେନରୁ ବହିଷ୍କୃତ କରି ଅଷ୍ଟ୍ରିଆର ରାଜାଙ୍କୁ ମାଡ୍ରିଡଠାରେ ସ୍ପେନର ରାଜା ବୋଲି ଘୋଷଣା କରିଥିଲେ । ଫରାସୀମାନେ ଏହି ପ୍ରକାର ସର୍ବତ୍ର ପରାଜିତ ହୋଇ "ଦ୍ୱିତୀୟ ବିଭାଗ ସନ୍ଧି" (Second partition treaty) ଅନୁଯାୟୀ ଅଷ୍ଟ୍ରିଆକୁ ସ୍ପେନପ୍ରଦାନ ପୂର୍ବକ ଅନ୍‌ଜୁର ଫିଲିପଙ୍କ ପାଇଁ କେବଳ ନେପଲସ୍, ସିସିଲି ଓ ମିଲାନ ଗ୍ରହଣ କରି ସନ୍ଧି କରିବାକୁ ଉଦ୍ୟତ ହୋଇଥିଲେ । ମାତ୍ର ସେ ସମୟରେ ଇଂରାଜ ପାର୍ଲିମେଣ୍ଟରେ ଯୁଦ୍ଧପ୍ରିୟ ହୁଇଗମାନଙ୍କ ସଂଖ୍ୟାଧିକ୍ୟ ଥିବାରୁ ସେମାନେ ଏଥିରେ ନାନା-ବାଧା ଉପସ୍ଥିତ କରିଥିଲେ । ଲୋକମାନଙ୍କ ଅବସ୍ଥା ଉନ୍ନତ ଥିବାରୁ "ଜାତୀୟଋଣ" ଓ "ଇଂଲଣ୍ଡର ବ୍ୟାଙ୍କ" ଯୁଦ୍ଧର ବ୍ୟୟ ନିମିତ୍ତ ଅର୍ଥର ଅଭାବ ମଧ୍ୟ ଦୂର କରିଥିଲା ।

ଇଂରାଜମାନେ ସନ୍ଧି କରିବାକୁ ଅସମ୍ମତ ହେବାରୁ ଫରାସୀ ରାଜା ଜେମସଙ୍କ ପୁତ୍ରଙ୍କୁ ୪୦୦୦ ସୈନ୍ୟ ପ୍ରଦାନ କରି ସ୍କଟଲାଣ୍ଡ ଆକ୍ରମଣ କରିବାର ଉଦ୍ୟୋଗ କଲେ । ମାତ୍ର ସେହି ସମୟରେ ତାହାଙ୍କର ମେଲମିଲା ହେବାରୁ ସେ ସ୍ୱୟଂ ଗମନ କରିବାକୁ ଅଶକ୍ତ ହୋଇଥିଲେ । ଯେଉଁ ଫରାସୀ ସୈନ୍ୟ ସ୍କଟଲାଣ୍ଡକୁ ପ୍ରେରିତ ହେଲେ ସେମାନେ ଇଂରାଜ ରଣତରୀସମୂହର ଅଧିନାୟକ ଭାୟୁାଙ୍ଗଙ୍କ ଦ୍ୱାରା ପରାଜିତ ଓ ତାଡ଼ିତ ହେଲେ ।

ଦ୍ୱିତୀୟ ଜେମସଙ୍କ ପୁତ୍ର(Pretender)ଙ୍କ ଇଂଲଣ୍ଡ ଆକ୍ରମଣର ଉଦ୍ୟୋଗ (୧୭୦୮)

ଉଡ଼େନାର୍ଡରେ ଫରାସୀମାନେ ମାର୍ଲବରୋଙ୍କ ଦ୍ୱାରା 'ଓଡ଼େନାର୍ଡ' ନାମକ ସ୍ଥାନରେ ପରାଜିତ ହେଲେ ଏବଂ 'ଲିଲ୍' ନାମକ ନଗର ମାର୍ଲବରୋଙ୍କର ହସ୍ତଗତ ହେଲା (୧୭୦୮) । ତତ୍ପର ବର୍ଷ ଫରାସୀମାନେ 'ମାଲପାକେଟ' ନାମକ ସ୍ଥାନରେ ପୁନର୍ବାର ପରାଜିତ ହେଲେ ।

ଉଡ଼େନାର୍ଡରେ ଫରାସୀମାନଙ୍କ ପରାଜୟ—୧୭୦୮

ଏଥିପୂର୍ବେ ୧୭୦୬ ଖ୍ରୀ: ଅ: ରେ ଅର୍ଲ ଅଫ ପିଟରବରୋଙ୍କ ଅଧୀନରେ ଇଂରାଜମାନେ ମାଡ୍ରିଡ ନଗର ଅଧିକାର କରି ଫରାସୀମାନଙ୍କୁ ସ୍ପେନରୁ ତାଡ଼ିତ କରିଥିଲେ । ମାତ୍ର ୧୭୦୮ରେ ଦ୍ୱିତୀୟ ଜେମସଙ୍କ ଏକ ପୁତ୍ର, ମାର୍ଲବରୋଙ୍କ ଭଗିନେୟ, ବାରଉଇକର ଡ୍ୟୁକଙ୍କ ଦ୍ୱାରା ଇଂରେଜମାନେ ସ୍ପେନରେ ଅଲମାନ୍ଜା ନାମକ ସ୍ଥାନରେ ପରାଜିତ ହେଲେ; ମାଡ୍ରିଡ଼ ନଗର ଫରାସୀମାନଙ୍କର ହସ୍ତଗତ ହେଲା । ଯାହାହେଉ ଉକ୍ତ ବର୍ଷ ଇଂରାଜ ସେନାପତି ଷ୍ଟାନହୋପ୍ ସ୍ପେନ ଅଧୀନସ୍ଥ ଭୂମଧ୍ୟସାଗରର ମିନର୍କା ଦ୍ୱୀପ ହସ୍ତଗତ କଲେ ।

ସ୍ପେନରେ ଇଂରେଜମାନଙ୍କର ପରାଜୟ—୧୭୦୮

ପ୍ରାୟ ୭ ବର୍ଷବ୍ୟାପୀ ଯୁଦ୍ଧ ହେତୁ ଫରାସୀମାନେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲେ । ସୁତରାଂ ପୁନର୍ବାର ସନ୍ଧି ପ୍ରସ୍ତାବ କରିଥିଲେ; ମାତ୍ର ତାହା ପୁନର୍ବାର ହ୍ୱିଗମାନଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିଲା । ଯୁଦ୍ଧ ହେତୁ ମାର୍ଲବରୋ ଯଥେଷ୍ଟ ଲାଭବାନ ହେଉଥିବାରୁ ସେ ମଧ୍ୟ ସନ୍ଧିର ବିରୋଧୀ ଥିଲେ ଏବଂ ଇଂଲଣ୍ଡରେ ତାହାଙ୍କର ପ୍ରଭାବ ମଧ୍ୟ ପ୍ରଚୁର ପରିମାଣରେ ଥିଲା ।

ଇଂରାଜମାନଙ୍କ ସନ୍ଧି ପ୍ରତ୍ୟାଖ୍ୟାନ-୧୭୦୯

ମାର୍ଲବରୋଙ୍କ ପତନ

ଦେଶର ଲୋକମାନେ କିନ୍ତୁ ଏହି ଦୀର୍ଘକାଳବ୍ୟାପୀ ଯୁଦ୍ଧରେ ବିରକ୍ତ ହୋଇ ପଡ଼ିଥିଲେ । ଟୋରୀମାନେ ହ୍ୱିଗମାନଙ୍କ ରାଜନୀତି ବିରୁଦ୍ଧରେ ପ୍ରଚାର କରିବାକୁ ଲାଗିଲେ । ଡାକ୍ତର 'ସେଚେଭେରେଲ' ନାମକ ଜଣେ ଟୋରୀ ପ୍ରଚାରକ ମନ୍ତ୍ରୀମାନଙ୍କ କାର୍ଯ୍ୟର ପ୍ରତିବାଦ କରିବାକୁ ଲାଗିଲେ । ସେଥିପାଇଁ ସେ ହ୍ୱିଗ୍‌ମାନଙ୍କ ଦ୍ୱାରା ରାଜଦ୍ରୋହ ଅପରାଧରେ ଅଭିଯୁକ୍ତ ହେଲେ । ମାତ୍ର ଦୀର୍ଘ ଯୁଦ୍ଧ ହେତୁ ଲୋକମାନେ ଏବଂ ରାଣୀ ସ୍ୱୟଂ ହ୍ୱିଗମାନଙ୍କ ପ୍ରତି ଅସନ୍ତୁଷ୍ଟ ହୋଇ ତାହାଙ୍କ ପକ୍ଷ ଅବଲମ୍ବନ କରିବାରୁ ବିଚାରକମାନେ ତାଙ୍କୁ ମୁକ୍ତ ଦେଲେ । କେବଳ ତିନିବର୍ଷ ପାଇଁ ତାହାଙ୍କର ପ୍ରଚାର କାର୍ଯ୍ୟ ନିଷିଦ୍ଧ ହେଲା । 'ଜନ ସୁଇଫ୍‌ଟ' ନାମକ ଏକ ବିଖ୍ୟାତ ସାହିତ୍ୟିକ ଯୁଦ୍ଧ ହେତୁ ଦେଶର ଋଣ ଭାର ବର୍ଦ୍ଧିତ ହେଉଅଛି ବୋଲି ପ୍ରକାଶ କଲେ ।

ଏହି ସମୟରେ ମାର୍ଲବରୋ ସମସ୍ତ ମିତ୍ରଶକ୍ତିର ଯାବଜ୍ଜୀବନ ପାଇଁ ସେନାନାୟକ ହେବାକୁ ଇଚ୍ଛୁକ ହୋଇଥିଲେ; ମାତ୍ର କ୍ରମୱେଲଙ୍କ ସମୟରୁ ଲୋକେ ବୁଝିଥିଲେ, ଏକ ବ୍ୟକ୍ତିଙ୍କ ହସ୍ତରେ ସମସ୍ତ ସୈନ୍ୟଙ୍କର ଦେବା ବିପଜ୍ଜନକ । ସୁତରାଂ ସେମାନେ ତାହାର ପ୍ରତିବାଦ କଲେ ଓ ତାହାଙ୍କର ଦୁର୍ଦ୍ଦମନୀୟ ଅର୍ଥଲାଳସା ଓ ଯୁଦ୍ଧହେତୁ ସେ କିପରି ଲାଭବାନ୍ ହେଉଅଛନ୍ତି ତାହା ସର୍ବତ୍ର ପ୍ରଚାର କରିବାକୁ ଲାଗିଲେ ।

ଏହି ସମୟରେ ରାଣୀଙ୍କ ସହିତ ମାର୍ଲବରୋଙ୍କ ସ୍ତ୍ରୀଙ୍କର ମତାନ୍ତର ଘଟିଥିଲା । ରାଣୀ ତାହାଙ୍କୁ ତ୍ୟାଗ କରି ହାର୍ଲେ ନାମକ ଏକ ବ୍ୟକ୍ତିଙ୍କ ଭଗ୍ନୀଙ୍କୁ ସ୍ୱୀୟ ପାର୍ଶ୍ୱଚର ଓ ପରାମର୍ଶଦାତାରୂପେ ଗ୍ରହଣ କଲେ । ହାର୍ଲେ ଓ ସେଣ୍ଟଜନ ନାମକ ଅପର ଏକ ବ୍ୟକ୍ତି ମାର୍ଲବରୋଙ୍କ ପ୍ରତି ନାନା-ଭାବରେ ଦୋଷାରୋପ କରିବାକୁ ଲାଗିଲେ । ମାର୍ଲବରୋଙ୍କ ପ୍ରତି ବିରୂପ ରାଣୀ ହାର୍ଲେ ଓ ସେଣ୍ଟଜନଙ୍କୁ ଅକ୍ସଫୋର୍ଡ ଓ ବଲିଂବ୍ରୋକର ଅର୍ଲ ପଦ ପ୍ରଦାନ କରି ଉଭୟଙ୍କୁ ତାହାଙ୍କ ପ୍ରଧାନ ପରାମର୍ଶଦାତାରୂପେ ଗ୍ରହଣ କଲେ । ହୁଇଗ୍ ପାର୍ଲିଆମେଣ୍ଟ ଭଙ୍ଗ ହୋଇ ନୂତନ ଟୋରି ପାର୍ଲିମେଣ୍ଟ ଆହୂତ ହେଲା ଏବଂ ଅରମଣ୍ଡର ଡିଉକ ମାର୍ଲବରୋଙ୍କ ପରିବର୍ତ୍ତରେ ସେନାନାୟକ ହେଲେ ।

ନୂତନ ଟୋରି ପାର୍ଲିମେଣ୍ଟ ଓ ଟୋରି ମନ୍ତ୍ରୀମାନେ ଫ୍ରାନ୍ସ ସହିତ ସନ୍ଧିର ପ୍ରସ୍ତାବ କଲେ । ଇଉଟ୍ରେଚ ନାମକ ସ୍ଥାନରେ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ୧୭୧୧ ଖ୍ରୀଃ ଅଃ ରେ ଜର୍ମାନୀ ସମ୍ରାଟଙ୍କର ମୃତ୍ୟୁ ହେବାରୁ ତାହାଙ୍କ ଦ୍ୱିତୀୟ ପୁତ୍ର ଜର୍ମାନ ସିଂହାସନ ପ୍ରାପ୍ତ ହୋଇଥିଲେ । ଅନନ୍ତର ଡିଉକ ଫିଲିପ ସ୍ପେନ ଓ ଆମେରିକାସ୍ଥ ସ୍ପେନୀୟ ଉପନିବେଶ ପ୍ରାପ୍ତ ହେଲେ । କିନ୍ତୁ ସ୍ଥିର ହେଲା, ସେ ଫ୍ରାନ୍ସର ସିଂହାସନ ପ୍ରାପ୍ତ ହେବେ ନାହିଁ ବା ଫ୍ରାନ୍ସ ଓ ସ୍ପେନ ଏକ ରାଜାଙ୍କ ଅଧୀନ ହେବ ନାହିଁ ।

ଇଉଟ୍ରେଚ ସନ୍ଧି
(୧୭୧୩)

ମିଲାନ, ନେପ୍‌ଲସ ଓ ସ୍ପେନୀୟ ନେଦାରଲାଣ୍ଡ ଅଷ୍ଟ୍ରିୟାକୁ ପ୍ରଦତ୍ତ ହେଲା ଓ ଡଚ୍‌ମାନେ ହଲାଣ୍ଡର ସୀମାନ୍ତ ପ୍ରଦେଶ ରକ୍ଷା ନିମିତ୍ତ କେତେ-ଗୁଡ଼ିଏ ଦୁର୍ଗ ପ୍ରାପ୍ତ ହେଲେ ।

ଇଂରେଜମାନେ ଜିବ୍ରାଲଟାର, ମିନର୍କା, ନୋଭାସ୍କଟିଆ ଓ ହଡ୍‌ସନ-ଉପସାଗର ପ୍ରାପ୍ତ ହେଲେ । କ୍ରୀତଦାସ ବ୍ୟବସାୟର ଏକଚେଟିଆ ଅଧିକାର ୩୦ ବର୍ଷ ପାଇଁ ଇଂରେଜମାନଙ୍କୁ ପ୍ରଦତ୍ତ ହେଲା ଓ ସେମାନେ ପ୍ରତିବର୍ଷ

ଗୋଟିଏ ଜାହାଜ ଯେଣ ଆମେରିକାରେ ସ୍ପେନୀୟ ଉପନିବେଶରେ ବାଣିଜ୍ୟ କରିବାର ଅଧିକାର ପ୍ରାପ୍ତ ହେଲେ ।

No. 2 p. 33 (Supplementary)

ସ୍କଟଲଣ୍ଡ ସହିତ ମିଶ୍ରଣ (୧୭୦୭)

✓ପ୍ରଥମ ଜେମସଙ୍କ ସିଂହାସନାରୋହଣ ସଙ୍ଗେ ସଙ୍ଗେ ସ୍କଟଲଣ୍ଡ ଓ ଇଂଲଣ୍ଡ ଏକ ରାଜାଙ୍କ ଅଧୀନ ହୋଇଥିଲା । ମାତ୍ର ଉଭୟ ଦେଶର ସ୍ୱତନ୍ତ୍ର ପାର୍ଲିମେଣ୍ଟ ଥିଲା । କ୍ରମୱେଲ ଉଭୟ ଦେଶ ଏକ ପାର୍ଲିମେଣ୍ଟାଧୀନ କରିଥିଲେ ସତ୍ୟ, ମାତ୍ର ଦ୍ୱିତୀୟ ଚାର୍ଲସଙ୍କ ରାଜତ୍ୱ କାଳରେ ସ୍କଟଲଣ୍ଡ ସ୍ୱତନ୍ତ୍ର ପାର୍ଲିମେଣ୍ଟ ପ୍ରାପ୍ତ ହୋଇଥିଲା । ଏତଦ୍ୱାରା ସ୍କଟଲଣ୍ଡର ଅତ୍ୟନ୍ତ କ୍ଷତି ହୋଇଥିଲା । ପ୍ରଥମତଃ ଇଂରେଜମାନଙ୍କର "ନୌଚାଳନ ନିୟମ" (Navigation Act) ହେତୁ ସ୍କଟମାନେ ଇଂଲଣ୍ଡ କିମ୍ବା ଇଂରାଜ ଉପନିବେଶମାନଙ୍କରେ ବାଣିଜ୍ୟ କରି ପାରୁ ନ ଥିଲେ । ପୁଣି ସେମାନେ ଅନୁନ୍ନତ ଥିବାରୁ ବହୁଦ୍ରବ୍ୟ ସେମାନଙ୍କୁ ବିଦେଶରୁ ଆଣିବାକୁ ହେଉଥିଲା । ସେଥିରେ ମଧ୍ୟ ସେମାନେ କ୍ଷତିଗ୍ରସ୍ତ ହେଉଥିଲେ । ଦ୍ୱିତୀୟତଃ ସେମାନେ ଆମେରିକାର 'ପାନାମା' ଯୋଜକଠାରେ ଡାରିଏନ ଉପସାଗର ନିକଟରେ ଏକ ଉପନିବେଶ ସ୍ଥାପନ କରିବାକୁ ଚେଷ୍ଟା କଲେ । ମାତ୍ର ସେ ସ୍ଥାନର ଜଳବାୟୁ ସେମାନଙ୍କର ଅସହ୍ୟ ହେବାରୁ ଓ ଇଂରାଜ ଏବଂ ସ୍ପେନଅଧିବାସୀମାନେ ତାଙ୍କର ବିରୁଦ୍ଧାଚରଣ ହେବାରୁ ତାହାଙ୍କର ଉକ୍ତ ଚେଷ୍ଟା ବିଫଳ ହୋଇଥିଲା । ସ୍କଟମାନେ ଇଂରାଜମାନଙ୍କୁ ତାହାଙ୍କ ବିଫଳତାର ପ୍ରଧାନ କାରଣ ସ୍ଥିର କରି ସେମାନଙ୍କ ପ୍ରତି କ୍ରୁଦ୍ଧ ହେଲେ । ୱିଲିୟମ ସ୍କଟମାନଙ୍କ ଅସୁବିଧା ବୁଝିପାରି ଉଭୟ ଦେଶ ଏକ ପାର୍ଲିମେଣ୍ଟ ଅଧୀନ କରି ଉଭୟଙ୍କୁ ବାଣିଜ୍ୟାଦିରେ ସମାନ ଅଧିକାର ପ୍ରଦାନ କରିବାକୁ ଇଚ୍ଛୁକ ହୋଇଥିଲେ ।

୧୭୦୨ ଖ୍ରୀ: ଅ: ରେ ଉଭୟ ଦେଶ ମିଶ୍ରଣ ବିଷୟ ସ୍ଥିର କରିବା ପାଇଁ ଏକ ତଦନ୍ତ କମିଟି ନିର୍ବାଚିତ ହୋଇଥିଲା । ମାତ୍ର ଏଥିରେ କୌଣସି

ସଲ ହୋଇ ନ ଥିଲା । ସ୍କଟମାନେ ବିରକ୍ତ ହୋଇ ତାହାଙ୍କ ପାର୍ଲିମେଣ୍ଟରେ ସ୍ଥିର କଲେ ଯେ ପ୍ରେସବାଇଟେରିଏନ ଧର୍ମହିଁ ଏକମାତ୍ର ସତ୍ୟ ଧର୍ମ । ସେମାନେ ତାହା ଅନୁସରଣ କରିବେ ଓ ଏନ୍‌ଙ୍କ ଉତ୍ତାରେ ସେମାନେ ଇଂଲଣ୍ଡର ରାଜାଙ୍କ ଅଧୀନରେ ନ ରହି ତାହାଙ୍କ ଦେଶପାଇଁ ସ୍ୱତନ୍ତ୍ର ରାଜା ନିର୍ବାଚନ କରିବେ । (Act of Security) । ଏଥିରେ ଇଂରାଜମାନେ କ୍ରୁଦ୍ଧ ହୋଇ ଇଂଲଣ୍ଡକୁ ସ୍କଟଲଣ୍ଡର ଦ୍ରବ୍ୟାଦି ଆମଦାନୀ ନିଷେଧ କରି ତାହାଙ୍କ ସହିତ ଯୁଦ୍ଧାର୍ଥ ପ୍ରସ୍ତୁତ ହେଲେ ଓ ସେଥିପାଇଁ ସୀମାନ୍ତ ପ୍ରଦେଶର ଦୁର୍ଗାଦି ସଂସ୍କାର କରିବାକୁ ଲାଗିଲେ । ସ୍କଟଲଣ୍ଡ ସହିତ ଇଂଲଣ୍ଡର ଯୁଦ୍ଧ ଆସନ୍ନ ହୋଇ ପଡ଼ିଲା । ମାତ୍ର କେତେକ ପ୍ରବୀଣ ଇଂରାଜ ଓ ସ୍କଟ ରାଜନୈତିକ ସ୍କଟଲଣ୍ଡର ସମସ୍ତ ଅସୁବିଧା ତଦନ୍ତ କରି ଉଭୟ ଦେଶ ଏକ ରାଜା ଓ ଏକ ପାର୍ଲିମେଣ୍ଟ ଅଧୀନ କରିବା ପାଇଁ ପୁନରାୟ ଏକ ତଦନ୍ତ କମିଟି ନିଯୋଗ କରିଥିଲେ । ଏଥିରେ ସ୍ଥିର ହୋଇଥିଲା ଯେ ସ୍କଟଲଣ୍ଡର ଲୋକମାନେ ସ୍ୱୀୟ ପ୍ରେସବାଇଟେରିଆନ ଧର୍ମ ମତ ଅନୁସରଣ କରି ପାରିବେ । ସେମାନଙ୍କ ବିଚାର ସେମାନଙ୍କର ଦେଶରେ ପ୍ରଚଳିତ ନିୟମାନୁଯାୟୀ ହେବ । ସ୍କଟଲଣ୍ଡର ଜାତୀୟଋଣ ପରିଶୋଧାର୍ଥ ଇଂଲଣ୍ଡ ସ୍କଟଲଣ୍ଡକୁ ପ୍ରାୟ ଚଉଦ ଲକ୍ଷ ପାଉଣ୍ଡ ଦାନ କରିବ । ଉଭୟ ଦେଶ ଏକ ରାଜା ଓ ଏକ ପାର୍ଲିମେଣ୍ଟାଧୀନ ହେବ ଓ ସ୍କଟମାନେ ବାଣିଜ୍ୟାଦିରେ ଇଂରାଜମାନଙ୍କ ସହିତ ସମାନ ଅଧିକାର ପାଇବେ ।

ପାର୍ଲିମେଣ୍ଟର ସାଧାରଣ ସଭାକୁ ( House of Commons ) ସ୍କଟମାନେ ୪୫ ଜଣ ସଭ୍ୟ ଓ ସାମନ୍ତ ସଭାକୁ (House of Lords) ୧୬ ଜଣ ସଭ୍ୟ ପ୍ରେରଣ କରିବେ । ଉଭୟ ଦେଶ ଗ୍ରେଟବ୍ରିଟେନ ଆଖ୍ୟା ଧାରଣ କରିବ ଏବଂ ସ୍କଟଲଣ୍ଡର ସେଣ୍ଟ ଆଣ୍ଡ୍ରୁଙ୍କ କ୍ରଶ ଯୁକ୍ତ ଜାତୀୟ ପତାକା ଇଂଲଣ୍ଡର ସେଣ୍ଟ ଜର୍ଜଙ୍କ କ୍ରଶ ଯୁକ୍ତ ଜାତୀୟପତାକା ସହିତ ସମ୍ମିଶ୍ରିତ ହୋଇ ଇଉନିୟନ ଜାକ୍ (Union Jack) ନାମରେ ଅଭିହିତ ହେବ (୧୭୦୭) । ସେହି ସମୟରୁ ଉଭୟ ଦେଶ ସମାନ ଅଧିକାର ପ୍ରାପ୍ତ ହୋଇ ଉନ୍ନତି ପଥରେ ଏକତ୍ର ଅଗ୍ରସର ହେଉଅଛନ୍ତି ।

ସ୍କଟଲଣ୍ଡ ଇଂଲଣ୍ଡଠାରୁ ସଦୟ ବ୍ୟବହାର ପ୍ରାପ୍ତ ହୋଇଥିଲା ସତ୍ୟ; ମାତ୍ର ଅୟରଲର୍ଣ୍ଣ ସେଥିରୁ ବଞ୍ଚିତ ହୋଇଥିଲା । ଉଇଲିୟମଙ୍କ ସମୟରେ ଲିମାରିକ ସନ୍ଧି ସମୟରେ ଇଂରାଜମାନେ ଆଇରିସ କାଥଲିକମାନଙ୍କୁ ସ୍ୱୀୟ ମତାନୁଯାୟୀ ଉପାସନା କରିବା ଅଧିକାର ପ୍ରଦାନ କରିବେ ବୋଲି ସ୍ୱୀକାର କରିଥିଲେ; ମାତ୍ର ସେମାନେ ଏହି ପ୍ରତିଜ୍ଞା ରକ୍ଷା କରି ନ ଥିଲେ. ।

ଅୟର୍ଲାଣ୍ଡ ପ୍ରତି ଅତ୍ୟାଚାର

ଆଇରିସ କାଥଲିକମାନଙ୍କ ବିରୁଦ୍ଧରେ କଠୋର ଆଇନମାନ ବିଧିବଦ୍ଧ ହୋଇଥିଲା । କାଥଲିକମାନେ ସେମାନଙ୍କ ଭୂସମ୍ପତ୍ତିରୁ ବଞ୍ଚିତ ହୋଇଥିଲେ । ସେମାନଙ୍କ ସନ୍ତାନମାନଙ୍କୁ ବଳପୂର୍ବକ ବା ଅର୍ଥ ପ୍ରଦାନ ଦ୍ୱାରା ପ୍ରୋଟେଷ୍ଟାଣ୍ଟ ଧର୍ମରେ ଦୀକ୍ଷିତ କରାଗଲା । ସେମାନଙ୍କ ଶିକ୍ଷା, ଶିଳ୍ପ, ବାଣିଜ୍ୟ ପ୍ରଭୃତି ବିରୁଦ୍ଧରେ ମଧ୍ୟ କଠୋର ଆଇନମାନ ପ୍ରବର୍ତ୍ତିତ ହେଲା ।

ଏନଙ୍କ ମୃତ୍ୟୁ ୧୭୧୪

୧୭୧୪ ଖ୍ରୀ: ଅ: ରେ ଏନ୍ ଅତ୍ୟନ୍ତ ପୀଡ଼ିତା ହୋଇ ପଡ଼ିଲେ । ଲୋକେ ବୁଝିଲେ ତାହାଙ୍କ ଚରମକାଳ ସନ୍ନିକଟ । ତାହାଙ୍କ ଉତ୍ତାରେ ପ୍ରଥମ ଜେମସଙ୍କ ପୌତ୍ରୀ ହାନୋଭରର ରାଣୀ ସୋଫିୟା କିମ୍ବା ତାହାଙ୍କ ପୁତ୍ର ଇଂଲଣ୍ଡର ସିଂହାସନ ପ୍ରାପ୍ତ ହେବେ ବୋଲି ଉଇଲିୟମଙ୍କ ସମୟରେ ସ୍ଥିର ହୋଇଥିଲା; ମାତ୍ର ସେମାନେ ଇଂରାଜ ରାଜନୀତିରେ ଅନଭିଜ୍ଞ ଥିବାରୁ କେତେକ ଲୋକ ଦ୍ୱିତୀୟ ଜେମସଙ୍କ ପୁତ୍ରଙ୍କୁ ସିଂହାସନ ପ୍ରଦାନ କରିବାକୁ କୃତସଙ୍କଳ୍ପ ହୋଇଥିଲେ । ଏନ୍‌ଙ୍କ ପ୍ରଧାନ ମନ୍ତ୍ରୀ ଅକ୍ସଫୋର୍ଡ ଓ ବଲିଂବ୍ରୋକର ଆର୍ଲଦ୍ୱୟ ବୁଝି ଥିଲେ, ସୋଫିୟା କିମ୍ବା ତାହାଙ୍କର ବଂଶଧରମାନେ ସିଂହାସନ ପ୍ରାପ୍ତ ହେଲେ ହୁଇଗମାନଙ୍କ ପ୍ରାଧାନ୍ୟ ହେବ । ସେମାନେ ଟୋରିଦଳଭୁକ୍ତ ଥିବାରୁ କେତେକ ଯାକୋବାଇଟଙ୍କ ସହିତ ଯୋଗ ଦାନ କରି ଦ୍ୱିତୀୟ ଜେମସଙ୍କ ପୁତ୍ରଙ୍କୁ ଇଂଲଣ୍ଡର ସିଂହାସନ ପ୍ରଦାନ

ଛଡ଼ିବା ପାଇଁ ମନ୍ତ୍ରଣା କରିବାକୁ ଲାଗିଲେ ; ମାତ୍ର ଏହି ସମୟରେ ବଲିଂବ୍ରୋକ ଟୋରିମାନଙ୍କୁ ସ୍ୱପକ୍ଷରେ ଆନୟନ କରିବା ପାଇଁ ଏକ ପ୍ରସ୍ତାବ ଆଗତ କରିଥିଲେ ଯେ ଯେଉଁମାନେ ଇଂଲଣ୍ଡରେ ପ୍ରତିଷ୍ଠିତ ହାଇଚର୍ଚ୍ଚ ଦଳଭୁକ୍ତ ନୁହନ୍ତି, ସେମାନେ କୌଣସି ସ୍କୁଲରେ ଶିକ୍ଷା ଦେଇ ପାରିବେ ନାହିଁ । ଏହା ସିଜମ୍ ଅକ୍ଟ ( Schism Act ) ନାମରେ ବିଦିତ । ଅକ୍ସଫୋର୍ଡ ହାଇଚର୍ଚ୍ଚ ଦଳଭୁକ୍ତ ନ ଥିବାରୁ ତାହାଙ୍କ ସହିତ ବଲିଂବ୍ରୋକଙ୍କ କଳହ ଉପସ୍ଥିତ ହେଲା ଏବଂ ଫଳରେ ଅକ୍ସଫୋର୍ଡ ପଦଚ୍ୟୁତ ହେଲେ ଓ ଦ୍ୱିତୀୟ ଜେମସଙ୍କ ବିରୋଧୀ ଶ୍ରୁସବେରି ଉକ୍ତ ତାହାଙ୍କ ପଦପ୍ରାପ୍ତ ହେଲେ । ଏହି ସମୟରେ ହଠାତ୍ ରାଣୀଙ୍କ ମୃତ୍ୟୁ ହେଲା ଓ ଦୁଇମାସ ପୂର୍ବେ ସୋଫିଆଙ୍କ ମୃତ୍ୟୁ ହୋଇଥିବାରୁ ତାହାଙ୍କ ପୁତ୍ର ହାନୋଭରର ରାଜା ଜର୍ଜ ଇଂଲଣ୍ଡର ରାଜା ବୋଲି ଘୋଷିତ ହେଲେ । ( ୧୭୧୪ ) ।

---

## ଷ୍ଟୁଆର୍ଟମାନଙ୍କ ଶାସନ କାଳରେ ଦେଶର ଅବସ୍ଥା

ଷ୍ଟୁଅର୍ଟମାନଙ୍କ ଶାସନ କାଳରେ ରାଜା ଓ ପାର୍ଲିମେଣ୍ଟ ମଧ୍ୟରେ ପ୍ରବଳ ସଂଘର୍ଷ ଉପସ୍ଥିତ ହେଲା । ଏହାର ଦୁଇଟି ପ୍ରଧାନ କାରଣ ଲକ୍ଷିତ ହୁଏ । ପ୍ରଥମତଃ ଷ୍ଟୁଅର୍ଟ ରାଜାମାନେ ଆପଣାକୁ ଈଶ୍ୱରଙ୍କର ପ୍ରତିନିଧି ବୋଲି ମନେ କରି

ରାଜନୈତିକ

ପାର୍ଲିମେଣ୍ଟର ମତାମତର ଅପେକ୍ଷା ନ କରି ଯଥେଚ୍ଛା କର ଆଦାୟ, ସ୍ୱମତାନୁଯାୟୀ ଧର୍ମ ପ୍ରତିଷ୍ଠା କରିବାକୁ ଅଗ୍ରସର ହେଲେ । ଯେଉଁମାନେ ସେଥିରେ ଆପତ୍ତି କଲେ ସେମାନେ କାରାରୁଦ୍ଧ ହେଲେ ବା ଅନ୍ୟ ପ୍ରକାରରେ ଦଣ୍ଡିତ ହେଲେ । ପଶ୍ଚାତ୍ପରେ ପାର୍ଲିମେଣ୍ଟର ଅଧିକାଂଶ ସଭ୍ୟ ପିଉରିଟାନ ଦଳଭୁକ୍ତ ଥିବାରୁ ଓ ବାଣିଜ୍ୟ ଦ୍ୱାରା ସେମାନଙ୍କର ଆର୍ଥିକ ଅବସ୍ଥା ଉନ୍ନତ ହୋଇଥିବାରୁ ସେମାନେ ରାଜାଙ୍କର ଏହି ଅତ୍ୟାଚାର ନୀରବେ ସହ୍ୟ କଲେ ନାହିଁ । ଏହି ସଂଘର୍ଷର ପରିଣାମରେ ପ୍ରଥମ ଚାର୍ଲସଙ୍କୁ ପ୍ରାଣଦାନ କରିବାକୁ

ପଡ଼ିଥିଲା ଏବଂ ଦ୍ୱିତୀୟ ଜେମସ୍‌ଙ୍କୁ ସିଂହାସନ ତ୍ୟାଗ କରିବାକୁ ହେଲା ଓ ପାର୍ଲିମେଣ୍ଟର କ୍ଷମତା ସ୍ୱୀକୃତ ହୋଇ ନିୟମ ତାନ୍ତ୍ରିକ ଶାସନର ( Canstitutional Government ) ପ୍ରବର୍ତ୍ତନ ହେଲା ।

ଏହି ସମୟରେ "ଦଳଶାସନ" ( Party Government ) ଓ ମନ୍ତ୍ରୀ ସଭାର ସୂତ୍ରପାତ ହେଲା । ଦ୍ୱିତୀୟ ଚାର୍ଲସଙ୍କ ସମୟରେ "ହୁଇଗ" ଓ "ଟୋରି" ନାମକ ଦୁଇଟି ରାଜନୈତିକ ଦଳର ସୃଷ୍ଟି ହେଲା ଓ ତୃତୀୟ ଉଇଲିୟମଙ୍କ ଶାସନ କାଳରେ "ସଂଖ୍ୟାଧିକ ଦଳ" ଦ୍ୱାରା ଦେଶ ଶାସନ ପ୍ରଥାର ପ୍ରବର୍ତ୍ତନ ହେଲା । ରାଣୀ ଏନ୍‌ଙ୍କ ସମୟରେ ଏହି ପ୍ରଥାର ଯଥେଷ୍ଟ ପ୍ରସାର ହେଲା ।

ଷ୍ଟୁଅର୍ଟମାନଙ୍କ ଶାସନକାଳରେ ଇଂଲଣ୍ଡର ଔପନିବେଶିକ ଅଧିକାର ଓ ବାଣିଜ୍ୟର ଯଥେଷ୍ଟ ପ୍ରସାର ହୋଇଥିଲା । ପ୍ରଥମ ଜେମସଙ୍କ ସମୟରେ "ପିଲଗ୍ରିମ ଫାଦାର୍ସ"(Pilgrim Fathers) ନାମରେ ପରିଚିତ ଏକଦଳ ପିଉରିଟାନ୍ ଇଂଲଣ୍ଡ ପରିତ୍ୟାଗ କରି ଉତ୍ତର ଆମେରିକାରେ କେତେଗୁଡ଼ିଏ ଉପନିବେଶ ସ୍ଥାପନ କରିଥିଲେ । କ୍ରମୱେଲ ସ୍ପେନଠାରୁ ଜେମେକା ଅଧିକାର କରିଥିଲେ । ଦ୍ୱିତୀୟ ଚାର୍ଲସଙ୍କ ସମୟରେ ଉତ୍ତର ଓ ଦକ୍ଷିଣ କେରୋଲିନା ଉପନିବେଶମାନ ସ୍ଥାପିତ ହେଲା ଓ ନିଉୟର୍କ ଅଧିକୃତ ହେଲା । ରାଣୀ ଏନଙ୍କ ସମୟରେ ଉଟ୍ରେଚ ସନ୍ଧି ଦ୍ୱାରା ଇଂଲଣ୍ଡ, ନିଉଫାଉଣ୍ଡଲାଣ୍ଡ, ନୋଭାସ୍କଟିଆ ଓ ହଡ୍‌ସନ ଉପସାଗରସ୍ଥ ପ୍ରଦେଶମାନ ଜିବ୍ରାଲଟାର ଓ ମିନର୍କା ପ୍ରାପ୍ତ ହେଲା । ଔପନିବେଶିକ ଅଧିକାର ଲାଭର ସହିତ ଇଂଲଣ୍ଡର ବାଣିଜ୍ୟର ମଧ୍ୟ ଯଥେଷ୍ଟ ପ୍ରସାର ହେବାକୁ ଲାଗିଲା । ପ୍ରଥମ ଜେମସଙ୍କ ସମୟରେ ଇଷ୍ଟଇଣ୍ଡିଆ କମ୍ପାନୀ ଭାରତରେ ସୁରାଟ ମଛଲିପଟ୍ଟନ ପ୍ରଭୃତି ସ୍ଥାନରେ ଅନେକଗୁଡ଼ିଏ ବାଣିଜ୍ୟ କୋଠି ସ୍ଥାପନ କରି ଭାରତ ସହିତ ବାଣିଜ୍ୟର ଯଥେଷ୍ଟ ଉନ୍ନତି କରିଥିଲା । ଏହାପରେ ବାଣିଜ୍ୟ

ଉପନିବେଶ ଓ ବାଣିଜ୍ୟ ପ୍ରସାର

ନିମିତ୍ତ ଅନେକ ବଣିକସଂଘ ଗଠିତ ହେଲା । ଏହାର ଫଳସ୍ୱରୂପ ଇଂଲଣ୍ଡରେ ବହୁ ବାଣିଜ୍ୟ କେନ୍ଦ୍ର ସ୍ଥାପିତ ହେଲା ଓ ଦେଶର ଆର୍ଥିକ ଅବସ୍ଥାର ଯଥେଷ୍ଟ ଉନ୍ନତି ସାଧିତ ହେଲା ।

ଦେଶର ସ୍ୱଚ୍ଛଳତା ଆମୋଦ ପ୍ରମୋଦ

ଦେଶର ଆର୍ଥିକ ଅବସ୍ଥାର ଉନ୍ନତି ହୁଅନ୍ତେ ସମାଜରେ ନାନାପ୍ରକାର ଆମୋଦପ୍ରମୋଦ, ବିଳାସ ପ୍ରବେଶ କଲା । ନାନାସ୍ଥାନରେ କଫି, ଚା, ଚକୋଲେଟ ଦୋକାନ ଓ କ୍ଲବ ମାନ ସ୍ଥାପିତ ହେଲା ଓ ସେ ଗୁଡ଼ିକ ରାଜନୈତିକ ଓ ସାମାଜିକ ବିଷୟର ଚର୍ଚ୍ଚାସ୍ଥଳ ହେଲା । ଲୋକମାନେ କଠୋର ପିଉରିଟାନ ଶାସନରୁ ମୁକ୍ତହୋଇ ଦ୍ୱିତୀୟ ଚାର୍ଲସଙ୍କ ସମୟରେ ନାନାପ୍ରକାର ଆମୋଦ ପ୍ରମୋଦରେ ମତ୍ତହେଲେ । ନାନାସ୍ଥାନରେ ଥିଏଟର ପ୍ରତିଷ୍ଠିତ ହେଲା ଓ ସେଥି ନିମିତ୍ତ ବହୁ ନାଟକ ଲିଖିତ ହେଲା ।

ପରିଚ୍ଛଦ ଯାନବାହନ

ଅର୍ଥର ସ୍ୱଚ୍ଛଳତା ହେତୁ ଲୋକମାନଙ୍କର ପରିଚ୍ଛଦ ମୂଲ୍ୟବାନ ଓ ଆଡ଼ମ୍ବର ପୂର୍ଣ୍ଣ ହୋଇ ଉଠିଲା । ଅବସ୍ଥାପନ୍ନ ଲୋକମାନେ ମସ୍ତକ କ୍ଷୌର ହୋଇ ପରଚୂଲ ପିନ୍ଧିଲେ । ସ୍ତ୍ରୀମାନେ ମଧ୍ୟ ପରଚୂଲ ପରିଧାନ କରି ସୌନ୍ଦର୍ଯ୍ୟ ବୃଦ୍ଧି ନିମିତ୍ତ ମୁଖମଣ୍ଡଳରେ କୃଷ୍ଣବର୍ଣ୍ଣ ରେସମଟିକ୍‌ଲି ପରିଧାନ କରୁଥିଲେ । ଗମନାଗମନ ନିମିତ୍ତ ଧନୀମାନଙ୍କର ଅଶ୍ୱଚାଳିତ ଶକଟ ଥିଲା, ମାତ୍ର ଦରିଦ୍ର ମାନଙ୍କର ଜଙ୍ଘାଗାଡ଼ି କମ୍ବା ଭଡ଼ା ଘୋଡ଼ା ଏକମାତ୍ର ଉପାୟ ଥିଲା । ଦୂରସ୍ଥାନକୁ ଯିବାକୁ ହେଲେ 'ଷ୍ଟେଜକୋଚ' (Stage Coach)ର ଆଶ୍ରୟ, ନେବାକୁ ହେଉଥିଲା । ପଥଗୁଡ଼ିକ ଗର୍ତ୍ତପୂର୍ଣ୍ଣ ଓ ନାନାପ୍ରକାର ବିପଦ ସଙ୍କୁଳଥିଲା । ଡକାଏତମାନଙ୍କ ପ୍ରାଦୁର୍ଭାବ ଅତ୍ୟନ୍ତ ଅଧିକ ଥିଲା । ଅନ୍ତର୍ବିପ୍ଳବ ପୂର୍ବେ ଡାକ ବିଭାଗ ପ୍ରତିଷ୍ଠିତ ହୋଇଥିଲା ।

ଷ୍ଟୁଆର୍ଟମାନଙ୍କ ସମୟରେ ଦେଶର ସାହିତ୍ୟ ଓ ବିଜ୍ଞାନର ଯଥେଷ୍ଟ ଉନ୍ନତି ହୋଇଥିଲା । ସେକ୍‌ସପିଅର, ବେନ ଜନସନ ଇଂରାଜି ନାଟକ,

ସାହିତ୍ୟ, ବିଜ୍ଞାନ

ମିଲଟନ ଡ୍ରାଇଡେନ୍ ପୋପ ପ୍ରଭୃତି ଇଂରାଜି କାବ୍ୟ ସାହିତ୍ୟ ବେକନ, ବେନୟନ, ସୁଇଫ୍ଟ, ଏଡ଼ିସନ୍ ପ୍ରଭୃତି ଗଦ୍ୟ ସାହିତ୍ୟରେ ପ୍ରଧାନ ଲେଖକ ଥିଲେ । ବୈଜ୍ଞାନିକ ହାର୍ଭି, "ରକ୍ତସଞ୍ଚାର" ଓ ନିଉଟନ "ମାଧ୍ୟାକର୍ଷଣ" ଶକ୍ତି ଆବିଷ୍କାର କରିଥିଲେ ।

---

# ହେନୋଭାର ରାଜବଂଶ

## ପ୍ରଥମଜର୍ଜ (୧୭୧୪-୧୭୨୭) ଖ୍ରୀ ୧୩ ବର୍ଷ

ଜନ୍ମ-୧୬୬୦, ବିବାହ-୧୬୮୨, ମୃତ୍ୟୁ-୧୭୨୭

ଏନଙ୍କ ମୃତ୍ୟୁର ପ୍ରାୟ ଦୁଇମାସ ପରେ ସେପ୍‌ଟେମ୍ବର ମାସରେ ଜର୍ଜ ସ୍ତ୍ରୀୟ ଏକମାତ୍ର ପୁତ୍ରଙ୍କ ସହିତ ଇଂଲଣ୍ଡରେ ଉପସ୍ଥିତ ହେଲେ ।

ସିଂହାସନ ଆରୋହଣ ଓ ଚରିତ୍ର

ତଥାପି ଅରେଞ୍ଜେ କ୍ଷୁବ୍ଧ ସମ୍ପନ୍ନ ହେଲା । ଅଭିଷେକ ସମୟରେ ତାହାଙ୍କର ୫୪ବର୍ଷ ବୟସ ହୋଇଥିଲା ଏବଂ ସେ ଜରମାନ ଥିବାରୁ ଇଂରାଜି ଭାଷା ଏବଂ ଇଂରାଜମାନଙ୍କ ଶାସନ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ । ସେଥିପାଇଁ ଇଂଲଣ୍ଡ ଏବଂ ଇଂରାଜମାନଙ୍କ ରାଜନୀତିରେ ହସ୍ତକ୍ଷେପ ନ କରି ସମସ୍ତ ବିଷୟ ମନ୍ତ୍ରୀମାନଙ୍କ ହସ୍ତରେ ଅର୍ପଣ କରିଥିଲେ । ହୁଇଗମାନଙ୍କ ହେତୁ ସିଂହାସନ ପ୍ରାପ୍ତ ହୋଇଥିବାରୁ ଏନଙ୍କ ଟୋରୀ ମନ୍ତ୍ରୀ, ଅକ୍‌ସଫୋର୍ଡ ଓ ବଲିଂବ୍ରୋକର ଅର୍ଲଙ୍କୁ ବହିଷ୍କୃତ କରି ସେମାନଙ୍କ ସ୍ଥାନରେ ହୁଇଗ୍ ମନ୍ତ୍ରୀ ନିଯୁକ୍ତ କରି ସମସ୍ତ ବିଷୟରେ ସେମାନଙ୍କ ଉପରେ



ନର୍ଭର କରୁଥିଲେ । ଇଂରେଜୀ ଭାଷାରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିବାରୁ ସେ ମନ୍ତ୍ରୀସଭାରେ ଉପସ୍ଥିତ ନ ରହି ତାହାଙ୍କ ପ୍ରତିନିଧି ସ୍ୱରୂପ ଏକ ବିଶ୍ୱସ୍ତ ମନ୍ତ୍ରୀଙ୍କୁ ନିର୍ବାଚନ କରୁଥିଲେ । ଉକ୍ତ ମନ୍ତ୍ରୀ ପ୍ରଧାନ ମନ୍ତ୍ରୀ(Prime minister) ଆଖ୍ୟା ପ୍ରାପ୍ତ ହୋଇଥିଲେ । ଇଂଲଣ୍ଡର ରାଜନୀତିରେ ହସ୍ତକ୍ଷେପ ନ କରି ସମସ୍ତ ବିଷୟ ପାର୍ଲିମେଣ୍ଟ ଓ ମନ୍ତ୍ରୀ ମାନଙ୍କ ହାତରେ ନ୍ୟସ୍ତ କରିଥିବାରୁ ବିଦେଶୀ ଜରମାନ ହୋଇ ସୁଦ୍ଧା ସେ ହୁଇଗମାନଙ୍କ ପ୍ରିୟ ହୋଇଥିଲେ । ଟାଉନସେଣ୍ଡ ଷ୍ଟାନହୋପ୍ ଓ ଓ୍ୱାଲପୋଲ ତାହାଙ୍କର ପ୍ରଧାନ ପରାମର୍ଶଦାତା ଥିଲେ ।

**ଟାଉନସେଣ୍ଡଙ୍କ ମନ୍ତ୍ରୀତ୍ୱ**

**ଶାନ୍ତିଭଙ୍ଗ ଆଇନ (Riot Act)**

ଜର୍ଜଙ୍କ ସିଂହାସନ ଆରୋହଣ ଉତ୍ତାରେ ନୂତନ ହୁଇଗ୍ ପାର୍ଲିମେଣ୍ଟ ଆହୂତ ହେଲା; ମାତ୍ର ସେ ସମୟରେ ଦେଶରେ ବହୁବ୍ୟକ୍ତି ଜେମସ୍‌ଙ୍କ ମଙ୍ଗଳକାଂକ୍ଷୀ ( Jacobites ) ଥିଲେ । ସେମାନେ ଓ ଟୋରିମାନେ ପାର୍ଲିମେଣ୍ଟର ସଭ୍ୟ ନିର୍ବାଚନ ସମୟରେ ନାନାପ୍ରକାର ଗୋଳମାଳ ଆରମ୍ଭ କଲେ । ତନ୍ନିବାରଣାର୍ଥ ଗୋଟିଏ 'ଶାନ୍ତିଭଙ୍ଗ ଆଇନ' ପ୍ରଚଳିତ ହେଲା । ଦ୍ୱାଦଶ ଜଣରୁ ଅଧିକ ବ୍ୟକ୍ତି କୌଣସି ସ୍ଥାନରେ ଏକତ୍ର ହୋଇ ଗୋଳମାଳ କଲେ ସୈନ୍ୟମାନଙ୍କ ଦ୍ୱାରା ଅସ୍ତ୍ର ସାହାଯ୍ୟରେ ସେମାନଙ୍କୁ ଦୂର କରିବା ଅଧିକାର ମାଜିଷ୍ଟ୍ରେଟମାନଙ୍କୁ ପ୍ରଦତ୍ତ ହେଲା ।

**ସ୍କଟଲ୍ଣ୍ଡର** ଉତ୍ତରାଞ୍ଚଳରେ, ପାର୍ବତ୍ୟ ପ୍ରଦେଶର ଲୋକମାନେ ଅଧିକାଂଶ ଜେମସଙ୍କ ମଙ୍ଗଳକାମୀ ଥିଲେ । ନୂତନ ରାଜା ସିଂହାସନ ଅଧିରୋହଣ କରିବାରୁ ସେମାନେ ଦ୍ୱିତୀୟ ଜେମସଙ୍କୁ ଇଂଲଣ୍ଡର ସିଂହାସନ ପ୍ରଦାନ କରିବା ଉଦ୍ଦେଶ୍ୟରେ ଅର୍ଲ ଅଫ୍ ମାରଙ୍କ (Earl of Mar) ନେତୃତ୍ୱରେ ବିଦ୍ରୋହୀ ହେଲେ । ଏହି ସୁଯୋଗରେ ଇଂଲଣ୍ଡର ଯାକବାଇଟ୍‌ମାନେ ଅର୍ଲ ଅଫ୍ ଡାରଓ୍ୱେଣ୍ଟ ଓ୍ୱାଟର ଓ ଫଷ୍ଟାରଙ୍କ ଅଧୀନରେ ବିଦ୍ରୋହ ପତାକା ଉତ୍ତୋଳନ କଲେ । ମାତ୍ର ସ୍କଟ-ଲ୍ଣ୍ଡର ଯାକବାଇଟ୍‌ମାନେ ଅର୍ଲ ଅଫ୍ ଅର୍ଗାଇଲଙ୍କ ଦ୍ୱାରା ଷ୍ଟାରଲିଂ (Stirling) ନିକଟବର୍ତ୍ତୀ ସେରିଫ୍‌ମୁର ନାମକ ସ୍ଥାନରେ ପରାଜିତ ହେଲେ ଏବଂ ଇଂଲଣ୍ଡର ଯାକବାଇଟମାନେ ପ୍ରେଷ୍ଟନ ( Preston ) ନାମକ ସ୍ଥାନରେ ଆତ୍ମସମର୍ପଣ କଲେ । ଇଂରାଜ ଯାକବାଇଟ୍ ନେତା ଦ୍ୱୟଙ୍କ ମଧ୍ୟରୁ ଫଷ୍ଟାର ପଲାୟନ କଲେ ଏବଂ ଡାରଓ୍ୱେଣ୍ଟ ଓ୍ୱାଟର ମୃତ୍ୟୁ ଦଣ୍ଡ ପ୍ରାପ୍ତ ହେଲେ । ବିଦ୍ରୋହ ଦମନର ପ୍ରାୟ ଏକମାସ ଉତ୍ତାରେ ଦ୍ୱିତୀୟ ଜେମସଙ୍କ ପୁତ୍ର ସ୍କଟଲ୍ଣ୍ଡରେ ଉପସ୍ଥିତ ହୋଇ ସିଂହାସନ ପ୍ରାପ୍ତିର କୌଣସି ଆଶା ନ ଦେଖି ଅର୍ଲ ଅଫ୍ ମାରଙ୍କ ସହିତ ପୁନରାୟ ଫ୍ରାନସକୁ ପ୍ରତ୍ୟା-ବର୍ତ୍ତନ କଲେ । ସ୍କଟଲ୍ଣ୍ଡର ଲୋକେ ପ୍ରଚାର କରିଥିଲେ ଦ୍ୱିତୀୟ ଜେମସଙ୍କ ପୁତ୍ର ତାହାଙ୍କ ଔରସଜାତ ନୁହନ୍ତି ଏବଂ ଇଂଲଣ୍ଡର ସିଂହାସନ ପ୍ରତି ତାହାଙ୍କର ଦାବି ନାହିଁ, ସେଥିପାଇଁ ସେମାନେ ତାହାଙ୍କୁ "ବୃଦ୍ଧ କପଟୀ" (Old Pretenter) ଆଖ୍ୟା ପ୍ରଦାନ କରିଥିଲେ ।

ଯାକବାଇଟ୍ ବିଦ୍ରୋହ ୧୭୧୫

ତ୍ରୈବାର୍ଷିକ ଆଇନ (Triennial Act) ଅନୁଯାୟୀ ୧୭୧୭ ଖ୍ରୀ: ଅ: ରେ ନୂତନ ପାର୍ଲିମେଣ୍ଟ ନିର୍ବାଚିତ ହୋଇଥାନ୍ତା; କିନ୍ତୁ ଇଂଲଣ୍ଡ ଓ ସ୍କଟଲ୍ଣ୍ଡରେ ଟୋରିମାନଙ୍କ ଦ୍ୱାରା ପୂର୍ବୋକ୍ତ ଗୋଳମାଳ ଓ ବିଦ୍ରୋହାଦି ହେବାରୁ ନୂତନ ପାର୍ଲିମେଣ୍ଟରେ ଟୋରିମାନଙ୍କ ସଂଖ୍ୟାଧିକ୍ୟ ଆଶଙ୍କା କରି ପାର୍ଲିମେଣ୍ଟ ଏକ ନୂତନ ନିୟମ

ସପ୍ତ ବାର୍ଷିକ ଆଇନ (Septennial Act) ୧୭୧୭

ବାଧ୍ୟବଦ୍ଧ କରିଥିଲେ । ଏହା ସପ୍ତବାର୍ଷିକ ଆଇନ ନାମରେ ବିଦିତ । ଏତଦ୍ଦ୍ୱାରା ସ୍ଥିର ହୋଇଥିଲା ଯେ ତିନିବର୍ଷ ଉତ୍ତାରେ ନୂତନ ପାର୍ଲିମେଣ୍ଟ ଆହୂତ ନ ହୋଇ ପୁରାତନ ପାର୍ଲିମେଣ୍ଟ ୭ ବର୍ଷ ପର୍ଯ୍ୟନ୍ତ ରହିବ ।

ଷ୍ଟାନହୋପଙ୍କ ମନ୍ତ୍ରୀତ୍ୱ । (ଇଂଲଣ୍ଡର ବୈଦେଶିକ ରାଜନୀତି)—

୧୭୧୫ ଖ୍ରୀ: ଅ: ରେ ଫ୍ରାନ୍ସର ଚତୁର୍ଦ୍ଦଶ ଲୁଇଙ୍କ ୭୧ ବର୍ଷ ରାଜତ୍ୱ ଉତ୍ତାରେ ମୃତ୍ୟୁ ହେବାରୁ ତାହାଙ୍କ ପ୍ରପୌତ୍ର ପଞ୍ଚଦଶ ଲୁଇ ଫ୍ରାନ୍ସର ରାଜା ହେଲେ । ମାତ୍ର ତାହାଙ୍କର ବୟସ କେବଳ ମାତ୍ର ୧୦ ବର୍ଷ ଓ ସେ ଅତ୍ୟନ୍ତ ରୁଗ୍ଣ ଥିବାରୁ ଅର୍ଲିଏନ୍ସ ପ୍ରଦେଶର ଡିଉକ (Duke of Orleans) ତାହାଙ୍କର ଅଭିଭାବକ ଓ ଦେଶର ଶାସନକର୍ତ୍ତା ନିଯୁକ୍ତ ହେଲେ । ପଞ୍ଚଦଶ ଲୁଇଙ୍କ ଅପୁତ୍ରକ ଅବସ୍ଥାରେ ସ୍ପେନର ରାଜା ଫିଲିପ୍ ନିକଟ ସମ୍ପର୍କ ହେତୁ ତାହାଙ୍କର ଏକମାତ୍ର ଉତ୍ତରାଧିକାରୀ ଥିଲେ । କିନ୍ତୁ ଫିଲିପଙ୍କ ଫ୍ରାନ୍ସ ସିଂହାସନ ପ୍ରାପ୍ତି ଉଟ୍ରେକ୍ଟ୍ ସନ୍ଧିବିରୁଦ୍ଧ ଥିବାରୁ ଅର୍ଲିଏନ୍ସର ଡିଉକ୍ ଆଶା କରିଥିଲେ ଯେ ଫ୍ରାନ୍ସ ରାଜବଂଶ ସହିତ ତାହାଙ୍କ ନିକଟ ସମ୍ପର୍କ ହେତୁ ପଞ୍ଚଦଶ ଲୁଇ ଅପୁତ୍ରକ ଅବସ୍ଥାରେ ପ୍ରାଣତ୍ୟାଗକଲେ ସେ ସ୍ୱୟଂ ଫ୍ରାନ୍ସ ସିଂହାସନ ଅଧିକାର କରିବେ । ଏହି ଉଦ୍ଦେଶ୍ୟରେ ସେ ସ୍ପେନ ବିରୁଦ୍ଧରେ ଇଂଲଣ୍ଡ ସହିତ ଏକ ସନ୍ଧି ସୂତ୍ରରେ ଆବଦ୍ଧ ହୋଇଥିଲେ ।

ତ୍ରିଶକ୍ତି ସନ୍ଧି (Tripple Alliance) ୧୭୧୭

ଇଂଲଣ୍ଡରେ ଓ ସ୍କଟଲଣ୍ଡରେ "ଯାକବାଇଟ" ବିଦ୍ରୋହ ବିଫଳ ହୁଅନ୍ତେ ଜର୍ଜ ବୁଝିଥିଲେ ଯେ କୌଣସି ଶକ୍ତିଶାଳୀ ଇଉରୋପୀୟ ରାଜାଙ୍କ ସାହାଯ୍ୟ ବିନା ଜେମସଙ୍କ ପୁତ୍ର ଇଂଲଣ୍ଡର ସିଂହାସନ ଅଧିକାର କରିପାରିବେ ନାହିଁ । ସେଥିପାଇଁ ସେ ଇଂଲଣ୍ଡର ପ୍ରଧାନ ଶତ୍ରୁ ଓ ଜେମସଙ୍କ ପ୍ରଧାନ

ସହାୟ ଫ୍ରାନ୍ସ ସହିତ ସନ୍ଧି ସୂତ୍ରରେ ଆବଦ୍ଧ ହେବାକୁ ପ୍ରସ୍ତୁତ ହେଲେ । ସ୍ପେନ୍ ଉଟ୍ରେଚ୍ଟ ସନ୍ଧିରେ ଅସନ୍ତୁଷ୍ଟ ହୋଇ ତାହାଠାରୁ ଅପହୃତ କେତେକ ପ୍ରଦେଶ ପୁନରଧିକାର କରିବାକୁ ସଚେଷ୍ଟ ଥିଲା । ସୁତରାଂ ଉଟ୍ରେଚ୍ଟ ସନ୍ଧି ସର୍ତ୍ତରକ୍ଷା କରି ଇଉରୋପର ରାଜନ୍ୟବର୍ଗ ମଧ୍ୟରେ ଶକ୍ତିର ସମତାରକ୍ଷା କରିବା ଇଂଲଣ୍ଡର ଅପର ଉଦ୍ଦେଶ୍ୟ ଥିଲା ।

ଏତଦ୍ଦ୍ୱାରା ଇଂଲଣ୍ଡର ଫ୍ରାନ୍ସ ଭୟ ଦୂର ହେଲା । ସ୍ପେନ ଉଟ୍ରେଚ୍ଟ ସନ୍ଧି ଅମାନ୍ୟ କରି ଅଷ୍ଟ୍ରିୟା ଅଧିକୃତ ସିସିଲି ଆକ୍ରମଣ କରିବାରୁ ଅଷ୍ଟ୍ରିୟା ମଧ୍ୟ ଏହି ସନ୍ଧିରେ ଯୋଗଦାନ କରିଥିଲା । ସ୍ପେନର ରଣତରୀବହର ଇଂରେଜମାନଙ୍କଦ୍ୱାରା ପାସାରୋ ଅନ୍ତରୀପ ନିକଟରେ ପରାସ୍ତ ହେଲା ଓ ସ୍ପେନ ସିସିଲି ପରିତ୍ୟାଗ କରିବାକୁ ବାଧ୍ୟ ହେଲା (୧୭୨୮) । ତଦନନ୍ତର ସ୍ପେନ ଇଂଲଣ୍ଡ ଆକ୍ରମଣାର୍ଥ ଏକଦଳ ସୈନ୍ୟ ସ୍କଟଲଣ୍ଡର ଉତ୍ତରାଞ୍ଚଳକୁ ପ୍ରେରଣ କରିଥିଲା । ମାତ୍ର ଉକ୍ତ ସୈନ୍ୟଦଳ ଅନାୟାସରେ ଇଂରାଜମାନଙ୍କ ଦ୍ୱାରା ପରାଭୂତ ଓ ତାଡ଼ିତ ହୋଇଥିଲା ।

ଦ୍ୱିତୀୟ ଚାର୍ଲସଙ୍କ ସମୟରେ ପ୍ରବର୍ତ୍ତିତ ଟେଷ୍ଟ ଆକ୍ଟ, କରପୋରେସନ୍ ଆକ୍ଟ ପ୍ରଭୃତି ଅନୁସାରେ ଯେଉଁ ବ୍ୟକ୍ତି "ଇଂଲିସ୍ ଚର୍ଚ୍ଚ" ପଦ୍ଧତି ଅନୁସାରେ ଶପଥ ଗ୍ରହଣ କରୁ ନ ଥିଲା ସେ ମ୍ୟୁନିସିପାଲିଟି କିମ୍ବା ଗଭର୍ଣ୍ଣମେଣ୍ଟଙ୍କ ଅଧୀନରେ କୌଣସି କାର୍ଯ୍ୟ ପ୍ରାପ୍ତ ହେଉ ନ ଥିଲା । "ଉଦ୍ରେଣ୍ଟାର , ଓ ନନକନଫର୍ମିଷ୍ଟ" ଦଳଭୁକ୍ତ ପ୍ରୋଟେଷ୍ଟାଣ୍ଟମାନେ "ହାଇଚର୍ଚ୍ଚ" ବା ଇଂଲିସଚର୍ଚ୍ଚ ପଦ୍ଧତି ଅନୁସାରେ ଶପଥ ଗ୍ରହଣ ପୂର୍ବକ କାର୍ଯ୍ୟ ପ୍ରାପ୍ତ ହୋଇ ଇଂଲିଶ ଚର୍ଚ୍ଚରେ ଯୋଗଦାନ ନ କରି ସ୍ୱ ସ୍ୱ ଧର୍ମମନ୍ଦିରରେ ଉପାସନା କରୁଥିଲେ । ଏହା ରହିତ କରିବାପାଇଁ ଆନାଙ୍କ ସମୟରେ ଏକ ନିୟମ ହୋଇଥିଲା । ତାହା 'ଅକେଜନାଲ କନଫରମିଟି ଆଇନ (Occasional Conformity Act) ନାମରେ ଖ୍ୟାତ । ଲୋକମାନଙ୍କୁ ଧର୍ମ ନୈତିକ ସ୍ୱାଧୀନତା

ସିଜମ୍ ଆକ୍ଟ ଓ କନଫରମିଟି ଆକ୍ଟ ପ୍ରତ୍ୟାହାର

ହେବାପାଇଁ ଷ୍ଟାନହୋପ ଉକ୍ତ ଆଇନ ରହିତ କରାଇଥିଲେ । ଅନ୍ୟ ସମୟରେ ସିଜମ ଆକ୍ଟ ( Schism Act ) ନାମକ ନିୟମ ହେତୁ ଯେଉଁ ବ୍ୟକ୍ତି ଇଂଲିସ୍‌ଚର୍ଚ୍ଚରେ ଅନ୍ତର୍ଭୁକ୍ତ ନ ଥିଲା ସେ କୌଣସି ବିଦ୍ୟାଳୟରେ ଅଧ୍ୟାପନା କରିପାରୁ ନ ଥିଲା । ତାହା ମଧ୍ୟ ରହିତ ହେଲା ।

ଏହି ସମୟରେ ଲର୍ଡ ସଣ୍ଡରଲାଣ୍ଡ ରାଜାଙ୍କ କ୍ଷମତା ଖର୍ବ କରିବା ପାଇଁ ପିଅରେଜ ବିଲ ବା ସାମନ୍ତ ଆଇନ ନାମକ ଏକ ଆଇନ ଅଗତ କରି-

ପିଅରେଜ ବିଲ (Peerage Bill)

ଥିଲେ । ଏହାର ପ୍ରକୃତ ଉଦ୍ଦେଶ୍ୟ ଥିଲା ଯେ ରାଜା ଛଜଣରୁ ଅଧିକ ନୂତନ ସାମନ୍ତ (Peer) ସୃଷ୍ଟି କରି ପାରିବେ ନାହିଁ । ସୁତରାଂ ରାଜା ଅଧିକ ବିଦେଶୀୟ ବ୍ୟକ୍ତିଙ୍କୁ ଇଂଲଣ୍ଡର ସାମନ୍ତ କରି ପାରିବେ ନାହିଁ ବା ହାଉସ୍ ଅଫ୍ ଲର୍ଡସ୍‌ରେ ରାଜାଙ୍କ ମତାବଲମ୍ବୀ ବ୍ୟକ୍ତିଙ୍କ ସଂଖ୍ୟାଧିକ୍ୟ ହେବ ନାହିଁ । ଏହି ବିଲ୍ ହାଉସ୍ ଅଫ ଲର୍ଡସ୍‌ରେ ଗୃହୀତ ହୋଇଥିଲା, ମାତ୍ର ଓ୍ୱାଲପୋଲ ନାମକ ପାର୍ଲିମେଣ୍ଟର ସଭ୍ୟ ଏହାର ପ୍ରଧାନ ବିରୋଧୀ ହୋଇଥିଲେ ଓ ତାହାଙ୍କ ଉପଦେଶମତେ ହାଉସ୍ ଅଫ୍ କମନ୍‌ସରେ ଏହା ପରିତ୍ୟକ୍ତ ହେଲା । ଏହା ପାଶ ହୋଇ ଆଇନ୍‌ରେ ପରିଣତ ହୋଇଥିଲେ ରାଜକ୍ଷମତା ଖର୍ବ ହୋଇଥାନ୍ତା ଏବଂ ତତ୍କାଳୀନ ହୁଇଗ୍‌ମାନଙ୍କର ପ୍ରାଧାନ୍ୟ ଚିର ସ୍ଥାୟୀ ହୋଇଥାନ୍ତା ।

ୟୁଟ୍ରେଚ ସନ୍ଧି ହେତୁ ଇଉରୋପରେ ଶାନ୍ତି ସ୍ଥାପିତ ହେବାରୁ ଓ ଇଂଲଣ୍ଡ ବିଶେଷ ବାଣିଜ୍ୟ ଅଧିକାର ପ୍ରାପ୍ତ ହେବାରୁ ବିଦେଶ ସହିତ

ଦକ୍ଷିଣ ସମୁଦ୍ରର ବାଣିଜ୍ୟ କମ୍ପାନୀ (South sea Company) ୧୭୧୧-୧୭୨୧

ବାଣିଜ୍ୟ ନିମିତ୍ତ ଇଂଲଣ୍ଡରେ ବହୁ କମ୍ପାନୀ ଗଠିତ ହୋଇଥିଲା । "ଦକ୍ଷିଣ ସମୁଦ୍ରର ବାଣିଜ୍ୟ କମ୍ପାନୀ" ତନ୍ମଧ୍ୟରେ ସର୍ବପ୍ରଧାନ । ପ୍ରଶାନ୍ତ ମହାସାଗରସ୍ଥ ଦ୍ୱୀପପୁଞ୍ଜ ଓ ଦକ୍ଷିଣ ଆମେରିକାର ଉପକୂଳରେ ବାଣିଜ୍ୟ କରିବା ଏହି କମ୍ପାନୀର ପ୍ରଧାନ ଉଦ୍ଦେଶ୍ୟ ଥିଲା ଓ ସେଥିପାଇଁ ଏହି କମ୍ପାନୀ ରାଜଦରବାରରୁ ସନନ୍ଦ ପ୍ରାପ୍ତ ହୋଇଥିଲା ।

ବାଣିଜ୍ୟଦ୍ୱାରା ଏହି କମ୍ପାନୀ ପ୍ରଚୁର ଲାଭବାନ୍ ହୁଅନ୍ତେ ଏହି କମ୍ପାନୀ ତୁଲ୍ୟ ବହୁ କମ୍ପାନୀ ଗଠିତ ହେଲା । ଏହା ପ୍ରତିଦ୍ୱନ୍ଦୀ ହେଉ "ଦକ୍ଷିଣ ସମୁଦ୍ର କମ୍ପାନୀ" ରାଜଦରବାରରୁ କେତେକ ସୁବିଧା ପ୍ରାପ୍ତ ହେବା ଉଦ୍ଦେଶ୍ୟରେ "ଜାତୀୟ ଋଣ" (National Debt) ଆଂଶିକ ପରିଶୋଧ କରିବାକୁ ପ୍ରସ୍ତାବ କଲା (୧୭୧୯) । ଇଂଲଣ୍ଡର ବ୍ୟାଙ୍କ ମଧ୍ୟ ଉକ୍ତ ସୁବିଧା ପ୍ରାପ୍ତି ମାନସରେ ତଦ୍ରୂପ ପ୍ରସ୍ତାବ କଲା । ଏହିରୂପ ପ୍ରତିଦ୍ୱନ୍ଦ୍ୱିତା ଉପସ୍ଥିତ ହୁଅନ୍ତେ ଅବଶେଷରେ "ଦକ୍ଷିଣ ସମୁଦ୍ର କମ୍ପାନୀ" ୭୫୦୦୦୦୦ ପାଉଣ୍ଡ ଜାତୀୟଋଣ ପରିଶୋଧ ଦେବାକୁ ସ୍ୱୀକୃତ ହୋଇ ରାଜଦରବାରରୁ କେତେକ ବିଶେଷ ସୁବିଧା ପ୍ରାପ୍ତ ହେଲା । ଏଥିରେ ୱାଲପୋଲ ଆପତ୍ତି କରିଥିଲେ; ମାତ୍ର ତାହାଙ୍କ ବାକ୍ୟରେ କେହି କର୍ଣ୍ଣପାତ କଲେ ନାହିଁ ।

ରାଜାଙ୍କଠାରୁ ବିଶେଷ ସୁବିଧା ପ୍ରାପ୍ତ ହୁଅନ୍ତେ ଇଂଲଣ୍ଡର ଇତର ଭଦ୍ର ସର୍ବେ ଉକ୍ତ କମ୍ପାନୀର ଅଂଶ (Share) କ୍ରୟ କରିବାକୁ ବଦ୍ଧପରିକର ହୋଇପଡ଼ିଲେ । କମ୍ପାନୀର ଏକଶତ ପାଉଣ୍ଡର ଅଂଶ ସହସ୍ର ପାଉଣ୍ଡରେ ବିକ୍ରୀତ ହେବାକୁ ଲାଗିଲା । ଏହି ସମୟରେ ବହୁ ମିଥ୍ୟା କମ୍ପାନୀ ଗଠିତ ହୁଅନ୍ତେ ଦକ୍ଷିଣ ସମୁଦ୍ରର କମ୍ପାନୀର ଡାଇରେକ୍ଟର ବା ପରିଚାଳକମାନେ ଅପର କମ୍ପାନୀଗୁଡ଼ିକର ଶଠତା ପ୍ରକାଶ କରିଦେଲେ । ତଦ୍ଦ୍ୱାରା ଲୋକ-ମାନଙ୍କ ମଧ୍ୟରେ ଏକ ଆତଙ୍କ ଉପସ୍ଥିତ ହେଲା । ସେମାନେ ତାହାଙ୍କର ପ୍ରଦତ୍ତ ଅର୍ଥ ଫେରାଇ ନେଲେ । ବହୁ କମ୍ପାନୀ ନଷ୍ଟ ହେଲା । "ଦକ୍ଷିଣ ସମୁଦ୍ର କମ୍ପାନୀ" ମଧ୍ୟ ଜଳବୁଦ୍ବୁଦ ବତ୍ ଅନ୍ତର୍ହିତ ହେଲା । ସହସ୍ର ସହସ୍ର ବ୍ୟକ୍ତି ସ୍ୱୀୟ ସ୍ଥାବର ଅସ୍ଥାବର ସମ୍ପତ୍ତି ବିକ୍ରୟ କରି କମ୍ପାନୀର ଅଂଶ କ୍ରୟ କରିଥିଲେ । ସେମାନଙ୍କର ସର୍ବନାଶ ହେଲା, ସେମାନେ ପଥର ଭିକାରୀ ହେଲେ (୧୭୨୦) । କୌଣସି କୌଣସି ମନ୍ତ୍ରୀ ଏହି କମ୍ପାନୀଠାରୁ ଘୁଷ ନେଇଥିବାର ବିଷୟ ସର୍ବତ୍ର ପ୍ରଚାରିତ ହେଲା । ଏହି ଆଘାତ ସହ୍ୟ କରି ନ ପାରି ମନ୍ତ୍ରୀ ଷ୍ଟାନହୋପ ମୃତ୍ୟୁମୁଖରେ ପତିତ ହେଲେ । ଅପର ଏକ ମନ୍ତ୍ରୀ କାର୍ଯ୍ୟ ତ୍ୟାଗ କଲେ । ଏହି ସଙ୍କଟ ସମୟରେ ଲୋକେ ୱାଲ-

ପୋଲଙ୍କୁ ଦେଶର ପ୍ରକୃତ ରକ୍ଷାକର୍ତ୍ତା ଜ୍ଞାନ କରି ତାହାଙ୍କୁ ମନ୍ତ୍ରୀ ପଦ ଗ୍ରହଣ କରିବାକୁ ଆହ୍ୱାନ କଲେ । ଓ୍ୱାଲପୋଲ ଏହି ଆହ୍ୱାନ ଉପେକ୍ଷା ନ କରି ରାଜାଙ୍କ ମନ୍ତ୍ରୀତ୍ୱ ଗ୍ରହଣ କଲେ (୧୭୨୧)

ଓ୍ୱାଲପୋଲଙ୍କ ମନ୍ତ୍ରୀତ୍ୱ (୧୭୨୧—୧୭୪୨) ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ (Prime minister)

ଦକ୍ଷିଣ ସମୁଦ୍ର କମ୍ପାନୀ ବୁଦ୍‌ବୁଦ୍ ଭଳି ବିଲୀନ ହୁଅନ୍ତେ ଇଂଲଣ୍ଡର ମନ୍ତ୍ରୀମାନେ କର୍ମଚ୍ୟୁତ ହେଲେ ଓ ଲୋକମାନଙ୍କ ପ୍ରାର୍ଥନାମତେ ଓ୍ୱାଲପୋଲ କୋଷାଧ୍ୟକ୍ଷ ଓ ରାଜାଙ୍କର ପ୍ରଧାନ ମନ୍ତ୍ରୀ ହେଲେ, ସେ ରାଜାଙ୍କ ଅନୁଗତ ଥିଲେ । ସେଥିପାଇଁ ରାଜଶକ୍ତି ଖର୍ବ କରିବା ଉଦ୍ଦେଶ୍ୟରେ ସଣ୍ଡରଲଣ୍ଡଙ୍କ ଦ୍ୱାରା ଆନୀତ ପିଅରେଜ ବିଲର ପ୍ରଧାନ ବିରୋଧୀ ଥିଲେ । ରାଜାଙ୍କ ଓ୍ୱାଲପୋଲଙ୍କ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ଥିବାରୁ ରାଜା ସ୍ୱୟଂ ତାହାଙ୍କ ଅପର ମନ୍ତ୍ରୀବର୍ଗ ବା ପ୍ରଧାନ କର୍ମଚାରୀ ନିଯୁକ୍ତ ନ କରି ସେମାନଙ୍କର ନିଯୁକ୍ତି ଭାର ଓ୍ୱାଲପୋଲଙ୍କୁ ପ୍ରଦାନ କଲେ । ଓ୍ୱାଲପୋଲ ହ୍ୱିଗ୍ ମତାବଲମ୍ବୀ ବନ୍ଧୁମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତିଙ୍କୁ ପ୍ରଧାନ ରାଜକାର୍ଯ୍ୟମାନ ପ୍ରଦାନ କରି ସେମାନଙ୍କ ସାହାଯ୍ୟରେ ରାଜକାର୍ଯ୍ୟ ପରିଚାଳନ କରିବାକୁ ଲାଗିଲେ । ରାଜା ଇଂରାଜୀ ଭାଷାରେ ଅନଭିଜ୍ଞ ଥିବାରୁ ଓ ଓ୍ୱାଲପୋଲଙ୍କ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ଥିବାରୁ ସ୍ୱୟଂ ମନ୍ତ୍ରୀ ସଭାରେ (Cabinet meeting) ଉପସ୍ଥିତ ନ ହୋଇ ଓ୍ୱାଲପୋଲଙ୍କୁ ସମସ୍ତ ଭାର ପ୍ରଦାନ କଲେ । ଓ୍ୱାଲପୋଲ ପ୍ରଧାନ ମନ୍ତ୍ରୀ (Prime minister) ଆଖ୍ୟା ଧାରଣ କରି ରାଜକାର୍ଯ୍ୟ ପରିଚାଳନ କରିବାକୁ ଲାଗିଲେ । ତଦବଧି ରାଜକାର୍ଯ୍ୟ ପରିଚାଳନ ବିଷୟରେ ରାଜାଙ୍କର ପ୍ରଭାବ ଅନ୍ତର୍ହିତ ହୋଇଅଛି ଓ ସମସ୍ତ ଭାର ପ୍ରଧାନ ମନ୍ତ୍ରୀଙ୍କ ହସ୍ତରେ ନ୍ୟସ୍ତ ହୋଇଅଛି । ପ୍ରଧାନ ମନ୍ତ୍ରୀ ସ୍ୱୀୟ ଦଳରୁ ଅପର ମନ୍ତ୍ରୀମାନଙ୍କୁ ନିର୍ବାଚନ କରୁଅଛନ୍ତି । ଏହା Cabinet Government ନାମରେ ଖ୍ୟାତ ।

ଓ୍ୱାଲପୋଲ ନରଫୋକର ଏକ ଭଦ୍ର ପରିବାରେ ଜନ୍ମଗ୍ରହଣ କରିଥିଲେ । ୧୭୦୨ ଖ୍ରୀ: ଅ: ରେ ପାର୍ଲିମେଣ୍ଟରେ ଏକ ହୁଇଗ୍ ସଭ୍ୟରୂପେ

ଓ୍ୱାଲପୋଲଙ୍କ ରାଜନୀତି

ନିର୍ବାଚିତ ହୋଇ ତାହାଙ୍କ ବାଗ୍ମିତା ଓ କର୍ମ-ପଟୁତା ହେତୁ ସ୍ୱଦଳର ଦୃଷ୍ଟି ଆକର୍ଷଣ କରିଥିଲେ । ଜର୍ଜଙ୍କ ସିଂହାସନ ଆରୋହଣ ଉତ୍ତାରେ ସେ ଏକସଚେକାରର ଚାନ୍‌ସେଲର ପଦ ପ୍ରାପ୍ତ ହୋଇ ଷ୍ଟାନହୋପ୍‌ଙ୍କ ମନ୍ତ୍ରୀତ୍ୱ କାଳରେ ତାହାଙ୍କ ସହିତ କାର୍ଯ୍ୟ କରିଥିଲେ । ଦକ୍ଷିଣ ସମୁଦ୍ର କମ୍ପାନୀର ପତନ ଉତ୍ତାରେ ସେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ପଦରେ ନିଯୁକ୍ତ ହେଲେ । ତାହାଙ୍କର ଶିକ୍ଷା ଅଧିକ ନ ଥିଲା; ମାତ୍ର ଜଟିଳ ଅର୍ଥ ନୈତିକ ସମାସ୍ୟା ସମାଧାନ କରିବାରେ ତାହାଙ୍କର ବିଶେଷ ଦକ୍ଷତା ଥିଲା । ଦକ୍ଷିଣ ସମୁଦ୍ର କମ୍ପାନୀର ପତନ ଉତ୍ତାରେ ଇଂଲଣ୍ଡର ଘୋର ଅର୍ଥ ସଙ୍କଟ ସମୟରେ ସେ ପ୍ରଧାନ ମନ୍ତ୍ରୀତ୍ୱ ଗ୍ରହଣ କରି ଅର୍ଥ ସମସ୍ୟା କେତେକ ପରିମାଣରେ ଦୂର କରି ଦେଶରେ ଶାନ୍ତି ସ୍ଥାପନ କଲେ ଓ ବାଣିଜ୍ୟ ଦ୍ରବ୍ୟର କର ହ୍ରାସ କରି ବାଣିଜ୍ୟର ଉନ୍ନତି ଓ ଦେଶର ଶ୍ରୀବୃଦ୍ଧି କରିଥିଲେ ।

ଓ୍ୱାଲପୋଲ ଏକ ମଧ୍ୟବିତ୍ତ ଗ୍ରାମ୍ୟ ପରିବାରରେ ଜନ୍ମଗ୍ରହଣ କରି-ଥିବାରୁ ହୁଇଗ୍ ଦଳଭୁକ୍ତ ବହୁ କ୍ଷମତାଶାଳୀ ଗ୍ରାମ୍ୟ ଭଦ୍ରବ୍ୟକ୍ତିଙ୍କ ସହିତ ତାହାଙ୍କର ବିଶେଷ ବନ୍ଧୁତ୍ୱ ଥିଲା । ପାର୍ଲିମେଣ୍ଟର ସଭ୍ୟ ନିର୍ବାଚନ ସମୟରେ ଉକ୍ତ ବନ୍ଧୁମାନଙ୍କ ପ୍ରଭାବରୁ ହୁଇଗ୍‌ଦଳଭୁକ୍ତ ଓ ଓ୍ୱାଲପୋଲଙ୍କ ପକ୍ଷ ସମର୍ଥକ ବହୁବ୍ୟକ୍ତି ପାର୍ଲିମେଣ୍ଟ ସଭାର ସଭ୍ୟରୂପେ ନିର୍ବାଚିତ ହେଉଥିଲେ । କୌଣସି ସଭ୍ୟ ତାହାଙ୍କର ବିରୋଧୀ ହେଲେ ସେ ଅର୍ଥ ପ୍ରଦାନ ଦ୍ୱାରା ତାହାକୁ ସ୍ୱବଶକୁ ଆନୟନ କରୁଥିଲେ । ଦେଶର ଶାନ୍ତିସ୍ଥାପନ ଓ ଲୋକମତ ଅନୁସରଣ କରିବା ତାହାଙ୍କ ରାଜନୀତିର ଅପର ଅଙ୍ଗ ଥିଲା ।

ଏହି ସମୟରେ ଯାକବାଇଟମାନେ ପୁନର୍ବାର ଏକ ଷଡ଼ଯନ୍ତ୍ରରେ ଲିପ୍ତ ହୋଇଥିଲେ । ଓ୍ୱାଲପୋଲ ବୁଝିଥିଲେ କୌଣସି ବୈଦେଶିକ ରାଜାଙ୍କ

ସାହାଯ୍ୟ ବିନା ଯାକବାଇଟମାନଙ୍କ ବିଦ୍ରୋହ ସଫଳ ହେବ ନାହିଁ । ସେଥିପାଇଁ ବୈଦେଶିକ ରାଜାମାନଙ୍କ ସହିତ ସନ୍ଧି ସୂତ୍ରରେ ଆବଦ୍ଧ ହୋଇ ଇଉରୋପରେ ଶାନ୍ତି ରକ୍ଷା କରି ବାଣିଜ୍ୟାଦି ଦ୍ୱାରା ଦେଶର ଉନ୍ନତି କରିବା ତାହାଙ୍କର ରାଜନୀତିର ମୂଳ ମନ୍ତ୍ର ଥିଲା ।

ଇଂଲଣ୍ଡର ପ୍ରଧାନ ମନ୍ତ୍ରୀତ୍ୱ ଗ୍ରହଣ କରିବାର କିଛିକାଳ ଉତ୍ତାରେ ଓ୍ୱାଲପୋଲ ସମସ୍ତ କ୍ଷମତା ସ୍ୱୀୟ ହସ୍ତରେ ରଖିବାକୁ ଚେଷ୍ଟା କରିବାରୁ ବନ୍ଧୁମାନଙ୍କ ସହିତ ତାହାଙ୍କର ବିରୋଧ ଉପସ୍ଥିତ ହେଲା । ତାହାଙ୍କ ବନ୍ଧୁମାନେ କ୍ରମେ କ୍ରମେ ତାହାଙ୍କ ପକ୍ଷ ତ୍ୟାଗ କରି ଏକ ବିପକ୍ଷ ଦଳର ସୃଷ୍ଟି କଲେ । ଓ୍ୱାଲପୋଲଙ୍କ ପ୍ରଧାନ

ବିପକ୍ଷଦଳର ସୃଷ୍ଟି (Opposition party) ୧୭୨୪

ବନ୍ଧୁ ପୁଲ୍‌ଟେନି ଏହି ଦଳର ନେତା ହୋଇଥିଲେ । ତାହାଙ୍କ ସହିତ ବଲିନ୍ ବ୍ରୋକର ଆର୍ଲ ମଧ୍ୟ ଯୋଗ ଦେଲେ । ରାଜାଙ୍କ ଜ୍ୟେଷ୍ଠ ପୁତ୍ର ଯୁବରାଜ ଜର୍ଜ ଏହି ଦଳର ପୃଷ୍ଠପୋଷକ ଥିଲେ । ଏହି ବିରୁଦ୍ଧ ଦଳ ଓ୍ୱାଲପୋଲଙ୍କ ସମସ୍ତ କାର୍ଯ୍ୟରେ ବାଧା ଦେବାକୁ ଲାଗିଲେ । ଏହି ବିରୋଧୀ ଦଳ ଗଠିତ ହେବାରୁ ଯାକ୍‌ବାଇଟ୍ ବିଦ୍ରୋହର ଆଶଙ୍କା କେତେକ ପରିମାଣରେ ଦୂର ହୋଇଥିଲା । କାରଣ, ଯେଉଁମାନେ ରାଜା ଓ ଓ୍ୱାଲପୋଲଙ୍କ ଶାସନରେ ଅସନ୍ତୁଷ୍ଟ ହୋଇଥିଲେ ସେମାନେ ଯାକ୍‌ବାଇଟ୍‌ମାନଙ୍କ ସହିତ ଯୋଗ ଦାନ ନ କରି ଯୁବରାଜଙ୍କ ଦଳରେ ଯୋଗ ଦେଲେ । ଓ୍ୱାଲପୋଲ ଆଇର୍ଲାଣ୍ଡରେ ଏକ ନୂତନ ମୁଦ୍ରା ପ୍ରଚଳନ କରିବାକୁ ଇଚ୍ଛା କରୁଥିବାରୁ ଏହି ବିରୋଧୀ ଦଳ ଏହାର ଘୋର ପ୍ରତିବାଦ ଆରମ୍ଭ କଲେ ଏବଂ ସେମାନଙ୍କ ଦ୍ୱାରା ଉତ୍ତେଜିତ ହୋଇ ଆଇର୍ଲାଣ୍ଡର ଲୋକମାନେ ମଧ୍ୟ ଏହାର ଘୋର ବିରୋଧୀ ହୋଇ ଉଠିଲେ । ଓ୍ୱାଲପୋଲ ଏହି ପ୍ରବଳ ଲୋକମତ ଉପେକ୍ଷା ନ କରି ସେଥିରୁ ନିବୃତ୍ତ ହେଲେ ।

ବିରୋଧୀ ଦଳ ସହିତ ଏହିପ୍ରକାର ବିବାଦ ସମୟରେ ୧୭୨୭ ଖ୍ରୀ.ଅ.ରେ ହାନୋଭର ଠାରେ ପ୍ରଥମ ଜର୍ଜଙ୍କ ମୃତ୍ୟୁ ହେଲା ।

ପୁତ୍ର ଜର୍ଜ ଦ୍ୱିତୀୟ ଜର୍ଜ ଆଖ୍ୟା ପ୍ରାପ୍ତ ହୋଇ ଇଂଲଣ୍ଡରେ ସିଂହାସନ ଆରୋହଣ କଲେ ।

---

# ଦ୍ୱିତୀୟ ଜର୍ଜ

ଜନ୍ମ-୧୬୮୩ । ବିବାହ-୧୭୦୫ । ରାଜତ୍ୱ (୧୭୨୭--୧୭୬୦)

ଦ୍ୱିତୀୟ ଜର୍ଜ ପିତାଙ୍କ ତୁଲ୍ୟ ଜଣେ ପ୍ରକୃତରେ ଜରମାନ ଥିଲେ । ଇଂରାଜ ଭାଷା ସହିତ ତାହାଙ୍କର ସାମାନ୍ୟ ପରିଚୟ ଥିଲା ଏବଂ ଇଂରାଜ-

**ଜର୍ଜଙ୍କ ଚରିତ୍ର ଓ ରାଣୀଙ୍କ ପ୍ରଭାବ**

ମାନଙ୍କ ପ୍ରତି ତାହାଙ୍କର ବିଶେଷ ସହାନୁଭୂତି ନ ଥିଲା । ସେ ଅତ୍ୟନ୍ତ କୋପନସ୍ୱଭାବବିଶିଷ୍ଟ ଥିଲେ । ମାତ୍ର ତାହାଙ୍କର ରାଣୀ କେରୋଲିନ୍ ଅତ୍ୟନ୍ତ ବୁଦ୍ଧିମତୀ ଥିଲେ ଏବଂ ସ୍ୱାମୀଙ୍କ ଉପରେ ତାହାଙ୍କର ଯଥେଷ୍ଟ ପ୍ରଭାବ ଥିବାରୁ ଜର୍ଜ ସମସ୍ତ ବିଷୟରେ ତାହାଙ୍କ ଦ୍ୱାରା ଚାଳିତ ହେଉଥିଲେ ।



ଜର୍ଜ ଓ୍ୱାଲପୋଲଙ୍କ ବିରୋଧୀ-ଦଳର ପ୍ରଧାନ ପୃଷ୍ଠପୋଷକ ଥିବାରୁ ସିଂହାସନ ଆରୋହଣ ଉତ୍ତାରେ ଓ୍ୱାଲପୋଲଙ୍କୁ ପଦଚ୍ୟୁତ କରି ତାହାଙ୍କ ସ୍ଥଳରେ ସାର୍ ସ୍ପେନସାର କମ୍ପଟନ ନାମକ ପାର୍ଲିମେଣ୍ଟ ସଭାର ପ୍ରଧାନ ବକ୍ତାଙ୍କୁ ନିଯୁକ୍ତ କଲେ; ମାତ୍ର ରାଣୀ ବୁଝି-ଥିଲେ ଓ୍ୱାଲପୋଲଙ୍କ ବିନା କେହି ସୁଚାରୁରୂପେ ରାଜକାର୍ଯ୍ୟ ନିର୍ବାହ କରି ପାରିବେ ନାହିଁ । କମ୍ପଟନ ମଧ୍ୟ ସମସ୍ତ ବିଷୟରେ

ୱାଲପୋଲଙ୍କର ସାହାଯ୍ୟ ନେବାକୁ ଲାଗିଲେ । ତହୁଁ ଜର୍ଜ ଏଣିଙ୍କ ପରାମର୍ଶମତେ ୱାଲପୋଲଙ୍କୁ ପୁନର୍ବାର ଉକ୍ତ ପଦରେ ପ୍ରତିଷ୍ଠିତ କଲେ ।

ୱାଲପୋଲ ପ୍ରଧାନରେ ପୁନଃ ପ୍ରତିଷ୍ଠିତ ହୋଇ ଦେଶର ଆର୍ଥିକ ଅବସ୍ଥାର ଉନ୍ନତି ବିଷୟରେ ମନୋଯୋଗୀ ହେଲେ । ସେ ବ୍ୟୟ

ୱାଲପୋଲଙ୍କ ଅର୍ଥନୀତି

ସଙ୍କୋଚ କରି ଜାତୀୟ ଋଣ କେତେକ ପରିମାଣରେ ପରିଶୋଧ କଲେ ଏବଂ ବାଣିଜ୍ୟ ବୃଦ୍ଧି ନିମିତ୍ତ କେତେକ ଶୁଳ୍କ ଉଠାଇ ଦେଇଥିଲେ ।

ସେ ସମୟରେ ବହୁପରିମାଣରେ ମଦ୍ୟ ବିଦେଶରୁ ଇଂଲଣ୍ଡକୁ ଆମଦାନୀ ହେଉଥିଲା ଏବଂ ଆମଦାନୀ ବନ୍ଦରଠାରେ ସେଥିରୁ ଯଥେଷ୍ଟ

ଏକ୍ସାଇଜ ବିଲ୍ (Excise Bill)

କର ଆଦାୟ ହେଉଥିଲା । ଏହି କରରୁ ମୁକ୍ତିଲାଭ ଉଦ୍ଦେଶ୍ୟରେ ବହୁବ୍ୟକ୍ତି ଗୁପ୍ତଭାବରେ ବହୁ ମଦ୍ୟ ଆମଦାନୀ କରୁଥିଲେ (Smuggling) ଏହାର ପ୍ରତିକାରକଳ୍ପେ ୱାଲପୋଲ୍ ଉକ୍ତ ମଦ୍ୟକର ହ୍ରାସ କରି ତାହା ଆମଦାନୀ ହେଉଥିବା ବନ୍ଦରଠାରେ ଆଦାୟ ନ କରି ବିକ୍ରୟ ସ୍ଥଳରୁ ଆଦାୟ କରିବାକୁ ଚେଷ୍ଟା କରିଥିଲେ । ମାତ୍ର ତାହାଙ୍କର ବିରୋଧୀ ଦଳ ଏହାର ଘୋର ପ୍ରତିବାଦ କରିବାରୁ ଓ ବ୍ୟବସାୟୀମାନେ ବିରୋଧୀ ଦଳ ସହିତ ଯୋଗ ଦେବାରୁ ସେ ସେଥିରୁ ନିରସ୍ତ ହୋଇଥିଲେ ।

୧ । ଫ୍ରାନ୍ସର ଲୋକମାନେ ଆଶଙ୍କା କରିଥିଲେ ଯେ, ତାହାଙ୍କର ରାଜା ପଞ୍ଚଦଶ ଲୁଇ ଅପୁତ୍ରକ ହୋଇ ପ୍ରାଣତ୍ୟାଗ କଲେ ତାହାଙ୍କ ପିତୃବ୍ୟ

ସ୍ପେନ ସହିତ କଳହ

ସ୍ପେନର ରାଜା ଫିଲିପ ଉତ୍‌ରେଚ୍ଟ ସନ୍ଧି ଅମାନ୍ୟ କରି ଫ୍ରାନ୍ସ ସିଂହାସନ ଅଧିକାର କରିବେ । ସେଥିପାଇଁ ଅର୍ଲିଏନ୍ସ ପ୍ରଦେଶରେ ଡିଉକ୍ ସ୍ୱୟଂ ଫ୍ରାନ୍ସର ସିଂହାସନ

ଅଧିକାର କରିବା ଆଶାରେ ଏଥିପୂର୍ବେ ଇଂଲଣ୍ଡ ଓ ହଲଣ୍ଡ ସହିତ ଏକ ସନ୍ଧିସୂତ୍ରରେ ଆବଦ୍ଧ ହୋଇଥିଲେ; ମାତ୍ର ବର୍ତ୍ତମାନ ପଞ୍ଚଦଶ ଲୁଇଙ୍କର ପୁତ୍ର ଜାତ ହେବାରୁ ସେ ତାହାଙ୍କ ପିତୃବ୍ୟ ସ୍ପେନର ରାଜା ଫିଲିପଙ୍କ ସହିତ ଏକ ଗୁପ୍ତ ପାରିବାରିକ ସନ୍ଧିରେ ଆବଦ୍ଧ ହୋଇଥିଲେ ( Family contract) । ଏହି ସନ୍ଧିରେ ସ୍ଥିର ହୋଇଥିଲା ଯେ, ସ୍ପେନର ଉପନିବେଶମାନଙ୍କରେ ବାଣିଜ୍ୟ କରିବା ଅଧିକାର ଇଂରାଜମାନଙ୍କ ହସ୍ତରୁ ଗୃହୀତ ହୋଇ ଫ୍ରାନ୍ସକୁ ପ୍ରଦତ୍ତ ହେବ ଏବଂ ଜିବ୍ରାଲ୍ଟାର ଇଂରାଜମାନଙ୍କ ହସ୍ତରୁ ପୁନରୁଦ୍ଧାର କରିବା ପାଇଁ ଫ୍ରାନ୍ସ ସ୍ପେନକୁ ସାହାଯ୍ୟ କରିବ । ( ୧୭୩୩ ) । ତଦବଧି ଇଂଲଣ୍ଡ ସହିତ ସ୍ପେନର ବନ୍ଧୁତ୍ୱ ଲୋପ ହୋଇଥିଲା ।

୨ । ଇଉଟ୍ରେଚ ସନ୍ଧି ଅନୁସାରେ ଇଂଲଣ୍ଡ ବାର୍ଷିକ ୬୦୦ଟନ୍ ଓଜନର ଦ୍ରବ୍ୟ ଗୋଟିଏ ବାଣିଜ୍ୟପୋତରେ ଘେନି ସ୍ପେନୀୟ ଉପନିବେଶମାନଙ୍କରେ ବାଣିଜ୍ୟ କରିବାର ଅଧିକାର ପ୍ରାପ୍ତ ହୋଇଥିଲା; ମାତ୍ର ଇଂରାଜମାନେ ପ୍ରକାଶ୍ୟଭାବରେ ଗୋଟିଏ ବାଣିଜ୍ୟପୋତରେ ୬୦୦ ଟନ ଓଜନର ଦ୍ରବ୍ୟ ଘେନି ସ୍ପେନୀୟ ଉପନିବେଶମାନଙ୍କରେ ପ୍ରବେଶ କରୁଥିଲେ ସୁଦ୍ଧା ଅନ୍ୟ କେତେଗୁଡ଼ିଏ ଇଂରାଜ ବାଣିଜ୍ୟ-ପୋତ ବାଣିଜ୍ୟ ଦ୍ରବ୍ୟ ଘେନି ଅଦୃଶ୍ୟଭାବରେ ଦୂରରେ ରହୁଥିଲେ ଏବଂ ରାତ୍ରିଯୋଗେ ସେ ସମସ୍ତ ଦ୍ରବ୍ୟ ପ୍ରଥମ ପୋତରେ ରକ୍ଷା କରୁଥିଲେ । ସ୍ପେନର ଲୋକମାନେ ଏହା ଜାଣି ପାରି ଇଂରାଜମାନଙ୍କ ବାଣିଜ୍ୟପୋତ ଅନୁସନ୍ଧାନ କରିବାକୁ ଆରମ୍ଭ କରିବାରୁ ଇଂରାଜ ନାବିକମାନଙ୍କ ସହିତ ସେମାନଙ୍କର ବିବାଦ ଉପସ୍ଥିତ ହେଲା । ଏହି ବିବାଦ ସମୟରେ ସ୍ପେନୀୟମାନେ ଜେନ୍‌କିନ୍‌ସ ନାମକ ଇଂରାଜ ପୋତାଧ୍ୟକ୍ଷଙ୍କର କର୍ଣ୍ଣଦ୍ୱୟ କର୍ତ୍ତନ କଲେ । ଉକ୍ତ ଇଂରାଜ ପୋତାଧ୍ୟକ୍ଷ ପାର୍ଲିମେଣ୍ଟ ସମ୍ମୁଖରେ ସ୍ୱୀୟ କର୍ତ୍ତିତ କର୍ଣ୍ଣଦ୍ୱୟ ଉପସ୍ଥିତ କରି ସ୍ପେନୀୟ ଉପନିବେଶ-ମାନଙ୍କରେ ଇଂରାଜମାନଙ୍କ ପ୍ରତି ସ୍ପେନଅର୍ତ୍ତମାନଙ୍କ ଅତ୍ୟାଚାର ବିଷୟ

ପ୍ରକାଶ କରିବାରୁ ସଭ୍ୟମାନେ କ୍ରୁଦ୍ଧ ହୋଇ ସ୍ପେନ ସହିତ ଯୁଦ୍ଧ ଘୋଷଣା କରିବାକୁ ଉଦ୍‌ଗ୍ରୀବ ହୋଇ ଉଠିଲେ । ଓ୍ୱାଲପୋଲ ଶାନ୍ତିର ପ୍ରୟାସୀ ଥିଲେ ମଧ୍ୟ ପାର୍ଲିମେଣ୍ଟର ଓ ଇଂରାଜମାନଙ୍କ ଅନୁରୋଧକ୍ରମେ ସ୍ପେନ ସହିତ ଯୁଦ୍ଧ ଘୋଷଣା କଲେ (Jenkins earwar) ।

ଓ୍ୱାଲପୋଲ ସମସ୍ତ କ୍ଷମତା ସ୍ୱହସ୍ତରେ ରଖିବାକୁ ଚେଷ୍ଟା କରିବାରୁ ପୂର୍ବ ବନ୍ଧୁମାନେ ତାହାଙ୍କ ପକ୍ଷ ପରିତ୍ୟାଗ କରି ଏକ ବିରୋଧୀ ଦଳ ସୃଷ୍ଟି କରି ତାହାଙ୍କର ସମସ୍ତ କାର୍ଯ୍ୟରେ ପ୍ରତିବାଦ କରୁଥିଲେ । ୧୭୩୩ ଖ୍ରୀ: ଅ: ରେ ତାହାଙ୍କ ପ୍ରଧାନ ସହାୟ ରାଣୀ କାରୋଲିନ୍‌ଙ୍କ ମୃତ୍ୟୁ ହେବାରୁ ଓ୍ୱାଲପୋଲ ସହାୟବିହୀନ ହୋଇ ପଡ଼ିଲେ ଓ ବିରୋଧୀ ଦଳ ଅଧିକ ଶକ୍ତିଶାଳୀ ହୋଇ ଉଠିଲେ । ସ୍ପେନ ସହିତ ଯୁଦ୍ଧ ଉପସ୍ଥିତ ହୁଅନ୍ତେ ପ୍ରଥମ ଅବସ୍ଥାରେ ଇଂରେଜମାନେ କେତେକ ଯୁଦ୍ଧରେ ପରାଜିତ ହୋଇଥିଲେ । ଏହି ପରାଜୟ ନିମିତ୍ତ ଓ୍ୱାଲପୋଲଙ୍କ ବିରୋଧୀ ଦଳର ଉତ୍ତେଜନାରେ ଇଂରେଜମାନେ ତାହାଙ୍କ ପ୍ରତି ଦୋଷାରୋପ କରିବାକୁ ଲାଗିଲେ । ଏହି ସମୟରେ ଇଂଲଣ୍ଡରେ ଏକ ଦୁର୍ଭିକ୍ଷ ଉପସ୍ଥିତ ହୁଅନ୍ତେ ଲୋକମାନେ ଓ୍ୱାଲପୋଲଙ୍କୁ ଦୋଷ ଦେବାକୁ ଲାଗିଲେ । ଏହି ସମସ୍ତ କାରଣରୁ ଓ୍ୱାଲପୋଲ ସ୍ୱୀୟ ପଦ ପରିତ୍ୟାଗ କଲେ ଓ ଅକ୍‌ସଫୋର୍ଡର ଅର୍ଲରୂପେ ବାର୍ଷିକ ୪୦୦୦ ପାଉଣ୍ଡ ବୃତ୍ତି ଲାଭ କରି ହାଉସ୍ ଅଫ୍ ଲର୍ଡସର ସଭ୍ୟଶ୍ରେଣୀ ଭୁକ୍ତ ହେଲେ (୧୭୪୨) ।

ଓ୍ୱାଲପୋଲଙ୍କ ପତନ ୧୭୪୨

ଓ୍ୱାଲପୋଲ ପଦ ତ୍ୟାଗ କରନ୍ତେ ନୂତନ ମନ୍ତ୍ରୀ ହେନେରୀ ପେଲ-ହାମ ତାହାଙ୍କ ଶାନ୍ତିନୀତି ପରିତ୍ୟାଗ କରି ରଣନୀତି ଅବଲମ୍ବନ କଲେ ଏବଂ ତତ୍କାଳୀନ ଇଉରୋପୀୟ ଯୁଦ୍ଧରେ ଯୋଗ ଦେଲେ । ଇତିପୂର୍ବେ ୧୭୪୦ ଖ୍ରୀ: ଅ:ରେ ଇଉରୋପରେ ଅଷ୍ଟ୍ରିଆର ଉତ୍ତରାଧିକାର ନିମିତ୍ତ ଏକ ଘୋର ରଣ ଆରମ୍ଭ ହୋଇଥିଲା । ଏହାର କାରଣ, ଅଷ୍ଟ୍ରିୟାର ରାଜାଙ୍କର ପୁତ୍ର ସନ୍ତାନ ନ ଥିବାରୁ ମୃତ୍ୟୁ ପୂର୍ବରୁ ସେ ଇଉରୋପର ରାଜନ୍ୟବର୍ଗଙ୍କୁ ନେଇ ଏକ ସନ୍ଧି କରି ସ୍ଥିର କରିଥିଲେ ଯେ, ତାହାଙ୍କ ମୃତ୍ୟୁ ଅନ୍ତେ ତାହାଙ୍କ କନ୍ୟା ମେରିୟା ଥେରେଶା ଅଷ୍ଟ୍ରିୟା ପ୍ରାପ୍ତ ହେବେ (Pragmatic Sanction); ମାତ୍ର ଅଷ୍ଟ୍ରିୟାର ରାଜାଙ୍କର ମୃତ୍ୟୁ ଅନନ୍ତେ ନିକଟ ସମ୍ବନ୍ଧ ହେତୁ ପ୍ରୁଶିୟାର ରାଜା ଅଷ୍ଟ୍ରିୟା ଅଧିକୃତ ସାଇଲେସିଆ ଅଧିକାର କଲେ ଏବଂ ବେଭେରିଆର ରାଜା ଅଷ୍ଟ୍ରିୟା ଦାବି କଲେ । ଫ୍ରାନ୍‌ସ ଓ ସ୍ପେନର ରାଜା ବେଭେରିଆର ପକ୍ଷ ଅବଲମ୍ବନ କରିଥିଲେ ଏବଂ ଇଂଲଣ୍ଡ, ସ୍ପେନ ଓ ଫ୍ରାନସର ବିରୁଦ୍ଧ ପକ୍ଷ ଅବଲମ୍ବନ କରି ଅଷ୍ଟ୍ରିୟାର ରାଣୀ ମେରିୟାଙ୍କ ସହିତ ଯୋଗ ଦେଲେ ।

**ଅଷ୍ଟ୍ରିୟାର ଉତ୍ତରାଧିକାରଘଟିତ ଯୁଦ୍ଧ (War of Austrian succession) ୧୭୪୦—୧୭୪୮**

ଇଂଲଣ୍ଡର ରାଜା ଦ୍ୱିତୀୟ ଜର୍ଜ ସ୍ୱୟଂ ଏହି ଯୁଦ୍ଧରେ ଯୋଗଦାନ କରି ଇଉରୋପର ରଣକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଫରାସୀମାନଙ୍କୁ ଡେଟିଂଜେନ ଯୁଦ୍ଧରେ ପରାଭୂତ କଲେ; ମାତ୍ର ଯେଉଁ ବିପଦ ଆଶଙ୍କା କରି ଓ୍ୱାଲପୋଲ ଇଂଲଣ୍ଡକୁ ଫ୍ରାନ୍‌ସ ସହିତ ସନ୍ଧିସୂତ୍ରରେ ଆବଦ୍ଧ ରଖିଥିଲେ, ସେହି ବିପଦ ବର୍ତ୍ତମାନ ଇଂଲଣ୍ଡରେ ଉପସ୍ଥିତ ହେଲା । ଫ୍ରାନସର ରାଜା ପ୍ରତିଶୋଧ ଗ୍ରହଣାର୍ଥ ୧୫୦୦୦ ସୈନ୍ୟ ସହିତ ଦ୍ୱିତୀୟ ଜେମସଙ୍କ ପୌତ୍ର ଚାର୍ଲସ ଏଡୱାର୍ଡଙ୍କୁ ଇଂଲଣ୍ଡ ଆକ୍ରମଣାର୍ଥ ପ୍ରେରଣ କଲେ । ଝଟିକାବଶତଃ ଏହି ସୈନ୍ୟଦଳ ତତ୍କାଳରେ ଇଂଲଣ୍ଡରେ ଉପସ୍ଥିତ ହୋଇ ପାରିଲେ

**ଡେଟିଂଜେନ ଯୁଦ୍ଧ ୧୭୪୩**

ନାହିଁ; ମାତ୍ର ତତ୍ପରବର୍ଷ ଫରାସୀ ସେନାପତି ମାର୍ଶାଲ ସାକ୍ସ ଇଂରାଜମାନଙ୍କୁ 'ଫଣ୍ଟନଏ' ନାମକ ସ୍ଥାନରେ ପରାଜିତ କରିବାରୁ ଚାର୍ଲସ ଏଡୱାର୍ଡ (Young Pretender) ସ୍ୱୀୟ ପୈତୃକ ରାଜ୍ୟ ଉଦ୍ଧାରାର୍ଥ ସ୍କଟଲଣ୍ଡର ଉତ୍ତରାଞ୍ଚଳରେ ଉପସ୍ଥିତ ହେଲେ (୧୭୪୫)।

ସ୍କଟଲଣ୍ଡର ଉତ୍ତରାଞ୍ଚଳର ଅଧିକାଂଶ ବ୍ୟକ୍ତି ଯାକବାଇଟ ଥିବାରୁ ଚାର୍ଲସ ଅଳ୍ପଦିନ ମଧ୍ୟରେ ପ୍ରାୟ ୧୫୦୦ ସୈନ୍ୟ ସଂଗ୍ରହ କରି ସେମାନଙ୍କ ସାହାଯ୍ୟରେ ଏଡିନବରା ଅଧିକାର କଲେ ଓ ତାହାଙ୍କ ସୈନ୍ୟଦଳ ସାରଜନ କୋପଙ୍କ ଅଧୀନ ଇଂରାଜ ସୈନ୍ୟମାନଙ୍କୁ ଏଡିନବାରୁ ୯ ମାଇଲ ଦୂରରେ 'ପ୍ରେଷ୍ଟନପେନ' ନାମକ ସ୍ଥାନରେ ବିଧ୍ୱସ୍ତ କଲେ। ସ୍କଟଲଣ୍ଡ ତାହାଙ୍କ ପଦାନତ ହେଲା। ଅଳ୍ପଦିନ ମଧ୍ୟରେ ଚାର୍ଲସ ପ୍ରାୟ ୭୦୦୦ ସୈନ୍ୟ ସଂଗ୍ରହ କରି ଇଂଲଣ୍ଡ ଆକ୍ରମଣାର୍ଥ ଅଗ୍ରସର ହେଲେ। ତାହାଙ୍କର ଆଶା ଥିଲା ଯେ, ଇଂରାଜମାନେ ମଧ୍ୟ ସ୍ୱତ ଯାକୋବାଇଟମାନଙ୍କ ଭଳି ତାହାଙ୍କ ସହିତ ଯୋଗ ଦେବେ ଏବଂ ଏହି ଆଶା ପୋଷଣ କରି ସେ ଡର୍ବି ପର୍ଯ୍ୟନ୍ତ ଅଗ୍ରସର ହେଲେ; ମାତ୍ର ଇଂରେଜମାନେ ତାହାଙ୍କ ପକ୍ଷରେ ଯୋଗ ନ ଦେବାରୁ ସେ ଅନୁଚରମାନଙ୍କ ପରାମର୍ଶମତେ ସ୍କଟଲଣ୍ଡକୁ ପ୍ରତ୍ୟାବର୍ତ୍ତନ କଲେ। ଷ୍ଟାରଲିଂ ନିକଟରେ ଫଲକାର୍କ ନାମକ ସ୍ଥାନରେ ଏକଦଳ ଇଂରେଜ ସେନା ତାହାଙ୍କ ଦ୍ୱାରା ପରାଜିତ ହେଲେ; ମାତ୍ର କମ୍ବରଲଣ୍ଡର ଡିଉକଙ୍କ ନେତୃତ୍ୱରେ ଇଂରେଜମାନେ ତାହାଙ୍କୁ 'କୁଲୋଡନ' ନାମକ ସ୍ଥାନରେ ସମ୍ପୂର୍ଣ୍ଣରୂପେ ପରାଜିତ କଲେ। ତାହାଙ୍କ ସୈନ୍ୟଦଳ ଛତ୍ରଭଙ୍ଗ ହୋଇ ପଳାୟନ କଲେ। ତଦନନ୍ତର ଚାର୍ଲସ ପ୍ରାୟ ୫ ମାସ ସ୍କଟଲଣ୍ଡର ନାନାସ୍ଥାନରେ ଛଦ୍ମବେଶରେ ଭ୍ରମଣ କରି ଅବଶେଷରେ ଫ୍ରାନ୍ସକୁ ପଳାୟନ କଲେ।

ଚାର୍ଲସ ଏଡୱାର୍ଡଙ୍କ ନେତୃତ୍ୱରେ ଯାକବାଇଟ ବିଦ୍ରୋହ-୧୭୪୫

ହାଇଲଣ୍ଡରମାନେ ଚାର୍ଲସଙ୍କ ସହିତ ଯୋଗଦାନ କରି ଇଂରାଜ ରାଜାଙ୍କର ବିରୋଧୀ ହୋଇଥିବାରୁ ସେମାନଙ୍କ ବିରୁଦ୍ଧରେ କଠୋର ନିୟମମାନ ପ୍ରବର୍ତ୍ତିତ ହେଲା । ସେମାନେ ଅସ୍ତ୍ରଧାରଣ କିମ୍ବା ଜାତୀୟ ବସ୍ତ୍ର ପରିଧାନ କରିବାକୁ ନିଷିଦ୍ଧ ହୋଇଥିଲେ । ହାଇଲଣ୍ଡର ଜମିଦାରମାନଙ୍କର ସ୍ୱୀୟ ପ୍ରଜାମାନଙ୍କ ଉପରେ କୌଣସି ଅଧିକାର ରହିଲା ନାହିଁ । ଏହି ସମସ୍ତ କାରଣରୁ ହାଇଲଣ୍ଡର-ମାନେ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇଥିଲେ । ମାତ୍ର ପ୍ରାୟ ୧୨ ବର୍ଷ ଉତ୍ତାରେ ଚାଥାମର ଅର୍ଲପିଟଙ୍କଦ୍ୱାରା ସେମାନେ ଇଂଲଣ୍ଡର ସୈନ୍ୟଦଳ ମଧ୍ୟରେ ଗୃହୀତ ହେବାରୁ ଏହି ଅସନ୍ତୋଷ ଦୂର ହୋଇଥିଲା ଏବଂ ସେମାନେ ଇଂଲଣ୍ଡର ଶ୍ରେଷ୍ଠ ସୈନ୍ୟଦଳରୂପେ ଗଣ୍ୟ ହୋଇଥିଲେ ।

ହାଇଲଣ୍ଡରମାନଙ୍କର ଅସ୍ତ୍ରଧାରଣ ନିଷେଧ ୧୭୪୬

କମ୍ବରଲଣ୍ଡର ଡ୍ୟୁକ ସ୍କଟଲଣ୍ଡରେ ଶାନ୍ତିସ୍ଥାପନ କରି ଫ୍ରାନ୍ସ ବିରୁଦ୍ଧରେ ଇଉରୋପର ରଣକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ; ମାତ୍ର 'ଲଫିଲ୍ଡ' ନାମକ ସ୍ଥାନରେ ଫରାସୀମାନେ ତାହାଙ୍କୁ ସମ୍ପୂର୍ଣ୍ଣରୂପେ ପରାଜିତ କଲେ । ଇତିମଧ୍ୟରେ ଇଂରାଜମାନେ ଉତ୍ତର ଆମେରିକାସ୍ଥ ଫରାସୀ ଉପନିବେଶ କେପ୍‌ବ୍ରିଟେନର ପ୍ରଧାନ ନଗର ଲୁଇବର୍ଗ ଅଧିକାର କରିଥିଲେ; କିନ୍ତୁ ୧୭୪୮ ଖ୍ରୀ: ଅ: ରେ ଏହି ଇଉରୋପୀୟ ସମର ଅବସାନ ହୁଅନ୍ତେ ଆଲେ-ଚାପେଲ୍ ନାମକ ସ୍ଥାନରେ ଯେଉଁ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା, ତଦନୁଯାୟୀ ମେରିଆ ଥେରେଶା ଅଷ୍ଟ୍ରିୟା ସାମ୍ରାଜ୍ୟ ଏବଂ ପ୍ରୁଶିୟାର ରାଜା ସାଇଲେସିଆ ପ୍ରାପ୍ତ ହେଲେ । ଅପର ରାଜାମାନେ ପରସ୍ପର ଅଧିକୃତ ପ୍ରଦେଶମାନ ପ୍ରତ୍ୟର୍ପଣ କଲେ ।

ଅଲେ-ଚାପେଲ ସନ୍ଧି ୧୭୪୮ (Treaty of Aix-la-chappelle)

ଯୁଲିୟସ୍ ସିଜାରଙ୍କ ପ୍ରବର୍ତ୍ତିତ ମତାନୁଯାୟୀ ଇଉରୋପରେ ପୂର୍ବେ ବର୍ଷ କଳନା କରାଯାଉଥିଲା; ମାତ୍ର ଏଲିଜାବେଥଙ୍କ ସମୟରେ ୧୫୮୨ ଖ୍ରୀ. ଅ: ରେ ପୋପଙ୍କ ନିର୍ଦ୍ଦେଶମତେ ଇଉରୋପରେ ନୂତନମତେ ବର୍ଷ କଳନା ହେବାକୁ ଲାଗିଲା । ଏଲିଜାବେଥଙ୍କ ସହିତ ପୋପଙ୍କର ବିବାଦ ଥିବାରୁ ଇଂଲଣ୍ଡର ନୂତନମତେ ବର୍ଷ କଳନା ହୋଇ ନ ଥିଲା । ସୁତରାଂ ୧୭୫୨ ଖ୍ରୀ. ଅ. ରେ ଇଂଲଣ୍ଡର ତାରିଖ ଇଉରୋପର ତାରିଖ ଅପେକ୍ଷା ୧୧ଦିନ ଅଧିକ ଥିଲା । ବର୍ତ୍ତମାନ ପାର୍ଲିମେଣ୍ଟ ଆଦେଶରେ ନୂତନମତେ ବର୍ଷ କଳନା ଆରମ୍ଭ ହେଲା । ଉକ୍ତ ୧୧ଦିନ ହିସାବ ନ କରି ଇଉରୋପ ସହିତ ତାରିଖ ହିସାବ ହେଲା । ପୂର୍ବେ ମାର୍ଚ୍ଚ ତା ୨୫ ରିଖ ଦିବସ ବର୍ଷ ଆରମ୍ଭ ହେଉଥିଲା । ବର୍ତ୍ତମାନ ତାରିଖ ଜାନୁୟାରୀଠାରୁ ବର୍ଷ ଆରମ୍ଭ ହେଲା ।

**ଇଂଲଣ୍ଡର ବର୍ଷପଞ୍ଜିକା ସଂଶୋଧନ – ୧୭୫୨**

ପୂର୍ବେ ଯୁବକଯୁବତୀମାନେ ଗୃହରୁ ପଳାୟନ କରି ପିତାମାତାଙ୍କ ଅଗୋଚରରେ ଫ୍ଲିଟ ଷ୍ଟ୍ରିଟ ନାମକ କାରାଗାର ନିକଟରେ ରହିଥିବା କାରାରୁଦ୍ଧ ଅର୍ଥଲୋଲୁପ ଧର୍ମଯାଜକମାନଙ୍କଦ୍ୱାରା ବିବାହସୂତ୍ରରେ ଆବଦ୍ଧ ହେଉଥିଲେ । ଏହା ନିବାରଣାର୍ଥ ଲର୍ଡ ହାର୍ଡଉଇକଙ୍କଦ୍ୱାରା ଆଗତ ଏକ ଆଇନ ବିଧିବଦ୍ଧ ହେଲା ।

**ବିବାହ ବିଧି, ୧୭୫୩**

୧୫୪ ବାଣିଜ୍ୟ ବିସ୍ତାର ଓ ଉପନିବେଶ ସ୍ଥାପନ ବିଷୟରେ ଫରାସୀମାନେ ଇଂରେଜମାନଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ଥିଲେ । ଭାରତ ସହିତ ବାଣିଜ୍ୟ ହେତୁ ଇଂରାଜମାନେ ଏଲିଜାବେଥଙ୍କଠାରୁ ଏକ ସନନ୍ଦ ପାଇ ଇଷ୍ଟ ଇଣ୍ଡିଆ କମ୍ପାନୀ ଗଠନ କରି କଲିକତା, ମାନ୍ଦ୍ରାଜ ଓ ବମ୍ବେଠାରେ ବାଣିଜ୍ୟ କରୁଥିଲେ । ଫରାସୀମାନେ ମଧ୍ୟ ତଦ୍ରୂପ ଏକ କମ୍ପାନୀ ଗଠନ କରି ପଣ୍ଡିଚେରୀ, କାରିକୋଲ, ମାହି ଓ

**ଇଂରାଜ ଓ ଫରାସୀମାନଙ୍କ ମଧ୍ୟରେ ବିବାଦ (ସପ୍ତବର୍ଷବ୍ୟାପୀ ଯୁଦ୍ଧ)**

ଚନ୍ଦନନଗରଠାରେ ବାଣିଜ୍ୟ କରୁଥିଲେ; ମାତ୍ର ଉଭୟ ଜାତି ମଧ୍ୟରେ ଈର୍ଷା ବିଦ୍ୟମାନ ଥିଲା ଏବଂ ଏକଜାତି ଅପରକୁ ଭାରତରୁ ବହିଷ୍କୃତ କରି ଦେଶର ସମସ୍ତ ବାଣିଜ୍ୟ ହସ୍ତଗତ କରିବାକୁ ସଚେଷ୍ଟ ଥିଲା । ଏହି ଈର୍ଷା ହେତୁ ଉଭୟ ଜାତି ମଧ୍ୟରେ ରଣଭେରୀ ବାଜି ଉଠେ ଭାରତରେ ପ୍ରଥମ ଓ ଦ୍ୱିତୀୟ କର୍ଣ୍ଣାଟ ସମର ଅଭିନୀତ ହୋଇଥିଲା ।

ଭାରତର ଦ୍ୱିତୀୟ କର୍ଣ୍ଣାଟ ସମର ଅବସାନ ହେଲାମାତ୍ରକେ ଉତ୍ତର ଆମେରିକାରେ ଉପନିବେଶ ସ୍ଥାପନାର୍ଥ ଉଭୟ ଜାତି ମଧ୍ୟରେ ବିବାଦ ଆରମ୍ଭ ହେଲା । ଉତ୍ତର ଆମେରିକାର ପୂର୍ବ ଉପକୂଳରେ "ଅଲିଘେନି" ପର୍ବତମାଳାର ପୂର୍ବଭାଗରେ ଇଂରାଜମାନଙ୍କର ୧୩ ଗୋଟି ସମୃଦ୍ଧିମନ୍ତ ଉପନିବେଶ ଥିଲା । ତାହାର ଉତ୍ତରଭାଗରେ କାନଡା ପ୍ରଦେଶ ଫରାସୀ-ମାନଙ୍କ ଅଧିକୃତ ଥିଲା ଏବଂ ଦକ୍ଷିଣ ପଶ୍ଚିମଭାଗରେ ଅବସ୍ଥିତ ଲୁସିଆନା ପ୍ରଦେଶ ମଧ୍ୟ ଫରାସୀ-ଅଧିକୃତ ଥିଲା । ଅଲିଘେନି ପର୍ବତମାଳାର ପଶ୍ଚିମ-ଭାଗରେ ଅବସ୍ଥିତ ପ୍ରଦେଶ ଆମେରିକାର ଆଦିମ ଅଧିବାସୀମାନଙ୍କର ଅଧିକୃତ ଥିଲା ଏବଂ ଉକ୍ତ ପ୍ରଦେଶ ଇଂରାଜମାନେ ହସ୍ତଗତ କରିବାକୁ ଚେଷ୍ଟା କରିବାରୁ ଫରାସୀମାନଙ୍କ ସହିତ ବିବାଦ ଉପସ୍ଥିତ ହେଲା । ଫରାସୀମାନେ ଓହିଓ ନଦୀ କୂଳରେ କାନଡାର ଶାସନକର୍ତ୍ତାଙ୍କ ନାମାନୁସାରେ ଡୁକେନ ନାମକ ଏକ ଦୁର୍ଗ ନିର୍ମାଣ କରିଥିଲେ ଏବଂ ଉକ୍ତ ଦୁର୍ଗ ସହିତ ସମରେଖାରେ ଅବସ୍ଥିତ ନାଏଗ୍ରା ଓ ଟିକନ୍ ଡେରୋଗା ନାମକ ଦୁର୍ଗଦ୍ୱୟ ମଧ୍ୟରେ ଅନ୍ୟ କେତେଗୁଡ଼ିଏ କ୍ଷୁଦ୍ର ଦୁର୍ଗ ନିର୍ମାଣ କରି ଇଂରେଜମାନଙ୍କୁ ପଶ୍ଚିମଭାଗକୁ ଅଗ୍ରସର ହେବାରେ ବାଧା ଦେବାକୁ ଲାଗିଲେ । ଏଥିରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଆମେରିକାରେ ରଣଭେରୀ ବାଜି ଉଠିଲା (୧୭୫୫) ।

ଇଉରୋପର ସପ୍ତବର୍ଷବ୍ୟାପୀ ଯୁଦ୍ଧାରମ୍ଭ ୧୭୫୬

ଏ-ଲେ-ଶାପେଲ ସନ୍ଧି ଅନୁସାରେ ପ୍ରୁଶିୟାର ରାଜା ଦ୍ୱିତୀୟ ଫ୍ରେଡେରିକ ସାଇଲେସିଆ ପ୍ରାପ୍ତ ହୋଇଥିଲେ; ମାତ୍ର ଏଥିରେ ଅଷ୍ଟ୍ରିଆର ସମ୍ରାଜ୍ଞୀ ମେରିଅଥେରିସା ସନ୍ତୁଷ୍ଟ ନ ହୋଇ ତାହା ଅଧିକାର କରିବାକୁ ଉଦ୍ୟୋଗ କଲେ । ଫ୍ରାନ୍ସ, ସୁଇଡେନ, ରୁଷିଆ, ସାକ୍ସୋନୀର ରାଜାମାନେ ପ୍ରୁଷିୟା ପ୍ରତି ଈର୍ଷାବଶତଃ ଅଷ୍ଟ୍ରିଆ ସହିତ ଯୋଗଦାନ କଲେ । ଫ୍ରାନ୍ସ ସହିତ ଇଂଲଣ୍ଡର ବିବାଦ ଥିବାରୁ ଇଂରାଜମାନେ ପ୍ରୁଶିୟା ସହିତ ଯୋଗ ଦାନ କରି ଫ୍ରାନ୍ସ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଫ୍ରାନ୍ସ ସହିତ ଇଂଲଣ୍ଡର ଏହି ଯୁଦ୍ଧ ଇଉରୋପ, ଆମେରିକା ଓ ଭାରତବର୍ଷ, ଏହି ତିନ ମହାଦେଶରେ ସଂଘଟିତ ହୋଇଥିଲା ।

ଯୁଦ୍ଧର ପ୍ରଥମ ଭାଗ

୧୭୫୪ରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ହେନେରୀ ପେଲ୍‌ହାମଙ୍କ ମୃତ୍ୟୁ ହେବାରୁ ତାହାଙ୍କ ଭ୍ରାତା ନିଉକାସଲର ଡିଉକ ପ୍ରଧାନ ମନ୍ତ୍ରିପଦ ପ୍ରାପ୍ତ ହେଲେ; ମାତ୍ର ସେ ସମର ନୀତିରେ ସମ୍ପୂର୍ଣ୍ଣ ଅଜ୍ଞ ଥିବାରୁ ଯୁଦ୍ଧର ପ୍ରଥମ ଭାଗରେ ଇଂରେଜମାନେ ସର୍ବତ୍ର ପରାଜିତ ଓ ବିପନ୍ନ ହୋଇଥିଲେ । ଭାରତବର୍ଷରେ କଲିକତା ଇଂରାଜମାନଙ୍କର ହସ୍ତଚ୍ୟୁତ ହେଲା ଓ ୧୨୩ଜଣ ଇଂରାଜ "ଅନ୍ଧକୂପ"ରେ ନିହତ ହେଲେ (୧୭୫୬) ।

ଆମେରିକାରେ ଜେନେରାଲ ବ୍ରାଡକ ୨୦୦୦ ସୈନ୍ୟସହ ଓହିଓ ନଦୀକୂଳରେ ଅବସ୍ଥିତ ଫରାସୀମାନଙ୍କର ଅଧିକୃତ ଡୁକେନ ଦୁର୍ଗ ହସ୍ତଗତ କରିବାକୁ ପ୍ରେରିତ ହୋଇଥିଲେ । ମାତ୍ର ସେ ୭୦୦ ସୈନ୍ୟ ସହ ଫରାସୀମାନଙ୍କ ହସ୍ତରେ ନିହତ ହେଲେ । ଜର୍ଜ ୱାସିଂଟନ ନାମକ ଇଂରାଜ ଉପନିବେଶର ଏକ ସେନାନାୟକଙ୍କ ବୁଦ୍ଧି କୌଶଳରେ ଅବଶିଷ୍ଟ ଇଂରାଜସେନା ରକ୍ଷା ପାଇଲେ (୧୭୫୬) । ଇତରାପରେ ଫରାସୀମାନେ ଇଂରାଜ ଅଧିକୃତ ମିନର୍କା ଅଧିକାର କରିଥିଲେ । ନୌବହର ଅଧ୍ୟକ୍ଷ ବ୍ୟାଙ୍ଗ୍ ଦଶଗୋଟି ରଣତରୀ ସହ ମିନର୍କା ପୁନରଧିକାର କରିବାକୁ

ପ୍ରେରିତ ହୋଇଥିଲେ; ମାତ୍ର ସେ ଫରାସୀମାନଙ୍କର ସଂଖ୍ୟାଧିକ୍ୟବଶତଃ ସାମାନ୍ୟ ଯୁଦ୍ଧ ପରେ ସେଠାରୁ ପ୍ରତ୍ୟାବର୍ତ୍ତନ କରିବାରୁ ସାମରିକ ଆଇନମତେ (Court Martial) ତାହାଙ୍କୁ ପ୍ରାଣଦଣ୍ଡ ପ୍ରଦତ୍ତ ହେଲା ।

ପ୍ରୁଶିଆର ରାଜା ଫ୍ରେଡେରିକଙ୍କ ସାହାଯ୍ୟାର୍ଥ କମ୍ବରଲାଣ୍ଡର ଡ୍ୟୁକ୍ ପ୍ରେରିତ ହୋଇଥିଲେ; ମାତ୍ର ସେ ଫରାସୀମାନଙ୍କଦ୍ୱାରା ପରାଜିତ ହୋଇ "କ୍ଲଷ୍ଟାର ଜେଭନ" ନାମକ ସ୍ଥାନରେ ହନୋଭର ପ୍ରଦେଶ ସେମାନଙ୍କ ହସ୍ତରେ ସମର୍ପଣ କରି ରଣକ୍ଷେତ୍ରରୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଇଂରେଜମାନେ ସର୍ବତ୍ର ପରାଜିତ ହେବାରୁ ପ୍ରଧାନ ମନ୍ତ୍ରୀ ନଉକାସଲ୍ ଉଇଲିୟମ୍ ପିଟଙ୍କୁ (Great Commoner) ସ୍ୱୀୟ ସହକାରୀ ରୂପେ

**ଯୁଦ୍ଧର ଦ୍ୱିତୀୟ ଭାଗ (ପିଟଙ୍କର ରାଜନୀତି)**

ଗ୍ରହଣ କରି ସମର ବିଭାଗ ତାହାଙ୍କ ହସ୍ତରେ ସମର୍ପଣ କଲେ । ପିଟ ସ୍ୱୀୟ ଅସାଧାରଣ ପ୍ରତିଭା ଓ ରଣନୀତି ହେତୁ ଇଂଲଣ୍ଡର ନଷ୍ଟ ଗୌରବ ପୁନରୁଦ୍ଧାର କଲେ । ପିଟ୍ ଇଉରୋପରେ ଫରାସୀମାନଙ୍କ ସହିତ ଯୁଦ୍ଧରେ ସମ୍ମୁଖୀନ ନ ହୋଇ ପ୍ରୁଶିଆର ରାଜା ଫ୍ରେଡେରିକଙ୍କୁ ଯୁଦ୍ଧାର୍ଥ ବାର୍ଷିକ ୭ଲକ୍ଷ ପାଉଣ୍ଡ ଦେବାକୁ ପ୍ରତିଶ୍ରୁତ ହୋଇଥିଲେ । ଫରାସୀମାନେ ପ୍ରୁଶିଆ ସହ ଯୁଦ୍ଧରେ ନିଯୁକ୍ତ ଦେଖି ସେ ଏହି ସୁଯୋଗରେ ଫରାସୀ ଉପନିବେଶମାନ ଆକ୍ରମଣ କରିଥିଲେ ଏବଂ ତଦୁଦ୍ଦେଶ୍ୟରେ ସେ ଆମେରିକାକୁ ନବୀନ କର୍ମଠ ସେନାପତିମାନଙ୍କ ଅଧୀନରେ ତାହାଙ୍କ ନୂତନ ବାହିନୀର



ଉଇଲିୟମ ପିଟ୍

ସୈନ୍ୟଦଳ ପ୍ରେରଣ କରୁଥିଲେ ଏବଂ ଫରାସୀମାନେ ଯେପରି ଉପନିବେଶ-ମାନଙ୍କୁ ଯଥେଷ୍ଟ ସାହାଯ୍ୟ ପ୍ରଦାନ କରି ନ ପାରନ୍ତି, ସେଥିପାଇଁ ସେ ଫ୍ରାନ୍ସର ଉପକୂଳ ଭାଗରେ ଇଂରାଜ ରଣତରୀମାନଙ୍କୁ ପ୍ରହରୀ କାର୍ଯ୍ୟରେ ନିଯୁକ୍ତ କରୁଥିଲେ ।

ଭାରତର ଘଟଣା

ବଙ୍ଗର ନବାବ ସିରାଜଦ୍ଦୌଲା ୧୭୫୬ ଖ୍ରୀ: ଅ: ରେ କଲିକତା ଓ ଫୋର୍ଟ ଉଇଲିୟମ ଇଂରାଜମାନଙ୍କଠାରୁ ହସ୍ତଗତ କରୁଥିଲେ । ମାତ୍ର କ୍ଲାଇଭ ମାନ୍ଦ୍ରାଜରୁ ଆଗମନ କରି କଲିକତା ପୁନରୁଦ୍ଧାର କରୁଥିଲେ । ତଦନନ୍ତର ସିରାଜ-ଦ୍ଦୌଲା ଇଂରାଜମାନଙ୍କୁ ବଙ୍ଗଦେଶରୁ ବହିଷ୍କୃତ କରିବା ପାଇଁ ଫରାସୀମାନଙ୍କ ସହ ଚକ୍ରାନ୍ତ କରିବାରୁ କ୍ଲାଇଭ ପଲାସି ଯୁଦ୍ଧରେ ତାହାଙ୍କୁ ପରାଜିତ କରି ବଙ୍ଗଦେଶ ଅଧିକାର କଲେ (୧୭୫୭) ।

ମାନ୍ଦ୍ରାଜ ନିକଟରେ ୱାଣ୍ଡିୱାସଠାରେ ଇଂରାଜମାନେ ସାର୍ ଆୟାର୍ କୁଟଙ୍କ ନେତୃତ୍ୱରେ ଫରାସୀମାନଙ୍କୁ ପରାଜିତ କରି ସେମାନଙ୍କ ଅଧିକୃତ ପଣ୍ଡିଚେରୀ ଅଧିକାର କଲେ ଏବଂ ଭାରତରେ ଫରାସୀ ପ୍ରଭାବ ନଷ୍ଟ ହେଲା । (ତୃତୀୟ କର୍ଣ୍ଣାଟ ସମର ଦ୍ରଷ୍ଟବ୍ୟ) ।

ଉତ୍ତର ଆମେରିକାର ଘଟଣା

ପିଟଙ୍କ ରଣନୀତି ହେତୁ ଇଂରାଜମାନେ ଆମେରିକାରେ ସେମାନଙ୍କର ଲୁପ୍ତ ଗୌରବ ପୁନରୁଦ୍ଧାର କରୁଥିଲେ । ଇଂରାଜମାନେ ଫରାସୀ ଅଧିକୃତ ଲୁଇସ୍‌ବର୍ଗ ଓ ବ୍ରେଟନ ଅନ୍ତରୀପ ଅଧିକାର କଲେ ଏବଂ "ଓହିଓ" ନଦୀ କୂଳସ୍ଥ ଡୁକ୍ୱେନ ଦୁର୍ଗ ଅଧିକାର କରି ପିଟଙ୍କ ନାମାନୁଯାୟୀ "ପିଟ୍ସ୍-ବର୍ଗ" ନାମ ପ୍ରଦାନ କଲେ । ଇଂରାଜମାନେ "ଟିକନ-ଡେରୋଗା"ଠାରେ ପ୍ରଥମେ ପରାଜିତ ହୋଇଥିଲେ ସତ୍ୟ ଏବଂ ସେମାନଙ୍କ ସେନାପତି ଲର୍ଡ ହାଉଇ ନିହତ ହୋଇଥିଲେ; ମାତ୍ର ଅତି ଅଳ୍ପକାଳ ମଧ୍ୟରେ ଟିକନ୍ ଡେରୋଗା ଫ୍ରାଉନପଏଣ୍ଟ ଓ ନାଏଗ୍ରା ଦୁର୍ଗମାନ ଇଂରାଜମାନଙ୍କର ହସ୍ତଗତ ହୋଇଥିଲା ।

ଫରାସୀ ଅଧିକୃତ କାନଡାର ପ୍ରଧାନ ନଗର କ୍ୱିବେକ ଇଂରାଜମାନଙ୍କଦ୍ୱାରା ଆକ୍ରାନ୍ତ ହେଲା । ତାହା "ସେଣ୍ଟ ଲରେନ୍ସ" ନାମକ ନଦୀକୂଳରେ ଅବସ୍ଥିତ ଥିବାରୁ ଅତ୍ୟନ୍ତ ସୁଦୃଢ଼ ଓ ସୁରକ୍ଷିତ ଥିଲା । ତାହା ସେଣ୍ଟଲରେନ୍ସ ନାମକ ନଦୀକୂଳରେ ଅବସ୍ଥିତ ଏବଂ ତାହାର ଏକ-ପାର୍ଶ୍ୱରେ ଅବ୍ରାହମ ନାମକ ଏକ ଦେବଠ ଅବସ୍ଥିତ ଥିବାରୁ ଅତ୍ୟନ୍ତ ସୁଦୃଢ଼ ଓ ସୁରକ୍ଷିତ ଥିଲା । ଇଂରାଜ ସେନାପତି ଉଲ୍ଫି ରାତ୍ରି ଯୋଗେ ଅବ୍ରାମ ପର୍ବତ ଅତିକ୍ରମ କରି କ୍ୱିବେକ ଆକ୍ରମଣ କଲେ । ଫରାସୀ ସେନାପତି ମଣ୍ଟକାମ୍ ନଗର ରକ୍ଷା ପାଇଁ ଯତ୍ପରୋନାସ୍ତି ଚେଷ୍ଟା କରିଥିଲେ; ମାତ୍ର ତାହାଙ୍କର ସୈନ୍ୟମାନେ ହାଇଲ୍ୟାଣ୍ଡର ସୈନ୍ୟମାନଙ୍କ ସମ୍ମୁଖୀନ ହୋଇ ପାରୁ ନ ଥିଲେ । ମଣ୍ଟକାମ ସ୍ୱୟଂ ନିହତ ହେଲେ ଏବଂ କ୍ୱିବେକ ଇଂରାଜମାନଙ୍କର ହସ୍ତଗତ ହେଲା । ଏହି ଯୁଦ୍ଧରେ ଇଂରାଜ ସେନାପତି ଉଲଫ ମଧ୍ୟ ନିହତ ହୋଇଥିଲେ । କିନ୍ତୁ ମୃତ୍ୟୁପୂର୍ବେ ସେ ଜାଣିଥିଲେ ଯେ, ତାହାଙ୍କର ସମସ୍ତ ଚେଷ୍ଟା ସଫଳ ହୋଇଅଛି । କ୍ୱିବେକ ନଗର ଓ ତତ୍ସହ କାନଡା ପ୍ରଦେଶ ଇଂରାଜମାନଙ୍କର ହସ୍ତଗତ ହୋଇଅଛି । ଏହି ଉଭୟ ବୀରଙ୍କ ମୃତଦେହ ଅବ୍ରାହାମ ପର୍ବତର ଉପରିଭାଗରେ ଗୋଟିଏ କବରରେ ସନ୍ନିବଦ୍ଧ ଓ ତଦୁପରି ଏକ ସ୍ମୃତିଫଳକ ସ୍ଥାପିତ ହୋଇଅଛି (୧୭୫୯) ।

ସେହି ସମୟରେ ଇଉରୋପରେ ମଧ୍ୟ ଫରାସୀମାନେ ସର୍ବତ୍ର ପରାଜିତ ହେଲେ । ବର୍ଣ୍ଣସ୍ ଉଇକର ଡ୍ୟୁକ୍ ଫର୍ଡିନେଣ୍ଡ ଓ୍ୱେଷ୍ଟ ଫାଲିଆ ଇଉରୋପର ପ୍ରଦେଶରେ 'ମିନ୍‌ଡେନ୍ ନାମକ ସ୍ଥାନରେ ଘଟନା ଫରାସୀମାନଙ୍କୁ ପରାଜିତ କରିଥିଲେ । ଆଡ୍‌ମିରାଲ ବସ୍କାଓ୍ୱେନ୍ ପାଞ୍ଚଗୋଟି ଫରାସୀ ରଣପୋତ ପର୍ତ୍ତୁଗାଲ ଉପକୂଳରେ ଧ୍ୱଂସ କରିଥିଲେ ଏବଂ ଫରାସୀ ନୌବହରର ଅବଶିଷ୍ଟ ତରୀଗୁଡ଼ିକ ଆଡମିରାଲ ହକଙ୍କ ଦ୍ୱାରା ଫ୍ରାନ୍ସ ଉପକୂଳସ୍ଥ କ୍ୱିବେରନ ଉପସାଗର-ଠାରେ ପରାସ୍ତ ହେଲା (୧୭୫୯) ।

ଏହି ସମୟରେ ୧୭୬୦ ଖ୍ରୀ: ଅ: ରେ ଦ୍ୱିତୀୟ ଜର୍ଜଙ୍କର ମୃତ୍ୟୁ ହୁଅନ୍ତେ ତାହାଙ୍କର ପୌତ୍ର ତୃତୀୟ ଜର୍ଜ ଆଖ୍ୟା ଧାରଣ କରି ସିଂହାସନାରୋହଣ କଲେ ।

---

## ତୃତୀୟ ଜର୍ଜ

ଜନ୍ମ—୧୭୩୮ । ବିବାହ—୧୭୬୧ । ରାଜତ୍ୱ—(୧୭୬୦-୧୮୨୦)

ଦ୍ୱିତୀୟ ଜର୍ଜଙ୍କ ଜ୍ୟେଷ୍ଠପୁତ୍ର ଫ୍ରେଡେରିକ ପିତାଙ୍କ ଜୀବିତାବସ୍ଥାରେ ୧୭୫୧ ଖ୍ରୀ: ଅ: ରେ ପ୍ରାଣତ୍ୟାଗ କରିଥିବାରୁ ତାହାଙ୍କର ଜ୍ୟେଷ୍ଠପୁତ୍ର

ଚରିତ୍ର

ତୃତୀୟ ଜର୍ଜ ନାମ ଧାରଣ କରି ସିଂହାସନାରୋହଣ କରିଥିଲେ । ସିଂହାସନାରୋହଣ ସମୟରେ ତାହାଙ୍କର ବୟସ ୨୨ ବର୍ଷ ହୋଇଥିଲା । ସେ ଅତ୍ୟନ୍ତ ଦୟାଳୁ, ଧର୍ମପରାୟଣ; କିନ୍ତୁ ଅତ୍ୟନ୍ତ ଏକଗୁଣ୍ଡିଚେତା ଥିଲେ । ମାତାଙ୍କ ଶିକ୍ଷାନୁସାରେ ସେ ସମସ୍ତ କ୍ଷମତା ମନ୍ତ୍ରୀମାନଙ୍କ ଉପରେ ଅର୍ପଣ ନ କରି ଦେଶର ଶାସନଭାର ସ୍ୱୀୟ କରତଳଗତ କରିବାକୁ ଚେଷ୍ଟା କରିଥିଲେ ଏବଂ ସେଥିପାଇଁ ନାନା ପ୍ରମାଦ ଉପସ୍ଥିତ ହୋଇଥିଲା ।



ତୃତୀୟ ଜର୍ଜ

ତୃତୀୟ ଜର୍ଜ ସିଂହାସନାରୋହଣ କରି ଯୁଦ୍ଧର ଅବସାନ ନିମିତ୍ତ ଉଦ୍‌ଗ୍ରୀବ ହୋଇଥିଲେ; ମାତ୍ର ସ୍ପେନ୍ ଗୁପ୍ତଭାବରେ ଇଂଲଣ୍ଡ ବିରୁଦ୍ଧରେ ଫ୍ରାନ୍‌ସକୁ ସପ୍ତବର୍ଷ ଯୁଦ୍ଧରେ ସାହାଯ୍ୟ କରୁଥିବାରୁ ପିଟ୍ ସ୍ପେନ ସହିତ ଯୁଦ୍ଧ ଘୋଷଣା କରିବାକୁ ମନଃସ୍ଥ କରିଥିଲେ । ଏହି ହେତୁରୁ ରାଜାଙ୍କ ସହିତ ମତାନ୍ତର ଉପସ୍ଥିତ ହେବାରୁ ନିଉକାସ୍‌ଲ ଓ ପିଟ୍ କାର୍ଯ୍ୟ ପରିତ୍ୟାଗ କଲେ ଏବଂ ରାଜା ଲର୍ଡ ବିଉଟ୍ ନାମକ ତାହାଙ୍କର ପୂର୍ବ ବନ୍ଧୁଙ୍କୁ ପ୍ରଧାନ ମନ୍ତ୍ରୀପଦରେ ପ୍ରତିଷ୍ଠିତ କଲେ । ସ୍ପେନ ପ୍ରକାଶ୍ୟ ଭାବରେ ଇଂଲଣ୍ଡ ସହିତ ଯୁଦ୍ଧ ଘୋଷଣା କରିବାରୁ ବିଉଟ୍ ଯୁଦ୍ଧ କରିବାକୁ ବାଧ୍ୟ ହୋଇଥିଲେ ଏବଂ ଇଂରାଜମାନେ ଏହି ସମୟରେ ସ୍ପେନୀୟ ଉପନିବେଶମାନ ଆକ୍ରମଣ କରି "ହାବେନା," ଓ ମାନିଲା ଅଧିକାର କଲେ; ମାତ୍ର ଯୁଦ୍ଧ ନିମନ୍ତେ ରାଜାଙ୍କର ଆଦୌ ଇଚ୍ଛା ନ ଥିବାରୁ ବିଉଟ ପ୍ରୁସିୟାକୁ ଅଙ୍ଗୀକୃତ ସାହାଯ୍ୟ ଦେଲେ ନାହିଁ । ପ୍ରୁସିଆ ତହିଁ "ହାବାର୍ଟ୍‌ସ୍‌ବର୍ଗ" ନାମକ ସ୍ଥାନରେ ଅଷ୍ଟ୍ରିୟା ସହିତ ଗୋଟିଏ ସ୍ୱତନ୍ତ୍ର ସନ୍ଧି କରି ସାଇଲେସିଆ ପ୍ରାପ୍ତ ହେଲେ । ବିଉଟ୍ ତହୁଁ ଅର୍ଥ ପ୍ରଦାନଦ୍ୱାରା ପାର୍ଲିମେଣ୍ଟ ସଭ୍ୟମାନଙ୍କୁ ହସ୍ତଗତ କରି ଫ୍ରାନ୍‌ସ ସହିତ ସନ୍ଧି ପ୍ରସ୍ତାବ ଉତ୍ଥାପନ କଲେ । ଅବଶେଷରେ ୧୭୬୩ ଖ୍ରୀ: ଅ: ରେ ପ୍ୟାରିସ ନଗରଠାରେ ଗୋଟିଏ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ଏତଦ୍ଦ୍ୱାରା ଇଂଲଣ୍ଡ କାନାଡା ଓ ମିସିସିପି ନଦୀର ପୂର୍ବଦିଗସ୍ଥ ସମସ୍ତ ପ୍ରଦେଶ ପ୍ରାପ୍ତ ହେଲା; ମାତ୍ର ମାନିଲା ଓ ହାବେନା ସ୍ପେନକୁ ଓ ପଣ୍ଡିଚେରୀ ଫ୍ରାନ୍‌ସକୁ ପ୍ରତ୍ୟର୍ପଣ କଲା । ଏତଦ୍ଦ୍ୱାରା ବିଉଟ୍ ଲୋକମାନଙ୍କର ଅତ୍ୟନ୍ତ ଅପ୍ରିୟ ହୋଇ ପଡ଼ିଲେ । ବିଶେଷତଃ ସେ ଜଣେ ସ୍କଟ ଥିବାରୁ ଲୋକମାନଙ୍କର ଅବିଶ୍ୱାସର ପାତ୍ର ହୋଇଥିଲେ । ଏହି ସମୟରେ ଯୁଦ୍ଧର ବ୍ୟୟ ନିମନ୍ତେ ସେ ସିଡାର ନାମକ ଏକପ୍ରକାର ପାନୀୟ ଉପରେ ଏକ କର ବସାଇବାରୁ ଲୋକମାନେ ତାହାଙ୍କର ଅତ୍ୟନ୍ତ ବିରୋଧୀ ହୋଇଥିଲେ । ଏହି ସମସ୍ତ କାରଣରୁ ସେ ପଦତ୍ୟାଗ କରିବାରୁ ଲର୍ଡ ଗ୍ରେନଭିଲ୍ ପ୍ରଧାନ ମନ୍ତ୍ରିତ୍ୱ ପ୍ରାପ୍ତ ହୋଇଥିଲେ ।

ଲର୍ଡଗ୍ରେନ୍‌ଭିଲଙ୍କ ମନ୍ତ୍ରିତ୍ୱ

ଲର୍ଡ ଗ୍ରେନ୍‌ଭିଲଙ୍କର ରାଜନୀତିରେ ବିଶେଷ ପାରଦର୍ଶିତା ନ ଥିଲା । ସୁତରାଂ ତାହାଙ୍କର ମନ୍ତ୍ରିତ୍ୱ କାଳରେ ଇଂଲଣ୍ଡ କେତେକ ବିଷୟରେ ଷଡ଼ଯନ୍ତ୍ର ହୋଇଥିଲା ।

ତୃତୀୟ ଜର୍ଜ ସମସ୍ତ କ୍ଷମତା ସ୍ୱୀୟ କରତଳଗତ କରିବାକୁ ଚେଷ୍ଟା କରି ହାଉସ୍ ଅଫ୍ କମନ୍‌ସରେ ଗୋଟିଏ ଦଳ ସୃଷ୍ଟି କରିଥିଲେ । ଉକ୍ତ ଦଳର ଲୋକମାନେ ହୁଇଗ କିମ୍ବା ଟୋରି ଦଳଭୁକ୍ତ ନ ହୋଇ ସମସ୍ତ ବିଷୟରେ ରାଜାଙ୍କ ଦ୍ୱାରା ଚାଳିତ ହୋଇଥିଲେ । ସେଥିପାଇଁ ସେମାନଙ୍କୁ ରାଜବନ୍ଧୁ (Kings Friends) ଆଖ୍ୟା ପ୍ରଦତ୍ତ ହୋଇଥିଲା ହୁଇଗମାନେ ପାର୍ଲିମେଣ୍ଟରେ ଅତ୍ୟନ୍ତ କ୍ଷମତାଶାଳୀ ଥିଲେ; ମାତ୍ର ସେମାନେ ଗୃହଗୋଟି ଦଳରେ ବିଭକ୍ତ ହୋଇଥିବାରୁ ଗ୍ରେନ୍‌ଭିଲ ରାଜବନ୍ଧୁମାନଙ୍କ ସାହାଯ୍ୟ ଲାଭ କରି କିୟତ୍‌କାଳ ପାଇଁ ସ୍ୱୀୟ କ୍ଷମତା ଅକ୍ଷୁଣ୍ଣ ରଖିବାକୁ ସମର୍ଥ ହୋଇଥିଲେ ।

ଉଇଲ୍‌କସ୍ ନାମକ ପାର୍ଲିମେଣ୍ଟର ଏକ ସଭ୍ୟ ରାଜାଙ୍କର ଗୋଟିଏ ବକ୍ତୃତାର ବିରୁଦ୍ଧ ସମାଲୋଚନା କରି ତାହାଙ୍କର ନର୍ଥ ବ୍ରିଟନ ନାମକ

ଉଇଲ୍‌କସଙ୍କ ପ୍ରତି ଅତ୍ୟାଚାର

ସମ୍ବାଦପତ୍ରରେ ପ୍ରକାଶ କରିବାରୁ ଗ୍ରେନ୍‌ଭିଲଙ୍କର ଆଦେଶରେ ସାଧାରଣ ୱାରେଣ୍ଟଦ୍ୱାରା ଧୃତ ହୋଇ କାରାରୁଦ୍ଧ ହେଲେ; ମାତ୍ର ଜଣେ ପାର୍ଲିମେଣ୍ଟ ସଭ୍ୟଙ୍କୁ ଏହିପରି ଭାବରେ କାରାରୁଦ୍ଧ କରିବା ଗର୍ହିତ ଥିବାରୁ ସେ ମୁକ୍ତି ଲାଭ କରି କ୍ଷତିପୂରଣ ଦାବି କରି ତାହା ପ୍ରାପ୍ତ ହେଲେ । ମାତ୍ର ପାର୍ଲିମେଣ୍ଟରେ ରାଜବନ୍ଧୁ ଦଳ ପ୍ରବଳ ଥିବାରୁ ସେମାନେ ଉଇଲ୍‌କସ୍‌ଙ୍କୁ ସଭ୍ୟରୂପେ ଗ୍ରହଣ କଲେ ନାହିଁ । ଏଥିରେ ଲୋକମାନେ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇଥିଲେ । ରାଜା ଏବଂ ରାଜମାତାଙ୍କ ବିରୁଦ୍ଧରେ ନାନା ପ୍ରକାର ବିରୁଦ୍ଧ ସମାଲୋଚନା ପ୍ରକାଶିତ ହେବାକୁ ଲାଗିଲା ଏବଂ ପ୍ରାୟ ୨୦୦ ବ୍ୟକ୍ତି କାରାରୁଦ୍ଧ ହେଲେ । ଉଇଲକସ୍ ଗୋଟିଏ ଦ୍ୱନ୍ଦ୍ୱ ଯୁଦ୍ଧରେ ଆହତ ହୋଇ ଫ୍ରାନ୍‌ସକୁ ପଳାୟନ କଲେ ।

ଉଇଲ୍‌କସ୍ ଫ୍ରାନ୍‌ସରୁ ପ୍ରତ୍ୟାଗମନ କରି ପାର୍ଲିମେଣ୍ଟର ସଭ୍ୟରୂପେ ନିର୍ବାଚିତ ହେଲେ; ମାତ୍ର ପାର୍ଲିମେଣ୍ଟ ତାହାଙ୍କୁ ସଭ୍ୟରୂପେ ଗ୍ରହଣ କଲା ନାହିଁ । ଲୋକମାନେ କ୍ରୁଦ୍ଧ ହୋଇ ତାହାଙ୍କୁ ବାରଂବାର ସଭ୍ୟ ନିର୍ବାଚନ କଲେ ଏବଂ ପାର୍ଲିମେଣ୍ଟ ତାହାଙ୍କୁ ବାରଂବାର ପ୍ରତ୍ୟାଖ୍ୟାନ କରିବାକୁ ଲାଗିଲେ । ଅବଶେଷରେ ଲୋକମାନେ କ୍ରୁଦ୍ଧ ହୋଇ ଉଇଲ୍‌କସଙ୍କୁ ଏଲ୍‌ଡାରମେନ୍, ସେରିଫ ଓ ଅବଶେଷରେ ଲଣ୍ଡନର ମେୟର ମନୋନୀତ କରିଥିଲେ ଓ ପାର୍ଲିମେଣ୍ଟ ବାଧ୍ୟ ହୋଇ ତାହାଙ୍କୁ ମିଡ଼ଲ୍‌ସେକ୍‌ସର ସଭ୍ୟରୂପେ ଗ୍ରହଣ କରିଥିଲେ । ଏଥିରେ ଗ୍ରାଫଟନ ଲୋକମାନଙ୍କର ଅତ୍ୟନ୍ତ ଅପ୍ରିୟ ହୋଇପଡ଼ିବାରୁ ଓ ରାଜା ଓ ତାହାଙ୍କ ପ୍ରତି ନାନାପ୍ରକାର ବିଦ୍ରୂପ ବାଣ ବର୍ଷିତ ହେବାରୁ ସେ ସ୍ୱୀୟ ପଦ ତ୍ୟାଗ କଲେ ଏବଂ ଲର୍ଡ ନର୍ଥ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ପଦରେ ନିଯୁକ୍ତ ହେଲେ (୧୭୭୦) ।

ପ୍ରଧାନ ମନ୍ତ୍ରୀ ଗ୍ରେନଭିଲଙ୍କ ଅପର ଏକ ଭ୍ରମ ହେତୁ ଉତ୍ତର ଆମେରିକାର ଇଂରାଜ ଉପନିବେଶମାନ ଇଂଲଣ୍ଡର ହସ୍ତଚ୍ୟୁତ ହୋଇଥିଲା ।

**ଆମେରିକାର ଇଂରାଜ ଉପନିବେଶ ସହିତ କଳହ**

(୧) ସପ୍ତବାର୍ଷିକ ଯୁଦ୍ଧହେତୁ ଇଂରାଜମାନଙ୍କର ବହୁ ଅର୍ଥ ବ୍ୟୟ ହୋଇଥିଲା ଏବଂ ଏହି ଯୁଦ୍ଧହେତୁ ଉପନିବେଶମାନଙ୍କର ଫ୍ରାନ୍‌ସ ଭୀତି ଦୂର ହୋଇଥିବାରୁ ସେମାନେ ଏତଦ୍ୱାରା ଯଥେଷ୍ଟ ଉପକୃତ ହୋଇଥିବାରୁ ଗ୍ରେନଭିଲ୍ ଉକ୍ତ ଅର୍ଥର କିୟଦଂଶ ଉପନିବେଶମାନଙ୍କଠାରୁ ଆଦାୟ କରିବାକୁ ମନସ୍ଥ କରିଥିଲେ । ସେଥିପାଇଁ ସେ ଉପନିବେଶମାନଙ୍କ ବାଣିଜ୍ୟ ଉପରେ ଏକ କର ନିର୍ଦ୍ଧେଶ କରିଥିଲେ ଏବଂ ଇଂଲଣ୍ଡ ବ୍ୟତୀତ ଅପର ଦେଶ ସହିତ ସେମାନଙ୍କର ବାଣିଜ୍ୟ ନିଷିଦ୍ଧ ହୋଇଥିଲା । ଏତଦ୍ୱାରା ଉପନିବେଶମାନ ଇଂରାଜ ଶାସନ ପ୍ରତି ଅସନ୍ତୁଷ୍ଟ ହୋଇଥିଲେ ।

(୨) ଫ୍ରାନ୍‌ସ, ସ୍ପେନ ପ୍ରଭୃତି ଦେଶମାନ ସେମାନଙ୍କର ଉପନିବେଶମାନଙ୍କଠାରୁ କର ଆଦାୟ କରୁଥିଲେ । ଗ୍ରେନଭିଲ ଉକ୍ତ ପନ୍ଥା ଅବଲମ୍ବନ

କରି ଆମେରିକାସ୍ଥ ଇଂରାଜ ଉପନିବେଶମାନଙ୍କରୁ କର ଆଦାୟ କରିବାକୁ ମନଃସ୍ଥ କରି 'ଷ୍ଟାମ୍ପଆକ୍ଟ' (Stamp Act) ନାମକ ଏକ ନିୟମ ପ୍ରବର୍ତ୍ତନ କଲେ । ଏତଦ୍ଦ୍ୱାରା ଉପନିବେଶମାନଙ୍କର ଦଲିଲ୍ ପ୍ରଭୃତି ସମସ୍ତ ବିଷୟ ଷ୍ଟାମ୍ପଯୁକ୍ତ କାଗଜରେ ଲିଖିତ ହେବାର ଆଦେଶ ପ୍ରଦତ୍ତ ହେଲା । ଉକ୍ତ ଷ୍ଟାମ୍ପ ଇଂଲଣ୍ଡରୁ କ୍ରୟ କରିବାକୁ ହେଉଥିଲା । ଉପନିବେଶମାନ ଏହାର ଘୋର ପ୍ରତିବାଦ କରି ପ୍ରକାଶ କରିଥିଲେ ଯେ, ଇଂରେଜ ପାର୍ଲିମେଣ୍ଟରେ ସେମାନଙ୍କର ମନୋନୀତ କୌଣସି ସଭ୍ୟ ନାହାନ୍ତି; ସୁତରାଂ ସେମାନଙ୍କର ମତ ଗ୍ରହଣ ନ କରି ଇଂରେଜ ପାର୍ଲିମେଣ୍ଟର ସେମାନଙ୍କ ଉପରେ କୌଣସି କର ଧାର୍ଯ୍ୟ କରିବା ଅନୁଚିତ । ଏହିପରି ଆପତ୍ତି କରି ସେମାନେ ଦଲିଲ ପ୍ରଭୃତିରେ ଷ୍ଟାମ୍ପ ବ୍ୟବହାର କରିବାକୁ ଅସମ୍ମତ ହେଲେ ଏବଂ ଇଂଲଣ୍ଡ ସହିତ ବାଣିଜ୍ୟ ବନ୍ଦ କଲେ । ଏତଦ୍ଦ୍ୱାରା ଇଂଲଣ୍ଡର ବହୁ କ୍ଷତି ହେବାକୁ ଲାଗିଲା (୧୭୬୫) ।

(୩) ଏହି ସମୟରେ ରାଜାଙ୍କ ସହିତ ଗ୍ରେନ୍‌ଭିଲଙ୍କର ମନୋମାଳିନ୍ୟ ଉପସ୍ଥିତ ହେବାରୁ ସେ ପଦତ୍ୟାଗ କଲେ ଏବଂ ଲର୍ଡ ରକିଂହାମ ପ୍ରଧାନ ମନ୍ତ୍ରୀ ହେଲେ । ପିଟ ଓ ଏଡ଼ମଣ୍ଡବର୍କ ନାମକ ଖ୍ୟାତନାମା ପାର୍ଲିମେଣ୍ଟର ସଭ୍ୟଙ୍କ ପରାମର୍ଶମତେ ସେ ଉପନିବେଶଗୁଡ଼ିକୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ 'ଷ୍ଟାମ୍ପଆକ୍ଟ' ରହିତ କରିଥିଲେ; ମାତ୍ର ରକିଂହାମ ଘୋଷଣା କଲେ ଯେ, ଉପନିବେଶଗୁଡ଼ିକ ଉପରେ କର ଧାର୍ଯ୍ୟ କରିବା ଅଧିକାର ପାର୍ଲିମେଣ୍ଟର ଅଛି (୧୭୬୬) ।

(୪) ଏହି ବ୍ୟବସ୍ଥା ଉପନିବେଶଗୁଡ଼ିକର କେତେକ ପରିମାଣରେ ସନ୍ତୋଷପ୍ରଦ ହେଲେହେଁ ବହୁ ଦିବସ ସ୍ଥାୟୀ ହୋଇ ନ ଥିଲା । କାରଣ ଏକବର୍ଷ ଭିତରେ ରକିଂହାମଙ୍କ ସହିତ ପିଟ୍ ପ୍ରଭୃତି କେତେକ ହୁଇଗ୍ ନେତାଙ୍କ ମତାନ୍ତର ହୁଅନ୍ତେ ସେ ପଦତ୍ୟାଗ କଲେ ଏବଂ ଲର୍ଡ ଗ୍ରାଫଟନ୍ ପ୍ରଧାନ ମନ୍ତ୍ରୀ ହେଲେ । ପିଟ ଏହି ସମୟରେ ଲର୍ଡ ଚଥାମ ଉପାଧି ପ୍ରାପ୍ତ ହୋଇ ସାମନ୍ତସଭା ( House of Lords ) ର ସଭ୍ୟଶ୍ରେଣୀଭୁକ୍ତ ହେବାରୁ ସାଧାରଣସଭା (House of Commons) ରେ ତାହାଙ୍କ

ସମସ୍ତ ପ୍ରସ୍ତାବ ନାକଚ ହେଲା । ଏହି ସମୟରେ ଗ୍ରାଫ୍‌ଟନ ଓ ଇଂଲଣ୍ଡର ଚାନସେଲର ଟାଉନ୍‌ସେଣ୍ଡ ମନେ କରୁଥିଲେ ଯେ, "ଷ୍ଟାମ୍ପଆକ୍ଟ" ରହିତ କରି ପାର୍ଲିମେଣ୍ଟ କାପୁରୁଷତାର ପରିଚୟ ଦେଇଅଛି । ସେଥିପାଇଁ ସେ ଇଂଲଣ୍ଡର ସମ୍ଭ୍ରମ ରକ୍ଷା ନିମିତ୍ତ ଆମେରିକାକୁ ଆମଦାନି କେତେକ ବାଣିଜ୍ୟ ଦ୍ରବ୍ୟ, ଯଥା କାଗଜ, କାଚ, ଚା ଓ ରଙ୍ଗ ଉପରେ ଏକ ଶୁଳ୍କ ବା କର ଧାର୍ଯ୍ୟ କଲେ । ଏତଦ୍ଦ୍ୱାରା ଆମେରିକାରେ ପୁନରାୟ ଅସନ୍ତୋଷ ଜାତ ହେଲା (୧୭୬୭) ।

(୫) ଇତିମଧ୍ୟରେ ଉପନିବେଶଗୁଡ଼ିକର ଅସନ୍ତୋଷ ବହ୍ନି ପ୍ରଜ୍ୱଳିତ ହୋଇ କ୍ରମେ କ୍ରମେ ବୃଦ୍ଧିପ୍ରାପ୍ତ ହୋଇଥିଲା । ସେମାନଙ୍କ ସନ୍ତୋଷ ବିଧାନାର୍ଥ ଲର୍ଡ ନର୍ଥ ଆମେରିକାକୁ ଆମଦାନି ଚା ବ୍ୟତୀତ ଅନ୍ୟ ସମସ୍ତ ଦ୍ରବ୍ୟର ଶୁଳ୍କ ବା କର ରହିତ କଲେ; କିନ୍ତୁ ରାଜାଙ୍କ ସନ୍ତୋଷ ବିଧାନାର୍ଥ ପାର୍ଲିମେଣ୍ଟର ଉପନିବେଶଗୁଡ଼ିକ ଉପରେ କର ଧାର୍ଯ୍ୟ କରିବାର ଅଧିକାର ପ୍ରଦର୍ଶନାର୍ଥ କେବଳ ଚା ଉପରେ ନିର୍ଦ୍ଦିଷ୍ଟ ଶୁଳ୍କଟି ତଦ୍ରୂପ ରହିଲା । ଉପନିବେଶଗୁଡ଼ିକ ପାର୍ଲିମେଣ୍ଟର ଏହି କର ଧାର୍ଯ୍ୟ କରିବା ଅଧିକାରର ଘୋର ପ୍ରତିବାଦ କରି ଚା ଆମଦାନୀ ଓ ବ୍ୟବହାର ବନ୍ଦ କଲେ । ଇଷ୍ଟ ଇଣ୍ଡିଆ କମ୍ପାନୀ ଏହି ସମୟରେ କେତେଗୁଡ଼ିଏ ଜାହାଜ ଚା ଆମେରିକାର ବୋଷ୍ଟନ ବନ୍ଦରକୁ ପ୍ରେରଣ କରନ୍ତେ ମାସାଚୁସେଟ ଉପନିବେଶର ଲୋକମାନେ ସ୍ଥାନୀୟ ଆଦିମ ଅଧିବାସୀଙ୍କ ଛଦ୍ମବେଶରେ ଜାହାଜଗୁଡ଼ିକରେ ଉଠି ସମସ୍ତ ଚା ସମୁଦ୍ର ଗର୍ଭସାତ୍ କଲେ (୧୭୭୩) ।

(୬) ଏଥିରେ ଇଂରାଜ ପାର୍ଲିମେଣ୍ଟ ଅତ୍ୟନ୍ତ କ୍ରୁଦ୍ଧ ହୋଇ ବୋଷ୍ଟନ ବନ୍ଦର ଓ ତାହାର ସମସ୍ତ ବାଣିଜ୍ୟ ବନ୍ଦ କଲେ ଏବଂ ମାସାଚୁସେଟ ଉପନିବେଶର ସମସ୍ତ ଅଧିକାର ପ୍ରତ୍ୟାହାର କରି ତାହା ଇଂରାଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ବୋଲି ଘୋଷଣା କରି ଶାସନ କାର୍ଯ୍ୟପରିଚାଳନାର୍ଥ ଗୋଟିଏ କମିଟି ନିଯୁକ୍ତ କଲେ (୧୭୭୪) ।

(୭) ପାର୍ଲିମେଣ୍ଟର ଏହି କଠୋର ଆଦେଶରେ ୧୩ ଗୋଟି ଉପନିବେଶର ୫୫ ଜଣ ନେତା ଫିଲାଡେଲ୍‌ଫିଆ ନାମକ ସ୍ଥାନରେ ଗୋଟିଏ

ସମ୍ମିଳନୀ କରି ସ୍ଥିର କରିଥିଲେ ଯେ, ମାସାଚୁସେଟ ଉପନିବେଶର ସମସ୍ତ କ୍ଷମତା ପ୍ରତ୍ୟର୍ପଣ ନ କଲେ ସେମାନେ ଇଂଲଣ୍ଡ ସହିତ ସମସ୍ତ ସମ୍ବନ୍ଧ ତ୍ୟାଗ କରିବେ । ଜର୍ଜ ୱାସିଂଟନ୍ ନାମକ ଏକ ନେତା ବୋଷ୍ଟନ ବନ୍ଦରର ଲୋକମାନଙ୍କ ସାହାଯ୍ୟାର୍ଥ ମିଲିସିଆ ସୈନ୍ୟ ସଜ୍ଜିତ କରିବାର ଭାର ଗ୍ରହଣ କଲେ (୧୭୭୪) ।

ଆମେରିକାର ଉପନିବେଶମାନଙ୍କ ସହିତ ଯୁଦ୍ଧାରମ୍ଭ ୧୭୭୫

ମାସାଚୁସେଟ ପ୍ରଦେଶର ବିଦ୍ରୋହ ଦମନାର୍ଥ ଜେନେରେଲ୍ ଗେଜ ଆମେରିକାକୁ ପ୍ରେରିତ ହେଲେ । ତାହାଙ୍କ ସୈନ୍ୟମାନେ ଉପନିବେଶର ଅସ୍ତ୍ରାଗାର ହସ୍ତଗତ କରିବାକୁ ଅଗ୍ରସର ହୁଅନ୍ତେ ଆମେରିକାନମାନଙ୍କ ଦ୍ୱାରା "ଲେକ୍‌ସିଂଟନ" ନାମକ ସ୍ଥାନରେ ଓ ତତ୍ପରେ 'କନ୍‌କର୍ଡ' ନାମକ ନଦୀକୂଳରେ ପରାଜିତ ହେଲେ ।

ଏଥିଉତ୍ତାରେ ୱାସିଂଟନ ଆମେରିକାର ସେନାମାନଙ୍କର ଅଧିନାୟକ (Commander) ପଦ ଗ୍ରହଣ କରି ଇଂରେଜମାନଙ୍କ ସହିତ ସମରକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ଇତିମଧ୍ୟରେ ଆମେରିକାନ୍‌ମାନେ 'ବଙ୍କାର୍ସ ହିଲ୍' ନାମକ ସ୍ଥାନରେ ପରାଜିତ ହୋଇଥିଲେ ଏବଂ ସେମାନଙ୍କ ଦ୍ୱାରା କାନଡା ଆକ୍ରମଣ ବିଫଳ ହୋଇଥିଲା; ମାତ୍ର ୱାସିଂଟନ ଇଂରେଜ ସେନାପତି ହାଓ୍ୱେଙ୍କୁ ପରାଜିତ କରି ବୋଷ୍ଟନ ବନ୍ଦର ଅଧିକାର କରିଥିଲେ (୧୭୭୬) । ତଦନନ୍ତର ଫ୍ରାଙ୍କଲିନ୍



ଜର୍ଜ ୱାସିଂଟନ୍

ପ୍ରମୁଖ ଆମେରିକାର ନେତାମାନେ ଫିଲାଡେଲଫିଆଠାରେ ଗୋଷ୍ଠୀ ମନ୍ତ୍ର କରି ଆମେରିକାର ଇଂରାଜ ଉପନିବେଶଗୁଡ଼ିକର 'ଯୁକ୍ତରାଜ୍ୟ' ନାମକରଣ ପୂର୍ବକ ତାହା ସ୍ୱାଧୀନ ବୋଲି ଘୋଷଣା କଲେ ୪ ଜୁଲାଇ, ୧୭୭୬।

ତତ୍ପରବର୍ଷ ଇଂରାଜସେନାପତି 'ବରଗାଇନ' 'ସାରାଟୋଗା' ନାମକ ସ୍ଥାନରେ ଆମେରିକାନ୍‌ମାନଙ୍କ ଦ୍ୱାରା ପରାଜିତ ହୋଇ ସେମାନଙ୍କ ହସ୍ତରେ ଅସ୍ତ୍ରସମର୍ପଣ କଲେ । ଏହି ଯୁଦ୍ଧରେ ଆମେରିକାର ଭାଗ୍ୟ ସ୍ଥିରୀକୃତ ହୋଇଥିଲା । ସପ୍ତବର୍ଷବ୍ୟାପୀ ଯୁଦ୍ଧରେ ପରାଜୟ ହେତୁ ଫ୍ରାନ୍‌ସ, ସ୍ପେନ ପ୍ରତିଶୋଧ ଗ୍ରହଣାର୍ଥ ଆମେରିକାର ପକ୍ଷ ଅବଲମ୍ବନ କରି ଇଂରାଜ ଉପନିବେଶମାନ ସ୍ୱାଧୀନ ବୋଲି ଘୋଷଣା କଲେ । ସ୍ପେନ ମିନର୍କା ଅଧିକାର କରି ଜିବ୍ରାଲଟାର ହସ୍ତଗତ କରିବାକୁ ଚେଷ୍ଟା କଲା । ପ୍ରାୟ ୩ ବର୍ଷ ଜିବ୍ରାଲ୍‌ଟାର ଅବରୋଧ ଉତ୍ତାରେ ସ୍ପେନର ରଣପୋତବହର ଇଂରେଜ ସେନାପତି ଇଲିୟଟଙ୍କ ଦ୍ୱାରା ପରାସ୍ତ ହେଲେ ଏବଂ ଫରାସୀ ରଣପୋତବହର ଯାମେକା ଅଧିକାର କରିବାକୁ ଯାଇ ଆଡମିରାଲ ରଡ଼ନୀଙ୍କ ଦ୍ୱାରା ପରାଭୂତ ହେଲା ।

ଏହି ସମୟରେ ଆୟର୍ଲାଣ୍ଡର ଲୋକମାନେ ବାଣିଜ୍ୟର କେତେକ ସୁବିଧା ଲାଭ ଆଶାରେ ସୈନ୍ୟ ସଂଗ୍ରହ କରିବାକୁ ଲାଗିଲେ । ଲର୍ଡ଼ ନର୍ଥ ତତ୍କାଳିନରେ ଏହି ପ୍ରକାରରେ ଆକ୍ରାନ୍ତ ହେବାରୁ ଆୟର୍ଲାଣ୍ଡକୁ ବାଣିଜ୍ୟ ବିଷୟକ କେତେକ ସୁବିଧା ପ୍ରଦାନ କଲେ ( ୧୭୮୦) । ପଏନିଙ୍ଗ୍ସ ଆଇନ ମଧ୍ୟ ରହିତ ହେଲା (୧୭୮୨) ।

ତତ୍ପରବର୍ଷ ଲର୍ଡ କର୍ଣ୍ଣୱାଲିସ୍ ୮୦୦୦ ସୈନ୍ୟ ସହ ୱାସିଙ୍ଗଟନଙ୍କ ନେତୃତ୍ୱରେ ଆମେରିକାନମାନଙ୍କ ଦ୍ୱାରା ପରାଜିତ ହୋଇ ୟର୍କ ନଗରଠାରେ ସେମାନଙ୍କ ହସ୍ତରେ ଅସ୍ତ୍ରସମର୍ପଣ କଲେ (୧୭୮୧) ।

ଇଂଲଣ୍ଡ ଏହି ପ୍ରକାରରେ ଚତୁର୍ଦ୍ଦିଗରୁ ଆକ୍ରାନ୍ତ ହୁଅନ୍ତେ ଆମେରିକାର 'ଯୁକ୍ତରାଜ୍ୟ' (United States) ସ୍ୱାଧୀନ ବୋଲି ଘୋଷିତ ହେଲା ଓ ଫ୍ରାନ୍ସ, ସ୍ପେନ ପ୍ରଭୃତି ସହିତ ଇଂରେଜମାନଙ୍କର ଭର୍ସେଲ୍ସଠାରେ ଗୋଟିଏ ସ୍ୱତନ୍ତ୍ର ସନ୍ଧି ହେଲା। ଏତଦ୍ଦ୍ୱାରା ସ୍ପେନ, ଫ୍ଲୋରିଡା, ମିନର୍କା ଲାଭ କଲା। ଫ୍ରାନ୍ସର ବିଶେଷ କୌଣସି ଲାଭ ହେଲା ନାହିଁ। ଆମେରିକାର କାନଡା, ନିଉଫାଉଣ୍ଡଲଣ୍ଡ ଓ ନୋଭାସ୍କୋଟିଆ ଇଂଲଣ୍ଡର ଅଧୀନରେ ରହିଲା।

ଭର୍ସେଲ୍ସ ସନ୍ଧି ୧୭୮୩

ଆମେରିକା ସହିତ ଯୁଦ୍ଧ ସମୟରେ ଇଂଲଣ୍ଡର ମନ୍ତ୍ରିସମାଜରେ ଘୋର ପରିବର୍ତ୍ତନ ସାଧିତ ହୋଇଥିଲା। ଆମେରିକା ସହିତ ସନ୍ଧି ହେବା ପୂର୍ବେ ଲର୍ଡ ନର୍ଥ ପଦତ୍ୟାଗ କରିଥିଲେ ଏବଂ ଲର୍ଡ ରକିଂହାମ ପୁନର୍ବାର ପ୍ରଧାନ ମନ୍ତ୍ରିତ୍ୱ ପ୍ରାପ୍ତ ହେଲେ। ତାହାଙ୍କ ସମୟରେ ରାଜାଙ୍କୁ ପ୍ରଦତ୍ତ ଅର୍ଥ 'ସିଭିଲ ଲିଷ୍ଟ' (Civil list) ର ସଙ୍କୋଚ ବିଧାନ ହୋଇଥିଲା ଏବଂ କେତେକ ଅନାବଶ୍ୟକ କର୍ମଚାରୀଙ୍କ ପଦ ଉଠାଇ ଦିଆଗଲା। ରାଜସ୍ୱ ବିଭାଗର କର୍ମଚାରୀମାନେ ପାର୍ଲିମେଣ୍ଟର ସଭ୍ୟ ନିର୍ବାଚନ କରିବା ଅଧିକାର 'ଭୋଟ' ( Vote ) ରୁ ବଞ୍ଚିତ ହେଲେ। ଏତଦ୍ଦ୍ୱାରା ରାଜାଙ୍କ କ୍ଷମତାର ଯଥେଷ୍ଟ ହ୍ରାସ ହୋଇଥିଲା।

ମନ୍ତ୍ରିସମାଜରେ ପରିବର୍ତ୍ତନ

୧୭୮୨ ରେ ରକିଂହାମଙ୍କର ମୃତ୍ୟୁ ହେବାରୁ ଲର୍ଡ ସେଲ୍‌ବୋର୍ଣ୍ଣ ପ୍ରଧାନ ମନ୍ତ୍ରିତ୍ୱ ଲାଭ କଲେ। ତାହାଙ୍କ ସମୟରେ ଭର୍ସେଲ୍ସ ସନ୍ଧି ସ୍ୱାକ୍ଷରିତ ହେଲା; ମାତ୍ର ଲର୍ଡ ନର୍ଥ ଓ ଫକ୍ସ ତାହାଙ୍କ ବିରୋଧୀ ହେବାରୁ ସେ ପଦତ୍ୟାଗ କଲେ ଏବଂ ଲର୍ଡ ପୋର୍ଟଲଣ୍ଡ ପ୍ରଧାନ ମନ୍ତ୍ରୀ ଏବଂ ଫକ୍ସ ଓ ଲର୍ଡ ନର୍ଥ ତାହାଙ୍କର ପ୍ରଧାନ ସହକାରୀ ନିଯୁକ୍ତ ହେଲେ। ଏହି ସମୟରେ

ଭାରତରେ ୱାରେନ ହେଷ୍ଟିଙ୍ଗଙ୍କର ନାନାପ୍ରକାର ଅତ୍ୟାଚାର ପାର୍ଲିମେଣ୍ଟର କର୍ଣ୍ଣଗୋଚର ହୁଅନ୍ତେ ମନ୍ତ୍ରୀମାନେ "ଭାରତ ବିଲ". ନାମକ ଏକ ବିଲ ଆଗତ କରିଥିଲେ; ମାତ୍ର ରାଜା ଏହି ବିଲର ବିରୋଧୀ ହୁଅନ୍ତେ ଏହା ପରିତ୍ୟକ୍ତ ହେଲା ଏବଂ ପୋର୍ଟଲାଣ୍ଡ କାର୍ଯ୍ୟ ତ୍ୟାଗ କଲେ ।

ଉଇଲିୟମ ପିଟଙ୍କ ମନ୍ତ୍ରିତ୍ୱ (୧୭୮୩-୧୮୦୦)

ପୋର୍ଟଲାଣ୍ଡଙ୍କ ଉତ୍ତାରେ ଆର୍ଲ ଅଫ ଚାଥାମଙ୍କ ଦ୍ୱିତୀୟ ପୁତ୍ର ଉଇଲିୟମ ପିଟ ୨୪ ବର୍ଷ ବୟସରେ ପ୍ରଧାନ ମନ୍ତ୍ରିତ୍ୱ ପ୍ରାପ୍ତ ହେଲେ । ପ୍ରଥମେ ଲର୍ଡ ନର୍ଥ ଓ ଫକ୍ସ ପ୍ରଭୃତି ତାହାଙ୍କୁ ପଦଚ୍ୟୁତ କରିବା ପାଇଁ ଯଥେଷ୍ଟ ଚେଷ୍ଟା କରିଥିଲେ ଏବଂ ତାହାଙ୍କ ଅଳ୍ପ ବୟସ ହେତୁ "ସ୍କୁଲବାଳକ" ବୋଲି ବିଦ୍ରୂପ କରିଥିଲେ; କିନ୍ତୁ ସେ ଲୋକମାନଙ୍କର ଓ ରାଜାଙ୍କର ବିଶ୍ୱାସଭାଜନ ଥିବାରୁ ଅଳ୍ପଦିନ ମଧ୍ୟରେ ସମସ୍ତ ବାଧା ଅତିକ୍ରମ କରି ଦେଶକୁ ଉନ୍ନତି ମାର୍ଗରେ ଘେନ ଯାଇଥିଲେ ।



ଲର୍ଡ ଓଏଲିଙ୍‌ଟନ୍

ୱାରେନ ହେଷ୍ଟିଙ୍ଗସଙ୍କ ସମୟରେ ଭାରତର ଶାସନ କାର୍ଯ୍ୟରେ ନାନା ବିଶୃଙ୍ଖଳା ହୋଇଥିବାରୁ ପିଟ୍ ସୁଶାସନ ନିମିତ୍ତ "ପିଟଙ୍କ ଭାରତ ଆଇନ" ନାମରେ ବିଦିତ ଏକ ଆଇନ ପ୍ରଣୟନ କରି-

ଭାରତଆଇନ

ଥିଲେ । ତଦ୍ଦ୍ୱାରା କମ୍ପାନୀର ପରିଚାଳକମାନଙ୍କ ଶାସନ କାର୍ଯ୍ୟ ପରିଦର୍ଶନ ନିମିତ୍ତ "ବୋର୍ଡ ଅଫ କନ୍‌ଟ୍ରୋଲ" ନାମକ ଏକ ସଭା ସ୍ଥାପିତ ହେଲା ଓ ରାଜାଙ୍କର ଏକ ମନ୍ତ୍ରୀ ତାହାର ସଭାପତି ହେଲେ ।

ପିଟ ଆଡାମ ସ୍ମିଥଙ୍କ ଅର୍ଥନୀତି ଅବଲମ୍ବନ କରି ଇଂଲଣ୍ଡର ବାଣିଜ୍ୟ ବୃଦ୍ଧି ଓ ଆର୍ଥିକ ଅବସ୍ଥାର ଉନ୍ନତି ମାନସରେ ମଦ୍ୟ ପ୍ରଭୃତି ବହୁ ବାଣିଜ୍ୟ ଦ୍ରବ୍ୟର ଶୁଳ୍କ ହ୍ରାସ କରି ଫ୍ରାନ୍ସ ସହିତ ବାଣିଜ୍ୟ ବିଷୟକ ଏକ ସନ୍ଧି କରିଥିଲେ ।

ବାଣିଜ୍ୟ ଶୁଳ୍କ ହ୍ରାସ

ତଦ୍ଦ୍ୱାରା ଦେଶର ବାଣିଜ୍ୟ ବୃଦ୍ଧି ହେବାରୁ ରାଜସ୍ୱ ବୃଦ୍ଧିପ୍ରାପ୍ତ ହୋଇ ଲୋକ-ମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ହେଲା ଏବଂ ବେଆଇନ ଗୁପ୍ତ ବାଣିଜ୍ୟ (Smuggling) ରହିତ ହୋଇଥିଲା ।

ପିଟ ବାଣିଜ୍ୟ ବୃଦ୍ଧି କରି ଜାତୀୟ ଋଣ ହ୍ରାସ କରିବାକୁ ଯତ୍ନବାନ୍ ହେଲେ ଏବଂ କେତେକ ବିଷୟରେ ବ୍ୟୟ ସଙ୍କୋଚ କରି କେତେକ ପରିମାଣରେ ସଫଳକାମ ହେଲେ । ଏଥିନିମିତ୍ତ "ସିଙ୍କିଫଣ୍ଡ" (Sinking Fund) ନାମକ ଗୋଟିଏ ତହବିଲ ସୃଷ୍ଟି ହେଲା ।

ଜାତୀୟ ଋଣହ୍ରାସ

ପିଟ ପରିତ୍ୟକ୍ତ ଗ୍ରାମମାନଙ୍କରୁ ପାର୍ଲିମେଣ୍ଟ ନିମିତ୍ତ ସଭ୍ୟ ନିର୍ବାଚନ କ୍ଷମତା ନେଇ ତାହା ବଡ଼ ବଡ଼ ନଗରମାନଙ୍କୁ ଦେବାକୁ ଇଚ୍ଛୁକ ହୋଇଥିଲେ; ମାତ୍ର ନାନା କାରଣବଶତଃ ଏହା କାର୍ଯ୍ୟରେ ପରିଣତ ହୋଇ ପାରି ନ ଥିଲା ।

ପାର୍ଲିମେଣ୍ଟର ସଂସ୍କାର

ପିଟଙ୍କ ମନ୍ତ୍ରିତ୍ୱ କାଳରେ ଇଉରୋପରେ ଏକ ଖଣ୍ଡ ପ୍ରଳୟ ଉପସ୍ଥିତ ହେଲା । ଫ୍ରାନ୍‌ସର ସାଧାରଣ ଲୋକମାନେ ରାଜା ଓ ସାମନ୍ତମାନଙ୍କ

ଫରାସୀ ବିପ୍ଳବ
୧୭୮୯

ଅତ୍ୟାଚାରରେ ଜର୍ଜରିତ ହୋଇ ପ୍ରତିବିଧାନ-କଲେ ସେମାନଙ୍କ ବିରୁଦ୍ଧରେ ଅସ୍ତ୍ର ଧାରଣ କଲେ । ଏହାର ପ୍ରଧାନ କାରଣ ଫ୍ରାନ୍‌ସର ସାମନ୍ତ ଓ ପ୍ରଧାନ ଧର୍ମଯାଜକ-ମାନଙ୍କ ହସ୍ତରେ ଦେଶର ଶାସନ ଭାର ନ୍ୟସ୍ତ ଥିବାରୁ ସେମାନେ ସାଧାରଣ ଲୋକମାନଙ୍କ ଉପରେ ନାନାପ୍ରକାର କର ନିର୍ଦ୍ଧାରଣ କରି ସ୍ୱୟଂ ଉକ୍ତ କରଭାରରୁ ଅବ୍ୟାହତି ପାଇଥିଲେ । ଏହି ଲୋକମାନଙ୍କୁ 'ଫିଉଡାଲ୍' ନିୟମ ଅନୁସାରେ ପାରିଶ୍ରମିକ ବିନା ସେମାନଙ୍କ ଜମିଦାରମାନଙ୍କ ଜମି ଚାଷ କରିବାକୁ ହେଉଥିଲା । ଏତଦ୍ୱାରା ସାଧାରଣ ବ୍ୟକ୍ତିଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଥିଲା ।

ଜମିଦାରମାନେ ପୁଣି ସହସ୍ର ସହସ୍ର କପୋତ ରକ୍ଷା କରୁଥିଲେ ଏବଂ କପୋତମାନେ ଦରିଦ୍ର ପ୍ରଜାମାନଙ୍କର ଶସ୍ୟକ୍ଷେତ୍ର ସମୂଳେ ନଷ୍ଟ କରୁଥିଲେ । ଜମିଦାରମାନେ ସମସ୍ତ ସମୟରେ ଶିକାରାର୍ଥ ବହିର୍ଗତ ହୋଇ ଦରିଦ୍ର ପ୍ରଜାମାନଙ୍କ ଶସ୍ୟକ୍ଷେତ୍ର ଅଶ୍ୱପଦ ଦଳିତ କରୁଥିଲେ । ଏଥିରେ କୌଣସି ଆପତ୍ତି କଲେ ପ୍ରଜାମାନେ ନିର୍ଯାତିତ ହେଉଥିଲେ ।

ଦେଶର ସମସ୍ତ ଉଚ୍ଚ ରାଜକାର୍ଯ୍ୟମାନ ସାମନ୍ତମାନଙ୍କୁହିଁ ପ୍ରଦତ୍ତ ହେଉଥିଲା । ସାଧାରଣ ଲୋକମାନଙ୍କର ସେଥିରେ କୌଣସି ଅଧିକାର ନ ଥିଲା । ସୁତରାଂ ଲୋକମାନଙ୍କ ମଧ୍ୟରେ ଅସନ୍ତୋଷ-ବହ୍ନି ଧୂମାୟମାନ ହେଉଥିଲା ।

ଲୋକମାନଙ୍କ ମଧ୍ୟରେ ଏହିପରି ଅସନ୍ତୋଷ ବର୍ଦ୍ଧିତ ହେବା ସମୟରେ ରୁଷୋ ଓ ଭଲ୍‌ଟେୟାର ନାମକ ଦୁଇ ଫରାସୀ ଲେଖକ ଦେଶ ମଧ୍ୟରେ ସାମ୍ୟବାଦ ପ୍ରଚାର କରିବାକୁ ଲାଗିଲେ । ସେ ଦୁହେଁ ପ୍ରକାଶ କରିବାକୁ ଲାଗିଲେ ଯେ, ଈଶ୍ୱରଙ୍କ ଦୃଷ୍ଟିରେ ସମସ୍ତ ଶ୍ରେଣୀର ମନୁଷ୍ୟ

ସମାନ । ଅତଏବ ଧନୀ ଓ ଜମିଦାରମାନଙ୍କର ସମସ୍ତ ସୁବିଧା ଭୋଗ କରି ଦରିଦ୍ରମାନଙ୍କୁ ଅବହେଳା ଓ ନିର୍ଯାତନ କରିବା ଅନୁଚିତ । ଏହି ଶିକ୍ଷା ପ୍ରାପ୍ତ ହୋଇ ଫରାସୀମାନେ ସ୍ୱୀୟ ଅଧିକାର ଲାଭ ନିମିତ୍ତ ସାମନ୍ତ ଓ ରାଜାଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହେଲେ ।

ଆମେରିକାବାସୀମାନଙ୍କ ସ୍ୱାଧୀନତା ଲାଭ ସମ୍ବାଦ ସେମାନଙ୍କୁ ଅଧିକ ଉତ୍ସାହିତ କଲା । ସେମାନେ ଆମେରିକାବାସୀମାନଙ୍କ ତୁଲ୍ୟ ଅତ୍ୟାଚାର-ହସ୍ତରୁ ମୁକ୍ତି ଲାଭ କରି ସ୍ୱାଧୀନତା ଲାଭ ନିମିତ୍ତ ପ୍ରାଣ ପାତ କରିବାକୁ ପ୍ରସ୍ତୁତ ହେଲେ ।

ଲୋକମାନଙ୍କ ମଧ୍ୟରେ ଅସନ୍ତୋଷ ଲକ୍ଷ୍ୟ କରି ଫରାସୀ ରାଜା ଷୋଡ଼ଶ ଲୁଇ ଏହାର ପ୍ରତିକାର ବିଧାନାର୍ଥ "ଷ୍ଟେଟସ୍ ଜେନେରେଲ" (States General) ନାମକ ଦେଶର ପ୍ରଧାନ ସଭା ଆହ୍ୱାନ କଲେ; ମାତ୍ର ଏହି ସଭାରେ ସାଧାରଣ ବ୍ୟକ୍ତିମାନେ ଉପସ୍ଥିତ ହୋଇ ଏହାକୁ ଗୋଟିଏ ଜାତୀୟ ସଭା (National Assembly) ରେ ପରିଣତ କରି ରାଜକ୍ଷମତା ଯଥେଷ୍ଟ ଖର୍ବ କରି ଦେଶ ଶାସନ ନିମିତ୍ତ ସାଧାରଣ ବ୍ୟକ୍ତିଙ୍କ ଦ୍ୱାରା ଗଠିତ ଏକ ସଭା ପ୍ରତିଷ୍ଠିତ କଲେ ।

ନୂତନ ପ୍ରତିଷ୍ଠିତ ସଭାର କାର୍ଯ୍ୟ ସନ୍ତୋଷପ୍ରଦ ନ ହେବାରୁ "ଜାକବିନସ୍" (Jacobins) ନାମରେ ପରିଚିତ ପାରି ନଗରୀର ସାଧାରଣ ଲୋକମାନେ ବିଦ୍ରୋହୀ ହୋଇ ବାସ୍ତିଲ (Bastille) ନାମକ ଫ୍ରାନ୍ସର ପ୍ରଧାନ କାରାଗାର ଭଙ୍ଗ କରି ସମସ୍ତ ବନ୍ଦୀମାନଙ୍କୁ ମୁକ୍ତ କଲେ ଏବଂ ରାଜାଙ୍କୁ ବନ୍ଦୀ କରି ସାମନ୍ତମାନଙ୍କ ଉପରେ ନାନାବିଧ ଅତ୍ୟାଚାର କରିବାକୁ ଲାଗିଲେ । ଜାକବିନ୍‌ମାନଙ୍କଦ୍ୱାରା ଦେଶର ଶାସନ ପରିଚାଳିତ ହେଲା । (Reign of Terror) ପ୍ରୁଷିୟା ଓ ଅଷ୍ଟ୍ରିଆର ରାଜାମାନେ ଫ୍ରାନସ ରାଜାଙ୍କ ସାହାଯ୍ୟାର୍ଥ ଅଗ୍ରସର ହୁଅନ୍ତେ "ଜାକବିନ୍" ମାନେ କ୍ରୁଦ୍ଧ ହୋଇ ରାଜା, ରାଣୀ ଓ ରାଜାଙ୍କ ପକ୍ଷୀୟ ସମସ୍ତ ଲୋକଙ୍କୁ ହତ୍ୟା କଲେ (୧୭୯୩) ।

ଫରାସୀ ବିପ୍ଳବର ପ୍ରଥମ ଭାଗରେ ପିଟ ଫକ୍ସ ପ୍ରମୁଖ ଇଂଲଣ୍ଡର ଲୋକମାନେ ବିପ୍ଳବବାଦୀମାନଙ୍କ ପ୍ରତି ସହାନୁଭୂତିସମ୍ପନ୍ନ ଥିଲେ । କାରଣ

ଫ୍ରାନ୍ସ ସହିତ ଇଂଲଣ୍ଡର ସମ୍ବନ୍ଧ

ସେମାନେ ମନେ କରୁଥିଲେ ଏତଦ୍ଦ୍ୱାରା ଫ୍ରାନ୍ସରେ ଇଂଲଣ୍ଡ ତୁଲ୍ୟ ଶାସନପ୍ରଣାଳୀ ପ୍ରତିଷ୍ଠିତ ହେବ ଏବଂ ଉଭୟ ଦେଶ ମଧ୍ୟରେ ସଖ୍ୟଭାବ ସ୍ଥାପିତ ହେବ । ସେଥିପାଇଁ ଇଂଲଣ୍ଡର ନେତୃର୍ଗରେ ନାନା ସଭା ସମିତି ଗଠିତ ହୋଇ ବିପ୍ଳବବାଦ ପ୍ରଚାରିତ ହେବାକୁ ଲାଗିଲା । କିନ୍ତୁ ଫ୍ରାନ୍ସର ବିପ୍ଳବବାଦୀ "ଜାକବିନ୍" ମାନେ ରାଜା, ରାଣୀ ଓ ଜମିଦାର-ମାନଙ୍କୁ ହତ୍ୟା କରିବାରୁ ଇଂଲଣ୍ଡର ଲୋକମାନଙ୍କର ମତ ପରିବର୍ତ୍ତିତ ହୋଇଥିଲା । ଇଂଲଣ୍ଡର ଖ୍ୟାତନାମା ବକ୍ତା ଓ ପାର୍ଲିମେଣ୍ଟର ସଭ୍ୟ ଏଡ଼ମଣ୍ଡ ବର୍କ (Burke) ବିପ୍ଳବର ଘୋର ପ୍ରତିବାଦ କରି ଇଂଲଣ୍ଡର ଲୋକମାନଙ୍କର ମତ ପରିବର୍ତ୍ତିତ କରିଥିଲେ । ପିଟ ଅଳ୍ପଦିନ ମଧ୍ୟରେ ଆପଣାର ଭ୍ରମ ବୁଝିପାରି ବର୍କଙ୍କ ମତ ଅବଲମ୍ବନ କରି ଶାସନ ସଂସ୍କାର ସ୍ଥଗିତ ରଖିଥିଲେ ଏବଂ ଫରାସୀମାନେ ହଲାଣ୍ଡ ଆକ୍ରମଣ କରିବାରୁ ସେ ଫ୍ରାନ୍ସ ସହିତ ଯୁଦ୍ଧ ଘୋଷଣା କରି ଇଂଲଣ୍ଡରେ ବିପ୍ଳବବାଦ ଦମନାର୍ଥ କଠୋର ଆଇନମାନ ପ୍ରଣୟନ କରିବାକୁ ଲାଗିଲେ ।

ବିଦେଶୀ ବ୍ୟକ୍ତିମାନେ ଇଂଲଣ୍ଡରେ ବିପ୍ଳବବାଦ ପ୍ରଚାର କରି ପାରନ୍ତି, ଏହି ଆଶଙ୍କା କରି ସେହି ବ୍ୟକ୍ତିମାନଙ୍କୁ ବିନା ବିଚାରରେ କାରାରୁଦ୍ଧ କରିବା ପାଇଁ ସେ ରାଜକର୍ମଚାରୀମାନଙ୍କୁ ଅଧିକାର ପ୍ରଦାନ କରି "ହେବିଅସ୍ କର୍ପସ୍ ଆକ୍ଟ" ନାମକ ଆଇନ ରହିତ କରାଇଥିଲେ ।

ରାଜନୈତିକ ସଭା ପ୍ରଭୃତିରେ ବିପ୍ଳବବାଦ ପ୍ରଚାରିତ ହୋଇପାରେ, ଏହି ଆଶଙ୍କା କରି ସେ ଦେଶ ମଧ୍ୟରେ ରାଜନୈତିକ ସଭା ବନ୍ଦ କଲେ.

ଏବଂ ରାଜାଙ୍କ ବିରୁଦ୍ଧରେ କୌଣସି ବ୍ୟକ୍ତି କିଛି ପ୍ରକାଶ କଲେ ତାହାଙ୍କୁ ଗୁରୁତର ଦଣ୍ଡ ଦେବାକୁ ଲାଗିଲେ ।

ବର୍କ ପ୍ରଥମେ ଫ୍ରାନ୍ସ ସହିତ ଯୁଦ୍ଧ ଘୋଷଣା କରିବା ପରାମର୍ଶ ଦେଇଥିଲେ ; ମାତ୍ର ପ୍ରଥମେ ପିଟ୍ ସେଥିରେ କର୍ଣ୍ଣପାତ ନ କରି ଫ୍ରାନ୍ସ ସହିତ ସଦ୍ଭାବ ରକ୍ଷା କରିବାକୁ ଇଚ୍ଛୁକ ଥିଲେ । କିନ୍ତୁ ପିଟଙ୍କ ଅପରିସନ୍ଧେ ଇଂଲଣ୍ଡର ବନ୍ଧୁ ହଲାଣ୍ଡକୁ ଫ୍ରାନ୍ସ ପ୍ରଥମେ ଆକ୍ରମଣ କଲାରୁ ସେ ବାଧ୍ୟ ହୋଇ ଫ୍ରାନ୍ସ ସହିତ ଯୁଦ୍ଧ ଘୋଷଣା କଲେ । ଏହି ଯୁଦ୍ଧରେ ପ୍ରଥମେ ଇଂଲଣ୍ଡ, ହଲାଣ୍ଡ, ପ୍ରୁଶିୟା, ଅଷ୍ଟ୍ରିଆ ଓ ସ୍ପେନ ଫ୍ରାନ୍ସ ବିରୁଦ୍ଧରେ ଯୋଗ ଦେଇଥିଲେ । ଫରାସୀ ନୌବହର ଇଂରାଜମାନଙ୍କ ଦ୍ୱାରା ବ୍ରେଷ୍ଟ-ଠାରେ ପରାଜିତ ହେଲେ ହେଁ ସ୍ଥଳଯୁଦ୍ଧରେ ମିତ୍ରଶକ୍ତିମାନେ ଫ୍ରାନ୍ସ କର୍ତ୍ତୃକ ସର୍ବତ୍ର ପରାଭୂତ ହୋଇଥିଲେ । ଫରାସୀମାନେ "ଆମଷ୍ଟାର୍ଡାମ୍" ଅଧିକାର କରି ହଲାଣ୍ଡର ରଣପୋତବହର ପରାଜିତ କରନ୍ତେ ହଲାଣ୍ଡର ସାଧାରଣ ଲୋକମାନେ ଫ୍ରାନ୍ସ ସହିତ ଯୋଗଦାନ କରି ସ୍ୱଦେଶକୁ ଏକ ସାଧାରଣତନ୍ତ୍ର ରାଜ୍ୟ ବୋଲି ଘୋଷଣା କଲେ । ସ୍ପେନ ମଧ୍ୟ ଇଂଲଣ୍ଡର ପ୍ରାଧାନ୍ୟ ଦେଖି ଈର୍ଷାପରବଶ ହୋଇ ଫ୍ରାନ୍ସ ସହିତ ଯୋଗଦାନ କଲା । ପ୍ରୁଶିୟା ଇଂଲଣ୍ଡଠାରୁ କୌଣସି ଅର୍ଥ ସାହାଯ୍ୟ ନ ପାଇ ଯୁଦ୍ଧ ତ୍ୟାଗ କଲା ।

ଇଂଲଣ୍ଡ ମିତ୍ରଶକ୍ତିମାନଙ୍କଦ୍ୱାରା ପରିତ୍ୟକ୍ତ ହୋଇ ହେଁ କେବଳ ମାତ୍ର ଅଷ୍ଟ୍ରିଆ ସହ ଫ୍ରାନ୍ସର ସମ୍ମୁଖୀନ ହେଲା । ଏହି ସମୟରେ ଇଂରାଜମାନେ ହଲାଣ୍ଡ ଅଧିକୃତ ଉତ୍ତମାଶା ଅନ୍ତରୀପ, ମଲକ୍କା ଓ ସିଂହଳ ଦ୍ୱୀପ ଅଧିକାର କଲେ । ସ୍ପେନ ଓ ହଲାଣ୍ଡର ରଣପୋତ ସାହାଯ୍ୟରେ ଫ୍ରାନ୍ସ ଇଂଲଣ୍ଡ ଆକ୍ରମଣ କରିବାକୁ ଉଦ୍‌ଯୋଗ କରୁଥିଲା; ମାତ୍ର ସ୍ପେନର ରଣପୋତବହର ସେଣ୍ଟ ଭିନସେଣ୍ଟ ନାମକ ସ୍ଥାନରେ ଓ ହଲାଣ୍ଡର ନୌବହର କ୍ୟାମ୍ପାର-ଡାଉନଠାରେ ପରାଜିତ ହେବାରୁ ତାହାଙ୍କର ସେ ଆଶା ଲୋପ ହେଲା ।

ଫ୍ରାନ୍ସ ସହିତ ଇଂଲଣ୍ଡର ଯୁଦ୍ଧ

ଏହି ସମୟରେ କର୍ଶିକା ଦ୍ୱୀପର ନେପୋଲିୟନ ବୋନାପାର୍ଟ ନାମକ ଏକ ସୈନିକ ପୁରୁଷ ସ୍ୱୀୟ ସାହସ ଓ ରଣକୌଶଳ ନିମିତ୍ତ ବିଶେଷ ଖ୍ୟାତି ନେପୋଲିୟନ ଲାଭକରି ଅଷ୍ଟ୍ରିୟାନମାନଙ୍କୁ ଇଟାଲିରୁ ବୋନାପାର୍ଟ ବହିଷ୍କୃତ କରି ସ୍ୱୟଂ ଫରାସୀ ସୈନ୍ୟର ନେତୃତ୍ୱ ପ୍ରାପ୍ତ ହୋଇଥିଲେ । ହଲାଣ୍ଡ ଓ ସ୍ପେନ ସାହାଯ୍ୟରେ ଲଂଲଣ୍ଡ ଆକ୍ରମଣ କରିବା ପ୍ରୟାସ ବିଫଳ ହୁଅନ୍ତେ ସେ ମାଲଟା ଅଧିକାର କରି ମିଶର ଆକ୍ରମଣ କଲେ । ତାହାଙ୍କର ଉଦ୍ଦେଶ୍ୟ ଥିଲା, ମିଶର ଅଧିକାର କରି ଭାରତବର୍ଷ ଆକ୍ରମଣପୂର୍ବକ ଇଂରାଜମାନଙ୍କୁ ସେଠାରୁ ବହିଷ୍କୃତ କରିବେ । କିନ୍ତୁ ତାହାଙ୍କର ଏହି ଆଶା ବିଫଳ ହୋଇଥିଲା । ନେଲ୍‌ସନ୍ (Nelson) ନାମକ ଇଂରାଜ ନୌବାହିର ଅଧ୍ୟକ୍ଷ ନେପୋଲିୟନଙ୍କ ରଣପୋତବାହିର ଅନୁସରଣ କରି ତାହା ନୀଲନଦ ମୁହାଣରେ, ଅବୁକାର ଉପସାଗରରେ ପରାସ୍ତ କଲେ (୧୭୯୮) । ତତ୍‌ପରେ ନେପୋଲିୟନ "ଏକାର" ଅଧିକାର କରି ଭାରତବର୍ଷ ଅଭିମୁଖରେ ସ୍ଥଳପଥରେ ଅଗ୍ରସର ହେବାକୁ ମନଃସ୍ଥ କରିଥିଲେ; ମାତ୍ର ସେଠାରେ ତୁର୍କ ଓ ସାର୍ ସିଡ୍‌ନୀ ସ୍ମିଥଙ୍କଦ୍ୱାରା ଚାଳିତ ଇଂରାଜମାନଙ୍କ ଦ୍ୱାରା ପରାସ୍ତ ହେବାରୁ ତାହାଙ୍କୁ ଭାରତ ଆକ୍ରମଣ ସଙ୍କଳ୍ପ ପରିତ୍ୟାଗ କରିବାକୁ ହୋଇଥିଲା ।


ନେପୋଲିୟନ

ଏହି ସମୟରେ ରୁଷିଆ ଓ ଅଷ୍ଟ୍ରିଆ ଇଂଲଣ୍ଡ ସହିତ ଯୋଗଦାନ କରି ଫ୍ରାନ୍‌ସ ବିରୁଦ୍ଧରେ ଯୁଦ୍ଧ କରିବାରୁ ନେପୋଲିୟନ ଫ୍ରାନ୍‌ସ

ପ୍ରତ୍ୟାଗମନ କରି ତାହାର "ପ୍ରଥମ କନସଲ" ବା ଶାସନକର୍ତ୍ତା ନିଯୁକ୍ତ ହୋଇ ଅଷ୍ଟ୍ରିଆନମାନଙ୍କୁ ଇଟାଲିରେ "ମାରେଙ୍ଗୋ" ନାମକ ସ୍ଥାନରେ ପରାସ୍ତ କଲେ (୧୮୦୦)। ତଦନନ୍ତର ଅଷ୍ଟ୍ରିଆନମାନେ ପୁନର୍ବାର 'ହୋହେନଲିନଡେନ୍ ନାମକ' ସ୍ଥାନରେ ପରାସ୍ତ ହେବାରୁ ଫ୍ରାନ୍ସ ସହିତ ଗୋଟିଏ ସନ୍ଧି କରି ଇଂରାଜପକ୍ଷ ପରିତ୍ୟାଗ କଲେ (୧୮୦୨)। ଇଟାଲିରେ ନେପୋଲିୟନଙ୍କ ପ୍ରାଧାନ୍ୟ ସ୍ଥାପିତ ହେଲା।

ଇଉରୋପର ଉତ୍ତରାଞ୍ଚଳର ରାଜାମାନେ ମଧ୍ୟ ଇତିପୂର୍ବେ ଇଂଲଣ୍ଡ ପକ୍ଷ ପରିତ୍ୟାଗ କରି ଫ୍ରାନ୍ସ ପକ୍ଷ ଅବଲମ୍ବନ କରିଥିଲେ। ଇଂରାଜମାନେ ସାର ରାଲଫ ଏବାର୍ କ୍ରମ୍ବିଙ୍କ ନେତୃତ୍ୱରେ ଫରାସୀମାନଙ୍କୁ ଆଲେକଜାଣ୍ଡ୍ରିଆଠାରେ ପରାସ୍ତ କରି ସେମାନଙ୍କୁ ମିଶରରୁ ବହିଷ୍କୃତ କଲେ ଏବଂ ଡେନମାନଙ୍କ ନୌବହର ନେଲସନ ନାମକ ଖ୍ୟାତନାମା ଇଂରାଜ ନୌବହରର ଅଧ୍ୟକ୍ଷଙ୍କ ଦ୍ୱାରା "କୋପେନହେଗେନ" ଠାରେ ପରାଭୂତ ହେଲା। ଫରାସୀମାନେ ମିଶରରୁ ବିତାଡ଼ିତ ହୁଅନ୍ତେ ନେପୋଲିୟନ ଶାନ୍ତି ସ୍ଥାପନ ମାନସରେ ସନ୍ଧିର ପ୍ରୟାସୀ ହେଲେ। "ଏମିନ୍ସ" ନାମକ ସ୍ଥାନରେ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା। ଏତଦ୍ଦ୍ୱାରା ଇଂଲଣ୍ଡ ଫରାସୀମାନଙ୍କଠାରୁ ପ୍ରାପ୍ତ ସମସ୍ତ ପ୍ରଦେଶ ପ୍ରତ୍ୟର୍ପଣ କଲା; କେବଳ ସ୍ପେନଠାରୁ ପ୍ରାପ୍ତ ଟ୍ରିନିଦାଦ ଓ ଡଚମାନଙ୍କଠାରୁ ପ୍ରାପ୍ତ ସିଂହଳ ଦ୍ୱୀପ ତାହା ଅଧୀନରେ ରହିଲା। ମାଲଟା ସେଣ୍ଟଜନର ସୈନିକମାନଙ୍କୁ ପ୍ରତ୍ୟର୍ପଣ କରିବାର ସ୍ଥିର ହେଲା।

ଇଂଲଣ୍ଡ ସହିତ ଆୟର୍ଲାଣ୍ଡର ମିଶ୍ରଣ, ଆଇରିସମାନଙ୍କର ସାମାଜିକ ଦୁର୍ଗତି

ଆୟର୍ଲଣ୍ଡର ପ୍ରାୟ ଶତକଡା ୮୦ ଜଣ ଲୋକ କାଥଲିକ୍। ତୃତୀୟ ଉଇଲିୟମଙ୍କ ସମୟରେ ସେମାନେ ଦ୍ୱିତୀୟ ଯେମସଙ୍କ ପକ୍ଷ ଅବଲମ୍ବନ କରିଥିବାରୁ ସେମାନଙ୍କ ବିରୁଦ୍ଧରେ ଅତି କଠୋର ଆଇନମାନ ହୋଇଥିଲା। ଉକ୍ତ ଆଇନ ହେତୁ କାଥଲିକମାନେ କୌଣସି ବିଦ୍ୟାଳୟରେ ଶିକ୍ଷା ଲାଭ କରିପାରୁ ନ ଥିଲେ କିମ୍ବା ସ୍ୱତନ୍ତ୍ର କୌଣସି ସ୍କୁଲ ପରିଚାଳନ କରି ପାରୁ ନ ଥିଲେ। ସ୍ୱଦେଶରେ ଭୂମି କ୍ରୟ କିମ୍ବା କୌଣସି ପ୍ରୋଟେଷ୍ଟାଣ୍ଟ

ରମଣୀକୁ ବିବାହ କରିବା ନିଷିଦ୍ଧ ହୋଇଥିଲା । କାଥଲିକ୍ ବିଶପମାନେ ସ୍ୱଦେଶରୁ ନିର୍ବାସିତ ହୋଇଥିଲେ ଏବଂ ସେମାନଙ୍କ ଧର୍ମମନ୍ଦିରମାନଙ୍କରେ ଘଣ୍ଟା ବ୍ୟବହାର ନିଷିଦ୍ଧ ହୋଇଥିଲା ।

ଆଇରିସ୍‌ମାନଙ୍କର ରାଜନୈତିକ ଦୁର୍ଗତି

ଆୟର୍ଲଣ୍ଡର ଗୋଟିଏ ସ୍ୱତନ୍ତ୍ର ପାର୍ଲମେଣ୍ଟ ଥିଲା; ମାତ୍ର ସେଥିରେ କାଥଲିକମାନେ ସଭ୍ୟ ହୋଇ ପାରୁ ନ ଥିଲେ । ଅଧିକନ୍ତୁ ୧୪୯୫ର ପନ (Poyning) ନିୟମ ଅନୁଯାୟୀ ଆଇରିସ୍ ପାର୍ଲିମେଣ୍ଟ ଇଂଲଣ୍ଡର ପ୍ରିଭିକାଉନସିଲର ଅମତରେ ସ୍ୱଦେଶ ନିମିତ୍ତ କୌଣସି ନିୟମ ପ୍ରଣୟନ କରି ପାରୁ ନ ଥିଲେ । ଆୟର୍ଲାଣ୍ଡର ସମସ୍ତ ଉଚ୍ଚ ରାଜକାର୍ଯ୍ୟମାନ ଇଂରାଜମାନଙ୍କୁ ପ୍ରଦତ୍ତ ହୋଇଥିଲା ଏବଂ ସେମାନଙ୍କ ଉପରେ ଆଇରିସ୍ ପାର୍ଲିମେଣ୍ଟର କୌଣସି ଅଧିକାର ନ ଥିଲା ।

ଆଇରିସ୍‌ମାନଙ୍କର ଆର୍ଥିକ ଦୁରବସ୍ଥା

ଆଇରିସ୍‌ମାନଙ୍କର ରାଜନୈତିକ ଦୁର୍ଗତି ଅପେକ୍ଷା ଆର୍ଥିକ ଦୁର୍ଗତି ଅତ୍ୟନ୍ତ ଶୋଚନୀୟ ହୋଇ ପଡିଥିଲା । ତୃତୀୟ ଉଇଲିୟମଙ୍କ ସମୟରେ ଦ୍ୱିତୀୟ ଜେମସଙ୍କ ପକ୍ଷ ଅବଲମ୍ବନ ହେତୁ ସେମାନଙ୍କର ଭୂମି ଇଂରାଜମାନଙ୍କୁ ପ୍ରଦତ୍ତ ହୋଇଥିଲା । ଏହି ଭୂମ୍ୟଧିକାରୀମାନେ ସ୍ୱୟଂ ଆୟର୍ଲାଣ୍ଡରେ ନ ରହି ଜଣେ ଲେଖାଏଁ "ମାରଫତଦାର" (Middleman) ନିଯୁକ୍ତ କରିଥିଲେ । ସେମାନେ ପ୍ରଜାମାନଙ୍କୁ ନାନା ପ୍ରକାରେ କରଭାରରେ ପ୍ରପୀଡ଼ିତ କରୁଥିଲେ । ଏହା ବ୍ୟତୀତ ଆଇରିସମାନଙ୍କୁ ସେମାନଙ୍କ ଆୟର ଦଶମାଂଶ (Tithes) ପ୍ରୋଟେଷ୍ଟାଣ୍ଟ ଧର୍ମଯାଜକଙ୍କୁ ଦେବାକୁ ହେଉଥିଲା । କାଥଲିକ୍ ଧର୍ମଯାଜକମାନଙ୍କୁ ମଧ୍ୟ ସେମାନଙ୍କର ପ୍ରାପ୍ୟ ଦେବାକୁ ହେଉଥିଲା ।

ଆୟର୍ଲାଣ୍ଡର ପ୍ରଧାନ ବ୍ୟବସାୟ ଥିଲା କୃଷି, ମେଷପାଳନ ଓ ପଶମ ବସ୍ତ୍ରାଦିର କାରବାର; ମାତ୍ର ସେମାନଙ୍କର ଭୂମି ସେମାନଙ୍କର ହସ୍ତଚ୍ୟୁତ

ହୋଇଥିଲା । ବିଦେଶ ସହିତ ପଶମ ଦ୍ରବ୍ୟର କାରବାର କରିବାକୁ ମଧ୍ୟ ସେମାନେ ନଷିଦ୍ଧ ହୋଇଥିଲେ । ସେମାନେ ପଶମ କେବଳ ଇଂଲଣ୍ଡକୁ ପଠାଇ ପାରୁଥିଲେ ଏବଂ ସେଥିନମିତ୍ତ ପ୍ରଚୁର ଶୁଳ୍କ ଦେବାକୁ ହେଉଥିଲା । ଏହି ପ୍ରକାରେ ଆୟର୍ଲାଣ୍ଡର ଶିଳ୍ପବାଣିଜ୍ୟ ବିନଷ୍ଟ ହୋଇଥିଲା ଓ ଲୋକ-ମାନଙ୍କର ଅବସ୍ଥା ଶୋଚନୀୟ ହୋଇ ପଡ଼ିଥିଲା । ଅଧିକାଂଶ ବ୍ୟକ୍ତି ଦେଶ ତ୍ୟାଗ କରି ସ୍ପେନ, ଫ୍ରାନ୍ସ, ଅଷ୍ଟ୍ରିୟା ପ୍ରଭୃତି ଦେଶରେ ସୈନ୍ୟ ବିଭାଗରେ ଯୋଗଦାନ କରୁଥିଲେ ।

**ଆଇରିସ୍‌ମାନଙ୍କ ଅବସ୍ଥାର ପରିବର୍ତ୍ତନ**

ଆମେରିକା ସହିତ ଯୁଦ୍ଧ ଉପସ୍ଥିତ ହେବାରୁ ଇଂରାଜମାନେ ଆଇରିସ୍‌ମାନଙ୍କୁ ସନ୍ତୁଷ୍ଟ କରିବା ମାନସରେ ସେମାନଙ୍କୁ ସ୍ୱଦେଶରେ ଭୂମି କ୍ରୟ କରିବାର ଅଧିକାର ପ୍ରଦାନ କଲେ (୧୭୭୮) ।

ତଦନନ୍ତର ଇଉରୋପର ଶକ୍ତିବର୍ଗ ଆମେରିକା ପକ୍ଷ ଅବଲମ୍ବନ କରି ଇଂଲଣ୍ଡ ବିରୁଦ୍ଧରେ ଦଣ୍ଡାୟମାନ ହେବାରୁ ଇଂରାଜମାନେ ଆୟର୍ଲାଣ୍ଡରୁ ଅଧିକାଂଶ ଇଂରାଜ ସୈନ୍ୟ ନେଇ ଯାଇଥିଲେ । ଆୟର୍ଲାଣ୍ଡ ଅରକ୍ଷିତ ଅବସ୍ଥାରେ ପତିତ ହେଲା । ଏହି ସମୟରେ ବିଦେଶୀ ଶତ୍ରୁ ଆକ୍ରମଣ ଆଶଙ୍କା କରି ଆୟର୍ଲାଣ୍ଡରେ ସ୍ୱେଚ୍ଛାସେବକ ସୈନ୍ୟଦଳ (Volunteers) ଗଠିତ ହେଲା । ହେନରି ଗ୍ରାଟାନ ନାମକ ଏକ ଆଇରିସ ନେତା ଦେଶର ଦୁରବସ୍ଥା ଦୂରୀକରଣରେ ଅଗ୍ରସର ହେଲେ । ଇଂରାଜମାନେ ଏହି ସଙ୍କଟ ସମୟରେ ଆଇରିସମାନଙ୍କୁ ଶାନ୍ତ କରିବା ପାଇଁ ବାଣିଜ୍ୟ ବିଷୟକ କେତେକ ବାଧା ନିଷେଧ ପ୍ରତ୍ୟାହୃତ କଲେ (୧୭୮୦); ଏତଦ୍ଦ୍ୱାରା ଆଇରିସ୍-ମାନେ ବାଣିଜ୍ୟ ପାଇଁ କେତେକ ସୁବିଧା ପ୍ରାପ୍ତ ହେଲେ । ୧୭୮୨ ରେ ପଏନିଂ (Poyning) ରହିତ କରାଗଲା ଏବଂ ଆଇରିସ୍ ପାର୍ଲିମେଣ୍ଟ ସ୍ୱଦେଶ ପାଇଁ ନିୟମ ପ୍ରସ୍ତୁତ କରିବାର ଅଧିକାର ପ୍ରାପ୍ତ ହେଲା ।

ମାତ୍ର ଏତଦ୍ଦ୍ୱାରା ଆଇରସ୍ କାଥଲିକ୍‌ମାନଙ୍କର ଦୁଃଖ ଦୂର ନ ହୋଇ ବରଂ ବୃଦ୍ଧିପ୍ରାପ୍ତ ହେଲା; କାରଣ ଆଇରସ୍ ପାର୍ଲିମେଣ୍ଟର ପ୍ରୋଟେଷ୍ଟାଣ୍ଟ ସଭ୍ୟମାନେ କାଥଲିକମାନଙ୍କ ବିରୁଦ୍ଧରେ ନାନା ପ୍ରକାର ଆଇନ ପ୍ରସ୍ତୁତ କରିବାକୁ ଲାଗିଲେ । ଫରାସୀବିପ୍ଳବ ଉପସ୍ଥିତ ହୁଅନ୍ତେ ଅୟର୍ଲାଣ୍ଡର କାଥଲିକ ଓ ପ୍ରେସବାଇଟାରିଅନ୍‌ମାନେ ଉଲଫି ଟୋନ (Wolfe Tone) ନାମକ ନେତାଙ୍କ ଅଧୀନରେ ଏକତ୍ର ହୋଇ (United Irishmen) ଶାସନସଂସ୍କାର ନିମନ୍ତ ଗୁରୁତର ଆନ୍ଦୋଳନ ଉପସ୍ଥିତ କଲେ । ଆଇରସ କାଥଲିକ୍‌ମାନଙ୍କୁ ପାର୍ଲିମେଣ୍ଟ ସଭ୍ୟ ନିର୍ବାଚନରେ ଭୋଟ ଦେବା ଅଧିକାର ପ୍ରଦତ୍ତ ହେଲା; ମାତ୍ର ପାର୍ଲିମେଣ୍ଟର ସଭ୍ୟ ହେବା ଅଧିକାର ସେମାନଙ୍କୁ ପ୍ରଦତ୍ତ ହୋଇ ନ ଥିଲା । ସୁତରାଂ ସେମାନଙ୍କର ଅସନ୍ତୋଷ ଦୂର ହୋଇ ନ ଥିଲା ।

ଏହି ସମୟରେ ଲର୍ଡ ଫିଟ ଉଇଲିୟମ ନାମକ ଏକ ବ୍ୟକ୍ତି ଅୟର୍ଲାଣ୍ଡର ଶାସନକର୍ତ୍ତା ନିଯୁକ୍ତ ହୋଇଥିଲେ । ସେ କାଥଲିକମାନଙ୍କୁ ସମ୍ପୂର୍ଣ୍ଣ ରାଜନୈତିକ ସ୍ୱାଧୀନତା (Catholic Emancipation) ପ୍ରଦାନପୂର୍ବକ ସେମାନଙ୍କୁ ପାର୍ଲିମେଣ୍ଟର ସଭ୍ୟ ହେବା ଅଧିକାର ପ୍ରଦାନ କରିବାର ପକ୍ଷପାତୀ ଥିବାରୁ ଅୟର୍ଲାଣ୍ଡର ପ୍ରୋଟେଷ୍ଟାଣ୍ଟ କର୍ମଚାରୀମାନେ ତାହାଙ୍କର ଘୋର ବିରୋଧୀ ହୋଇ ଉଠିଲେ । ସୁତରାଂ ତାହାଙ୍କୁ ଅୟର୍ଲାଣ୍ଡ ପରିତ୍ୟାଗ କରିବାକୁ ହୋଇଥିଲା । ତଦନନ୍ତର ସେଠାର ପ୍ରୋଟେଷ୍ଟାଣ୍ଟମାନେ (Orange men) ଏକ ଦଳ ଗଠନ କରି କାଥଲିକମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରିବାକୁ ଲାଗିଲେ । କାଥଲିକ୍‌ମାନେ ଫରାସୀମାନଙ୍କ ଭରସାରେ ବିଦ୍ରୋହୀ ହୋଇ ଉଠିଲେ; ମାତ୍ର ଫରାସୀମାନେ ଅୟର୍ଲାଣ୍ଡରେ ଉପସ୍ଥିତ ହେବା ପୂର୍ବେ ବିଦ୍ରୋହୀମାନେ 'ଭିନଗାର ହିଲ୍' ନାମକ ସ୍ଥାନରେ ପରାସ୍ତ ହୋଇଥିଲେ ।

ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ପିଟ୍ ଇଂରେଜ ପାର୍ଲିମେଣ୍ଟ ସହିତ ଆଇରିଷ୍ ପାର୍ଲିମେଣ୍ଟର ମିଶ୍ରଣ ଦ୍ୱାରା ଦେଶର ଶାନ୍ତି ସ୍ଥାପନ କରିବା ଉଦ୍ଦେଶ୍ୟରେ ଆଇରିଷ୍ ପ୍ରୋଟେଷ୍ଟାଣ୍ଟମାନଙ୍କୁ ଉଚ୍ଚପଦ ଏବଂ ଆଇରିଷ୍ କାଥଲିକମାନଙ୍କୁ ସମ୍ପୂର୍ଣ୍ଣ ରାଜନୈତିକ ସ୍ୱାଧୀନତା (Catholic Emancipation) ପ୍ରଦାନ କରିବାର ଆଶା ପ୍ରଦର୍ଶନପୂର୍ବକ ବଶୀଭୂତ କରି ୧୮୦୦ ଖ୍ରୀ: ଅ:ରେ ଉଭୟ ଦେଶର ପାର୍ଲିମେଣ୍ଟର ମିଶ୍ରଣ ସମ୍ପନ୍ନ କରିଥିଲେ ।

ଏତଦ୍ଦ୍ୱାରା ଆୟର୍ଲଣ୍ଡ ଇଂଲିସ ପାର୍ଲିମେଣ୍ଟର ହାଉସ୍ ଅଫ୍ ଲର୍ଡ୍ସକୁ ୪ ଜଣ ବିଶପ ଓ ୨୮ ଜଣ ଲର୍ଡ଼ ଏବଂ ହାଉସ୍ ଅଫ୍ କମନ୍ସକୁ ୧୦୦ ଜଣ ସଭ୍ୟ ପ୍ରେରଣ କରିବାର ଅଧିକାର ପ୍ରାପ୍ତ ହେଲା । ଆୟର୍ଲଣ୍ଡ ସ୍ୱୀୟ ନିୟମାନୁଯାୟୀ ଶାସିତ ହେବାକୁ ଲାଗିଲା ଓ ବାଣିଜ୍ୟ ବିଷୟରେ ସମ୍ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତ ହେଲା । ଆୟର୍ଲଣ୍ଡର ସେଣ୍ଟ ପାଟ୍ରିକଙ୍କ କ୍ରଶଯୁକ୍ତ ଜାତୀୟ ପତାକା, ଇଂଲଣ୍ଡର ଜାତୀୟ ପତାକା (Union Jack) ସହିତ ମିଳିତ ହେଲା; ମାତ୍ର ପିଟଙ୍କ ପରାମର୍ଶ ଅନୁଯାୟୀ କାଥଲିକମାନଙ୍କୁ ସମ୍ପୂର୍ଣ୍ଣ ରାଜନୈତିକ ସ୍ୱାଧୀନତା ଦେବାକୁ ରାଜା ଆପତ୍ତି କରନ୍ତେ ପିଟ ପଦ ତ୍ୟାଗ କଲେ ।

**ପାର୍ଲିମେଣ୍ଟ ମିଶ୍ରଣ**

ନେପୋଲିୟନଙ୍କ ସହିତ ଇଂଲଣ୍ଡର ସନ୍ଧି ଅଧିକ ଦିନ ସ୍ଥାୟୀ ହୋଇ ନ ଥିଲା । ନେପୋଲିୟନ ଇଉରୋପରେ ଆପଣାର କ୍ଷମତା ବୃଦ୍ଧି ନିମିତ୍ତ ନାନା ଉପାୟ ଅବଲମ୍ବନ କରିବାକୁ ଲାଗିଲେ । ସେ ହଲଣ୍ଡକୁ ଫ୍ରାନ୍ସ ସହିତ ଯୁକ୍ତ କରି ସୁଇଜାରଲଣ୍ଡକୁ ସ୍ୱୀୟ ବଶବର୍ତ୍ତୀ କରିବା ପାଇଁ ସେଠାକୁ ଏକଦଳ ସୈନ୍ୟ ପ୍ରେରଣ କଲେ । ଇଂଲଣ୍ଡ ଆକ୍ରମଣ କରିବା ତାହାଙ୍କର ଚରମ ଲକ୍ଷ୍ୟ ଥିଲା । ସେଥିପାଇଁ ସେ

**ଫରାସୀ ଯୁଦ୍ଧର ପୁନରାରମ୍ଭ (୧୮୦୩—୧୮୧୫)**

ବନ୍ଦରଗୁଡ଼ିକ ତଥା ନିର୍ମାଣ କରିବାକୁ ଲାଗିଲେ । ଆମିନ୍ସ ସନ୍ଧି ଅନୁଯାୟୀ ଇଂଲଣ୍ଡର ମାଲଟା ଦ୍ୱୀପ ପ୍ରତ୍ୟର୍ପଣ କରିବାର ସ୍ଥିର ହୋଇଥିଲା । ନେପୋଲିୟନ ତାହା ଦାବୀ କରନ୍ତେ ଇଂରେଜମାନେ ତାହା ୧୦ ବର୍ଷ ପାଇଁ ସ୍ୱୀୟ ଅଧୀନରେ ରଖିବାର ଇଚ୍ଛା ପ୍ରକାଶ କଲେ । ସୁତରାଂ ପୁନର୍ବାର ଫ୍ରାନସ ସହିତ ଇଂଲଣ୍ଡର ଯୁଦ୍ଧ ଘୋଷିତ ହେଲା ।

ଟ୍ରାଫାଲଗାର ଯୁଦ୍ଧ

ନେପୋଲିୟନ ଯୁଦ୍ଧ ଘୋଷଣା କରି ଫ୍ରାନ୍‌ସର ସମ୍ରାଟ୍ ପଦ ଗ୍ରହଣପୂର୍ବକ ସ୍ପେନ୍ ଓ ଫ୍ରାନ୍‌ସର ରଣତରୀ ସାହାଯ୍ୟରେ ଇଂଲଣ୍ଡ ଆକ୍ରମଣାର୍ଥ ସୈନ୍ୟ ସହିତ ଯୋଗଦାନ କଲେ । ଫ୍ରାନ୍‌ସର ସହିତ ଯୁଦ୍ଧ ଆରମ୍ଭ ହୁଅନ୍ତେ ପିଟ୍ ପୁନର୍ବାର ପ୍ରଧାନ ମନ୍ତ୍ରିତ୍ୱ ଗ୍ରହଣପୂର୍ବକ ଅଷ୍ଟ୍ରିଆ ଓ ରୁଷିଆ ସହିତ ଏକ ସନ୍ଧିସୂତ୍ରରେ ଆବଦ୍ଧ ହେଲେ ଏବଂ ଫରାସୀ ରଣତରୀବହର ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବା ପାଇଁ ନେଲସନ ପ୍ରଭୃତି କେତେକ ଉପଯୁକ୍ତ ସେନାନାୟକ ନିଯୁକ୍ତ କଲେ । ନେଲସନଙ୍କ ଅଧିନାୟକତ୍ୱରେ ଟ୍ରାଫାଲଗାର ନିକଟରେ ଇଂରାଜ ନୌବହର ସ୍ପେନ ଓ ଫ୍ରାନ୍‌ସର ସମ୍ମିଳିତ ନୌବହରର ସମ୍ମୁଖୀନ ହେଲା । ଇଂରାଜ ନୌବହର ଦୁଇ ସମାନ୍ତରାଳ ରେଖାରେ ଶତ୍ରୁ ନୌବହର ଭେଦ କରି ତାହା ବିଧ୍ୱସ୍ତ କଲେ । ଏହି ଯୁଦ୍ଧରେ ନେଲସନ ପ୍ରାଣ ହରାଇଥିଲେ (୧୮୦୫) ।

ଅଷ୍ଟ୍ରେଲିଜ ଯୁଦ୍ଧ

ଟ୍ରାଫାଲଗାର ଯୁଦ୍ଧରେ ଫ୍ରାନ୍‌ସର ନୌଶକ୍ତି ବିନଷ୍ଟ ହୋଇଥିଲା; ମାତ୍ର ନେପୋଲିୟନ ସ୍ଥଳଯୁଦ୍ଧରେ ଇଂଲଣ୍ଡର ମିତ୍ରଶକ୍ତି ଅଷ୍ଟ୍ରିଆ ଓ ରୁଷିଆକୁ "ଅଷ୍ଟ୍ରେଲିଜ" ଯୁଦ୍ଧରେ ପରାସ୍ତ କରି ଅଷ୍ଟ୍ରିଆକୁ ଇଂଲଣ୍ଡ ପକ୍ଷ ପରିତ୍ୟାଗପୂର୍ବକ ଫ୍ରାନ୍‌ସ ସହିତ ସନ୍ଧି କରିବାକୁ ବାଧ୍ୟ କରିଥିଲେ । ଏହି ଦୁଃସମ୍ବାଦ ପ୍ରାପ୍ତ ହୋଇ ପିଟ୍ ଭଗ୍ନ

ହୃଦୟରେ ପ୍ରାଣତ୍ୟାଗ କଲେ । ତୃତୀୟ ଟୋରୀ ଓ ରାଜବନ୍ଧୁ (King's friends) ଏହିମାନଙ୍କ ମଧ୍ୟରୁ ଉପଯୁକ୍ତ ଲୋକଙ୍କ ଦ୍ୱାରା ମନ୍ତ୍ରୀ ସଙ୍ଘ ଗଠିତ ହେଲା (Ministry of all the talents ) ମାତ୍ର ତାହା ଅଳ୍ପ ଦିନମାତ୍ର ସ୍ଥାୟୀ ହୋଇଥିଲା । ପ୍ରୁଷିଆ ଇତିମଧ୍ୟରେ ଫ୍ରାନ୍ସ ବିରୁଦ୍ଧରେ ଦଣ୍ଡାୟମାନ ହୋଇଥିଲା; କିନ୍ତୁ ନେପୋଲିୟନ ତାହାକୁ "ଜେନା" ନାମକ ଯୁଦ୍ଧରେ ପରାଜିତ କରିଥିଲେ । ରୁଷିଆ ନେପୋଲିୟନଙ୍କ ବଶ୍ୟରେ ଟିଲସିଟ୍ ନାମକ ସ୍ଥାନରେ ଏକ ସନ୍ଧି କରିଥିଲା ।



ନେଲସନ୍

ଜେନା ଯୁଦ୍ଧରେ ପ୍ରୁଷିଆର ଧ୍ୱଂସ ସାଧନ କରି ନେପୋଲିୟନ ବର୍ଲିନଠାରେ ଏକ ଘୋଷଣା-ପତ୍ର ପ୍ରଚାର କଲେ । ତାହା "ବର୍ଲିନଡ଼ିକ୍ରି (Berlin Decree) ନାମରେ ଖ୍ୟାତ । କଣ୍ଟିନେଣ୍ଟାଲ ସିଷ୍ଟମ ଏତଦ୍ଦ୍ୱାରା ସେ ଫ୍ରାନ୍ସର ମିତ୍ରଶକ୍ତିବର୍ଗଙ୍କୁ ଇଂଲଣ୍ଡ ସହିତ ବାଣିଜ୍ୟ କରିବାକୁ ନିଷେଧ କରିଥିଲେ । ଏହାର ପ୍ରତି-ଶୋଧ ସ୍ୱରୂପ ଇଂଲଣ୍ଡ "କାଉନ୍‌ସିଲ୍ ଅର୍ଡର୍ସ"(Orders in Council) ପ୍ରଚାର କଲା । ତଦ୍ଦ୍ୱାରା ଇଉରୋପର କୌଣସି ଦେଶ ଫ୍ରାନ୍ସ ସହିତ ବାଣିଜ୍ୟ କରି ପାରିବେ ନାହିଁ ବୋଲି ଆଦେଶ ପ୍ରଚାରିତ ହେଲା । ନେପୋଲିୟନଙ୍କ ବର୍ଲିନ ଆଦେଶଦ୍ୱାରା ଇଂଲଣ୍ଡର ବିଶେଷ କୌଣସି କ୍ଷତି ହୋଇ ନ ଥିଲା । କାରଣ କେବଳ ଫ୍ରାନ୍ସର ମିତ୍ର ରାଜ୍ୟଗୁଡ଼ିକ ଇଂଲଣ୍ଡ

ସହିତ ବାଣିଜ୍ୟ ବନ୍ଦ କରିଥିଲେ; କିନ୍ତୁ ଇଂଲଣ୍ଡର କାଉନ୍‌ସିଲ ଆଦେଶ ହେତୁ ଫ୍ରାନ୍‌ସର ବାଣିଜ୍ୟ ଲୋପ ହୋଇଥିଲା । କାରଣ ଭୂମଧ୍ୟସାଗର ଓ ଇଂଲିସ ଚ୍ୟାନେଲ ଉପରେ ଇଂରାଜମାନଙ୍କର ପ୍ରଭୁତ୍ୱ ଥିବାରୁ ଯେଉଁ ସମସ୍ତ ପୋତ ଫ୍ରାନ୍‌ସ ସହିତ ବାଣିଜ୍ୟ କରିବାକୁ ଅଗ୍ରସର ହେଉଥିଲା, ସେଗୁଡ଼ିକ ଇଂରାଜମାନଙ୍କଦ୍ୱାରା ଲୁଣ୍ଠିତ ହେବାକୁ ଲାଗିଲା । ନେପୋଲିୟନ ତହୁଁ ମିଲନ ଉକ୍ତି (Milan Decrees) ଜାରି କଲେ । ଏତଦ୍ୱାରା ବାଣିଜ୍ୟ ଜାହାଜଗୁଡ଼ିକ ବାଜେୟାପ୍ତ ହେବ ବୋଲି ଆଦେଶ ପ୍ରଚାରିତ ହେଲା । ଏହା କଣ୍ଟିନେଣ୍ଟାଲ ସିଷ୍ଟମ ନାମରେ ଖ୍ୟାତ (Continental System) । ଏହାର ଫଳ ସ୍ୱରୂପ ନିରପେକ୍ଷ ରାଜ୍ୟଗୁଡ଼ିକର ବାଣିଜ୍ୟ ବନ୍ଦ ହୋଇଗଲା ଓ ଇଉରୋପର ବହୁଦେଶ ନେପୋଲି-ୟନଙ୍କ ପ୍ରତି ବିରୂପ ହୋଇ ଉଠିଲେ । ଯେଉଁମାନେ ଗୁପ୍ତଭାବରେ ବାଣିଜ୍ୟ କରିବାକୁ ଲାଗିଲେ ସେମାନଙ୍କର ଜାହାଜଗୁଡ଼ିକ ଇଂରାଜ କିମ୍ବା ଫରାସୀମାନଙ୍କଦ୍ୱାରା ବାଜେୟାପ୍ତ ହେବାକୁ ଲାଗିଲା । ଇଂରାଜମାନେ ଆମେରିକାର ବାଣିଜ୍ୟ ଓ ରଣପୋତ ଅନୁସନ୍ଧାନ କରିବା ହେତୁ ଖ୍ରୀଷ୍ଟାବ୍ଦ ୧୮୧୨ ରେ ଇଂଲଣ୍ଡ ଓ ଆମେରିକା ମଧ୍ୟରେ ଏକ ଯୁଦ୍ଧ ଆରମ୍ଭ ହେଲା । ଯାହାହେଉ ୧୮୧୪ ଖ୍ରୀଷ୍ଟାବ୍ଦରେ ରୁଷ ସମ୍ରାଟଙ୍କ ମଧ୍ୟସ୍ଥତାରେ ଉଭୟ ଦେଶ ମଧ୍ୟରେ "ଘେଣ୍ଟସନ୍ଧି" (Treaty of ghent) ଦ୍ୱାରା ଏହି ଯୁଦ୍ଧର ଅବସାନ ହେଲା ।

ଇଂରାଜ ଓ ଫରାସୀମାନଙ୍କ ମଧ୍ୟରେ ନାନାସ୍ଥାନରେ ଯୁଦ୍ଧ ଲାଗି ରହିଥିଲା । ଇଂରାଜମାନେ ଫ୍ରାନ୍‌ସର ମିତ୍ରଶକ୍ତି ଡେନମାନଙ୍କର ନୌବହର ଦଳଭୁକ୍ତ କରି ଅଧିକାର କରିଥିଲେ ଏବଂ ଭାରତ ମହାସାଗରସ୍ଥ ଫରାସୀ ଅଧିକୃତ ମରିସସ ଦ୍ୱୀପ ଅଧିକାର କଲେ । ଇତିମଧ୍ୟରେ ସ୍ପେନର ରାଜା ଓ ରାଜପୁତ୍ରଙ୍କ ମଧ୍ୟରେ ଏକ ବିବାଦ ଉପସ୍ଥିତ ହୁଅନ୍ତେ ନେପୋଲିୟନ ସେହି ସୁଯୋଗରେ ସ୍ପେନ ହସ୍ତଗତ କରି ସ୍ୱୀୟ ଭ୍ରାତା ଯୋସେଫଙ୍କୁ ତାହାର ରାଜା ବୋଲି ଘୋଷଣା କରି ଏକ ଦଳ ଫରାସୀ ସୈନ୍ୟ ସହ ତାହାଙ୍କୁ

ସ୍ପେନ ରାଜଧାନୀ ମାଡ୍ରିଡକୁ ପ୍ରେରଣ କଲେ । କିନ୍ତୁ ଅଳ୍ପଦିନ ମଧ୍ୟରେ ସ୍ପେନର ସୈନ୍ୟଦଳ ଯୋସେଫଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହୋଇ ଏକ ଦଳ ଫରାସୀ ସୈନ୍ୟ ପରାଭୂତ କରନ୍ତେ ଯୋସେଫ ସ୍ପେନ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ସ୍ପେନ ନେପୋଲିୟନଙ୍କ ଘୋର ଶତ୍ରୁ ହୋଇ ଇଂଲଣ୍ଡର ସାହାଯ୍ୟପ୍ରାର୍ଥୀ ହେଲା । ଇଂଲଣ୍ଡ ସ୍ପେନ ସହିତ ମିଳିତ ହୋଇ ନେପୋଲିୟନଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହେଲା ।

ପର୍ତ୍ତୁଗାଲ ନେପୋଲିୟନଙ୍କ "କଣ୍ଟିନେଣ୍ଟାଲ ସିଷ୍ଟମ" ଉପେକ୍ଷା କରି ଇଂଲଣ୍ଡର ସାହାଯ୍ୟପ୍ରାର୍ଥୀ ହେଲା । ଇଂରାଜମାନେ ପର୍ତ୍ତୁଗାଲ ସାହାଯ୍ୟାର୍ଥ ଅର୍ଥାର ଓ୍ୱେଲେସ୍ଲିଙ୍କ ଅଧୀନରେ ଏକଦଳ ଇଂରାଜସେନା ପ୍ରେରଣ କଲେ ।

**ପେନିନ୍‌ସୁଲା ଯୁଦ୍ଧ**

ଓ୍ୱେଲେସ୍ଲି ପର୍ତ୍ତୁଗାଲରେ ଉପସ୍ଥିତ ହୋଇ "ଭିମିଏରା" ନାମକ ସ୍ଥାନରେ ଏକଦଳ ଫରାସୀ ସୈନ୍ୟ ପରାସ୍ତ କରିଥିଲେ ଏବଂ ପର୍ତ୍ତୁଗାଲସ୍ଥ ଫରାସୀ ସେନାନାୟକ ଯୁନଟଙ୍କ ଫ୍ରାନ୍ସ ପ୍ରତ୍ୟାଗମନ ପଥ ଅବରୋଧପୂର୍ବକ ସିଣ୍ଟ୍ରା ନାମକ ସ୍ଥାନରେ ତାହାଙ୍କ ସହିତ ଏକ ଚୁକ୍ତି କରିଥିଲେ । ତଦନୁଯାୟୀ ଯୁନଟ ଫରାସୀ ସୈନ୍ୟ ସହିତ ପର୍ତ୍ତୁଗାଲ ପରିତ୍ୟାଗ କଲେ; ମାତ୍ର ଏଥିରେ ଇଂଲଣ୍ଡର ମନ୍ତ୍ରିସମାଜ ବିରକ୍ତ ହୋଇ ସାର ଜନ ମୁର ନାମକ ଏକ ଇଂରାଜ ସେନାନାୟକଙ୍କୁ ପର୍ତ୍ତୁଗାଲର ସାହାଯ୍ୟାର୍ଥ ପ୍ରେରଣ କଲେ । ଫରାସୀସୈନ୍ୟ ସ୍ପେନ ଓ ପର୍ତ୍ତୁଗାଲରୁ ବିତାଡ଼ିତ ହୁଅନ୍ତେ ନେପୋଲିୟନ ସ୍ୱୟଂ ସ୍ପେନ ଅଭିମୁଖରେ ଅଗ୍ରସର ହୋଇ ମାଡ୍ରିଡ୍ ଅଧିକାର କଲେ ଏବଂ ସୋଲଟ ନାମକ ଏକ ସେନାନାୟକଙ୍କୁ 'ମୁରଙ୍କ' ବିରୁଦ୍ଧରେ ପ୍ରେରଣ କଲେ । ମୁରଙ୍କ ସୈନ୍ୟସଂଖ୍ୟା ଅତ୍ୟନ୍ତ ଅଳ୍ପ ଥିବାରୁ ସେ ଇଂରାଜ ସୈନ୍ୟ-ଦଳ ସହ ଇଂଲଣ୍ଡ ପ୍ରତ୍ୟାଗମନାର୍ଥ ପର୍ତ୍ତୁଗାଲ ଉପକୂଳସ୍ଥ "କରୁଣା" ନାମକ ସ୍ଥାନରେ ଉପସ୍ଥିତ ହେଲେ । ମାତ୍ର ସେଠାରେ ଫରାସୀମାନେ ତାହାଙ୍କୁ ଆକ୍ରମଣ କରିବାରୁ ସେ ତାହାଙ୍କୁ ବାଧା ଦେବାକୁ ଅଗ୍ରସର

ହୋଇଥିଲେ । ଏହି ଯୁଦ୍ଧରେ ମୁର ନିହତ ହୋଇଥିଲେ; କିନ୍ତୁ ଇଂରାଜ ସେନା ପର୍ତ୍ତୁଗାଲ ପରିତ୍ୟାଗ କରିବା ସୁଯୋଗ ଲାଭ କରିଥିଲେ ।

ମୁର ନିହତ ହେଲାରୁ ଇଂରାଜମାନେ ଓ୍ୱେଲେସ୍ଲିଙ୍କୁ ପୁନରାୟ ପର୍ତ୍ତୁଗାଲ ସାହାଯ୍ୟାର୍ଥ ପ୍ରେରଣ କଲେ । ସେ ସେଠାରେ ଉପସ୍ଥିତ ହୋଇ ଫରାସୀ ସେନାପତି ସୋଲ୍ଟଙ୍କୁ ପର୍ତ୍ତୁଗାଲରୁ ବହିଷ୍କୃତ କରିଥିଲେ ଏବଂ ସ୍ପେନ ପ୍ରବେଶପୂର୍ବକ "ଟାଲାଭେରା" ନାମକ ସ୍ଥାନରେ ଅପର ଏକ ଦଳ ଫରାସୀ ସୈନ୍ୟଙ୍କୁ ପରାଜିତ କରି ଭାଇକାଉଣ୍ଟ ଓ୍ୱେଲିଂଟନ ଅଫ ଟେଲାଭେରା ଉପାଧି ପ୍ରାପ୍ତ ହେଲେ ( Viscount Wellington of Telavera );ମାତ୍ର ସୋଲ୍ଟ୍ ସୈନ୍ୟ ସଜ୍ଜିତପୂର୍ବକ ଓ୍ୱେଲେସ୍ଲିଙ୍କୁ ପଶ୍ଚାଦ୍ଦିଗରୁ ଆକ୍ରମଣାର୍ଥ ଅଗ୍ରସର ହୁଅନ୍ତେ, ସେ ପର୍ତ୍ତୁଗାଲ ରାଜଧାନୀ ଲିସବନକୁ ପ୍ରତ୍ୟାଗମନ କଲେ ଓ ତାହା ଶତ୍ରୁ କବଳରୁ ରକ୍ଷା କରିବା ପାଇଁ କେତେଗୁଡ଼ିଏ ଦୁର୍ଗ, ପ୍ରାକାର ପରିଖା ନିର୍ମାଣପୂର୍ବକ ତାହାର ବହିର୍ଭାଗସ୍ଥ ସ୍ଥାନଗୁଡିକ ଜନହୀନ ମରୁଭୂମିରେ ପରିଣତ କଲେ । ଏହା "ଟରେସ ଭେଡ୍ରାସ" (Torres Vedras) ନାମରେ ଖ୍ୟାତ । ଫରାସୀମାନେ ମେସିନା ନାମକ ସେନାପତିଙ୍କ ଅଧୀନରେ ତାହାଙ୍କ ବିରୁଦ୍ଧରେ ଅଗ୍ରସର ହୁଅନ୍ତେ ସେହି ସ୍ଥାନରେ ସେମାନଙ୍କର ଗତିରୋଧ ହୋଇଥିଲା ଓ ଜନହୀନ ପ୍ରାନ୍ତରେ ଖାଦ୍ୟ ଅଭାବରୁ ବହୁ ଫରାସୀସୈନ୍ୟ ପ୍ରାଣତ୍ୟାଗ କଲେ । ସୁତରାଂ ଫରାସୀମାନଙ୍କୁ ପର୍ତ୍ତୁଗାଲ ପରିତ୍ୟାଗ କରି ସ୍ପେନକୁ ଫେରିଯିବାକୁ ହୋଇଥିଲା (୧୮୧୦-୧୧) ।

ସ୍ପେନଅଧିବାସୀମାନେ ଗରିଲା ଯୁଦ୍ଧ ପ୍ରଥା ଅବଲମ୍ବନ କରି ଫରାସୀମାନଙ୍କୁ ପଦେ ପଦେ ବାଧା ଦେବାକୁ ଲାଗିଲେ । ତହୁଁ ଓ୍ୱେଲିଂଟନ ପର୍ତ୍ତୁଗାଲରୁ ନିର୍ଗତ ହୋଇ "ସିଉଡାଡ ରୋଡ୍ରିଗୋ" (Ciudad Rodrigo) ବାଡାଯୋ (Badajos) ନାମକ କେତେଗୁଡ଼ିଏ ଦୁର୍ଗ ଅଧିକାର କରି ଫରାସୀମାନଙ୍କୁ ସାଲାମାଙ୍କା (Salamanca) ଯୁଦ୍ଧରେ ପରାଜିତ କଲେ (୧୮୧୨) । ତତ୍ପର ବର୍ଷ ଫରାସୀମାନେ 'ଭିଟୋରିଆ" ( Vittoria ) ଯୁଦ୍ଧରେ ପରାସ୍ତ ହୋଇ ସ୍ପେନ ତ୍ୟାଗ କଲେ ।

ରୁଷିୟା ନେପୋଲିୟନଙ୍କ 'ବାର୍ଲିନ ଆଦେଶ' ଅମାନ୍ୟ କରିବାରୁ ନେପୋଲିୟନ ପ୍ରାୟ ଚାରିଲକ୍ଷ ସୈନ୍ୟ ଘେନି ରୁଷିୟାର ପୁରାତନ ରାଜଧାନୀ ମସ୍କୋ ଅଭିମୁଖରେ ଅଗ୍ରସର ହେଲେ । ରୁଷିୟାନମାନେ ପର୍ତ୍ତୁଗାଲରେ "ଟରେସ ଭେଡ୍ରାସ" ଠାରେ ଖାଦ୍ୟ ଅଭାବରୁ ଫରାସୀମାନଙ୍କ ପରାଜୟ ବାର୍ତ୍ତା ଶ୍ରବଣ କରି ମସ୍କୋ ସହର ଓ ନିକଟବର୍ତ୍ତୀ ସ୍ଥାନଗୁଡିକ ଜନହୀନ ପ୍ରାନ୍ତରରେ ପରିଣତ କରି ସେଠାରୁ ପଳାୟନ କରିଥିଲେ । ନେପୋଲିୟନ ସେଠାରେ ଉପସ୍ଥିତ ହୋଇ ତାହାର ବିଧ୍ୱସ୍ତ ଅବସ୍ଥା ଦର୍ଶନ କରି ପ୍ରତ୍ୟାବର୍ତ୍ତନ କରିବାକୁ ବାଧ୍ୟ ହୋଇଥିଲେ ; ମାତ୍ର ରୁଷିଆର ଦାରୁଣ ଶୀତ ଓ ଖାଦ୍ୟ ଅଭାବରୁ ତାହାଙ୍କର ସୈନ୍ୟରୁ ବହୁତ ପଥ ମଧ୍ୟରେ ପ୍ରାଣତ୍ୟାଗ କରିଥିଲେ । ଚାରିଲକ୍ଷ ସୈନ୍ୟ ମଧ୍ୟରୁ କେବଳ ମାତ୍ର ୨୦୦୦୦ ସୈନ୍ୟ ଜୀବିତ ଅବସ୍ଥାରେ ପ୍ରତ୍ୟାବର୍ତ୍ତନ କରିଥିଲେ ।

ନେପୋଲିୟନଙ୍କ ମସ୍କୋ ଅଭିଯାନ ୧୮୧୨

ନେପୋଲିୟନଙ୍କ ଏହି ଦୁର୍ଦ୍ଦଶା ଅବଲୋକନ କରି ପ୍ରୁସିୟା, ରୁଷିୟା ଓ ଅଷ୍ଟ୍ରିଆ ତାହାଙ୍କ ସହିତ ଯୁଦ୍ଧାର୍ଥ ଅଗ୍ରସର ହେଲେ । ଲିପଜିଗ ନାମକ ସ୍ଥାନରେ ନେପୋଲିୟନ ସମ୍ପୂର୍ଣ୍ଣରୂପେ ପରାଜିତ ହେଲେ । ଟାଲାଭେରା ଯୁଦ୍ଧରେ ଜୟଲାଭ ହେତୁ ଓ୍ୱେଲସ୍ଲି ଡିଉକ୍ ଅଫ୍ ଓ୍ୱେଲିଂଟନ ଉପାଧି ପ୍ରାପ୍ତ ହୋଇଥିଲେ । ସେ ଏହି ସୁଯୋଗରେ ଫରାସୀମାନଙ୍କୁ ସ୍ପେନରୁ ଦୂରୀଭୂତ କଲେ ।

ଲିପଜିଗ ଯୁଦ୍ଧ

'ଲିପଜିଗ' ଯୁଦ୍ଧ ଅନ୍ତେ ମିତ୍ରଶକ୍ତିବର୍ଗ ଫ୍ରାନ୍ସ ରାଜଧାନୀ ପ୍ୟାରିସ ଆକ୍ରମଣ-ପୂର୍ବକ ନେପୋଲିୟନଙ୍କୁ ଫରାସୀ ସିଂହାସନ ତ୍ୟାଗ କରିବାକୁ ବାଧ୍ୟ କରିଥିଲେ । ନେପୋଲିୟନ ଏଲବାକୁ ପ୍ରେରିତ ହେଲେ ଏବଂ ମିତ୍ରଶକ୍ତିବର୍ଗ ପ୍ୟାରିସଠାରେ ଗୋଟିଏ ସନ୍ଧି କରି ଷୋଡ଼ଶ ଲୁଇଙ୍କ ଭ୍ରାତାଙ୍କୁ ଫରାସୀ ସିଂହାସନ ପ୍ରଦାନ କଲେ । ଏହି ସନ୍ଧି ଅନୁସାରେ ଇଂଲଣ୍ଡ ମାଲଟା,

ନେପୋଲିୟନଙ୍କ ସିଂହାସନ ତ୍ୟାଗ

ଲଙ୍କାଦ୍ୱୀପ, କେପ କଲୋନୀ ଓ ମରିସସ ପ୍ରାପ୍ତ ହେଲେ ଏବଂ ପୂର୍ବ ସୀମା ଅନୁଯାୟୀ ଫ୍ରାନ୍‌ସର ସୀମା ନିର୍ଦ୍ଦିଷ୍ଟ ହେଲା ।

ୱାଟରଲୁ ଯୁଦ୍ଧ ୧୮୧୫ ·

ନେପୋଲିୟନ ଏଲବାରୁ ପଳାୟନପୂର୍ବକ ଅତର୍କିତଭାବରେ ଫ୍ରାନ୍‌ସରେ ଉପସ୍ଥିତ ହୋଇ ତାହାଙ୍କ ପୂର୍ବ ସୈନ୍ୟମାନଙ୍କ ସାହାଯ୍ୟରେ ଆପଣାକୁ ସମ୍ରାଟ ବୋଲି ଘୋଷଣା କଲେ । ଫ୍ରାନ୍‌ସର ରାଜା ଅଷ୍ଟାଦଶ ଲୁଇ ବ୍ରୁସେଲସକୁ ପଳାୟନ କଲେ । ଏହି ସମ୍ବାଦ ପ୍ରାପ୍ତ ହୋଇ ପ୍ରୁଶିୟା, ରୁଷିଆ, ଅଷ୍ଟ୍ରିଆ, ଇଂଲଣ୍ଡ ପୁନରାୟ ଏକତ୍ର ହୋଇ ନେପୋଲିୟନଙ୍କ ବିରୁଦ୍ଧରେ ଯୁଦ୍ଧାର୍ଥ ପ୍ରସ୍ତୁତ ହେଲେ । ନେପୋଲିୟନ ସେମାନଙ୍କୁ ଫ୍ରାନ୍‌ସ ଆକ୍ରମଣ କରିବାକୁ ଅବସର ନ ଦେଇ ସ୍ୱୟଂ ବେଲଜିୟମ ଆକ୍ରମଣ କରି ପ୍ରୁଶିୟାନମାନଙ୍କୁ ଲିଗି (Lingy) ନାମକ ସ୍ଥାନରେ ପରାସ୍ତ କଲେ । ଓୟେଲିଂଟନଙ୍କ ଅଧିନାୟକତ୍ୱରେ ଇଂରାଜ ଓ ବ୍ଲୁଚରଙ୍କ ନେତୃତ୍ୱରେ ପ୍ରୁଶିୟାନମାନେ ୱାଟରଲୁ ନାମକ ସ୍ଥାନରେ ତାହାଙ୍କର ସମ୍ମୁଖୀନ ହେଲେ । ଏହି ଯୁଦ୍ଧରେ ନେପୋଲିୟନ ସମ୍ପୂର୍ଣ୍ଣରୂପେ ପରାଜିତ ହୋଇ "ବେଲ୍‌ରୋଫାନ୍" ନାମକ ଗୋଟିଏ ଇଂରାଜ ରଣତରୀର ଅଧ୍ୟକ୍ଷ ହସ୍ତରେ ଆତ୍ମସମର୍ପଣ କଲେ । ଇଂରାଜମାନେ ତାହାଙ୍କୁ ସେଣ୍ଟ ହେଲେନା-ଦ୍ୱୀପରେ ବନ୍ଦୀ ଅବସ୍ଥାରେ ରଖିଥିଲେ । ସେହି ସ୍ଥାନରେ ସେ ୧୮୨୧ରେ ପ୍ରାଣତ୍ୟାଗ କଲେ ।

ହୋଲି ଏଲାଏନ୍‌ସ (Holy alliance)

ୱାଟରଲୁ ଯୁଦ୍ଧ ଅନ୍ତେ ମିତ୍ରଶକ୍ତିବର୍ଗ ଫ୍ରାନ୍‌ସ ରାଜଧାନୀ ପ୍ୟାରିସଠାରେ ସମବେତ ହୋଇ ଅଷ୍ଟାଦଶ ଲୁଇଙ୍କୁ ଫରାସୀ ସିଂହାସନ ପ୍ରଦାନ କରିଥିଲେ ଏବଂ ତତ୍ପରେ "ହୋଲି ଏଲାଏନ୍‌ସ" ନାମକ ଏକ ସନ୍ଧିସୂତ୍ରରେ ଆବଦ୍ଧ ହୋଇଥିଲେ । ଏହି ସନ୍ଧିରେ ସ୍ଥିର ହୋଇଥିଲା ଯେ, କୌଣସି ଦେଶର ପ୍ରଜାବର୍ଗ ଯଦି ଫରାସୀମାନଙ୍କ ତୁଲ୍ୟ ରାଜାଙ୍କ ବିଦ୍ରୋହୀ ହୁଅନ୍ତି, ତାହାହେଲେ ଅପର ରାଜନ୍ୟବର୍ଗ ସେମାନଙ୍କୁ ସାହାଯ୍ୟ କରିବେ । ଏହି ସନ୍ଧିରେ ଇଂଲଣ୍ଡ

ବ୍ୟତୀତ ରୁଷିଆ, ପ୍ରୁଷିଆ ଓ ଅଷ୍ଟ୍ରିଆର ରାଜାମାନେ ଯୋଗଦାନ କରିଥିଲେ । ଫ୍ରାନ୍ସ ଏବଂ ସ୍ପେନ ମଧ୍ୟ ଏଥିରେ ଯୋଗ ଦେଇଥିଲେ ।

ଭିଏନାଠାରେ ଯେଉଁ ସନ୍ଧି ହୋଇଥିଲା, ସେଥିରେ ଇଂଲଣ୍ଡ ଫରାସୀମାନଙ୍କଠାରୁ ଉତ୍ତମାଶା ଅନ୍ତରୀପ, ସିଂହଳଦ୍ୱୀପ ଓ ବ୍ରିଟିଶ ଗିନି, ସେଣ୍ଟଜନର

ଇଂଲଣ୍ଡର ଲାଭ

ନାଇଟମାନଙ୍କଠାରୁ ମାଲଟା, ଡେନମାର୍କଠାରୁ ହେଲିଗୋଲାଣ୍ଡ ଏବଂ ଫରାସୀମାନଙ୍କଠାରୁ ମରିସସ, ସିଚେଲେସ୍ ଓ ଅନ୍ୟ କେତୋଟି ଦ୍ୱୀପ ଲାଭ କଲା । ଏହିରୂପେ ଇଂଲଣ୍ଡର ନୌଶକ୍ତିର ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା ।

ରାଜତ୍ୱର ଶେଷ ଭାଗରେ ୧୮୧୧ ଖ୍ରୀଷ୍ଟାବ୍ଦରେ ରାଜା ତୃତୀୟ ଜର୍ଜ ଅନ୍ଧ ଓ ଉନ୍ମାଦ ହୋଇ ପଡ଼ିଥିଲେ । ତାହାଙ୍କର ଜ୍ୟେଷ୍ଠପୁତ୍ର ପ୍ରିନ୍ସ ଜର୍ଜ ରିଜେଣ୍ଟ

ତୃତୀୟ ଜର୍ଜଙ୍କ ମୃତ୍ୟୁ

ବା ପ୍ରତିନିଧିରୂପେ ଦେଶର ଶାସନଭାର ଗ୍ରହଣ କରିଥିଲେ । ୧୮୨୦ ଖ୍ରୀଷ୍ଟାବ୍ଦରେ ତୃତୀୟ ଜର୍ଜ ପରଲୋକ ଗମନ କଲେ ।

---

## ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡର ଅବସ୍ଥା

### ଶିଳ୍ପ-ବିପ୍ଲବ (Industrial Revolution)

ଇଂଲଣ୍ଡ ଗୋଟିଏ କୃଷିପ୍ରଧାନ ଦେଶ ଥିଲା । ଅଷ୍ଟାଦଶ ଶତାବ୍ଦୀ ପୂର୍ବେ ଇଂଲଣ୍ଡର ଅଧିକାଂଶ ଅଧିବାସୀଙ୍କର କୃଷି ଓ ମେଷପାଳନ ପ୍ରଧାନ

କୃଷିର ଉନ୍ନତି

ବ୍ୟବସାୟ ଥିଲା । ପୁରାତନ ପଦ୍ଧତି ଅନୁସାରେ ଜମିର ଦୁଇ ବର୍ଷ ଚାଷ ଆବାଦ ହେଉଥିଲା ଓ ତୃତୀୟ ବର୍ଷ ଜମିଟି ପଡ଼ିଆ ରହୁଥିଲା; କିନ୍ତୁ ଅଷ୍ଟାଦଶ ଶତାବ୍ଦୀରେ ଗୋଟିଏ ଜମିରେ ଭିନ୍ନ ଭିନ୍ନ ବର୍ଷ ଭିନ୍ନ ଭିନ୍ନ ପ୍ରକାରର ଶସ୍ୟ ଉତ୍ପାଦନର ପ୍ରଥା

ଅବଲମ୍ବିତ ହେଲା (Rotation of crops)। ଲର୍ଡ଼ ଟାଉନ୍‌ସେଣ୍ଡ ଗୋଟିଏ ଜମିରେ ବିଭିନ୍ନ ବର୍ଷ ସାଲଗମ୍, ବାର୍ଲି ପ୍ରଭୃତି ବିଭିନ୍ନ ପ୍ରକାରର ଶସ୍ୟ ଉତ୍ପାଦନ କରି "ଟର୍ନିପ ଟାଉନସେଣ୍ଡ" (Turnip Townshend) ଉପାଧି ପ୍ରାପ୍ତ ହୋଇଥିଲେ । ଜମିର ଉତ୍ପାଦିକା ଶକ୍ତି ସୁରକ୍ଷିତ କରିବା ନିମିତ୍ତ ନାନା ପ୍ରକାରର ସାର ବ୍ୟବହୃତ ହେବାକୁ ଲାଗିଲା । ନୂତନ ଯନ୍ତ୍ରମାନ ଆବିଷ୍କୃତ ହୋଇ କୃଷିର ବହୁ ଉନ୍ନତି ସାଧନ କଲା । ପତିତ ଜମିଗୁଡ଼ିକ ବାଡ଼ ଦ୍ୱାରା ଘେରାହୋଇ ସୁରକ୍ଷିତ ହେଲା । ଫଳରେ ଗରିବ କୃଷକମାନେ ମେଷପାଳନ ଓ କୃଷି କାର୍ଯ୍ୟରେ ଧନୀ କୃଷକମାନଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ନ ପାରି ସେମାନଙ୍କର ଜମିସବୁ ବିକ୍ରୟ କରି କାର୍ଯ୍ୟ ଅନ୍ୱେଷଣରେ ନୂତନ ସହରଗୁଡ଼ିକରେ ଆଶ୍ରୟ ନେଲେ । ଧନୀ କୃଷକ ସମ୍ପ୍ରଦାୟର (Capitalist farmers)ର ସୃଷ୍ଟି ହେଲା ଏବଂ ଗ୍ରାମଗୁଡ଼ିକ ଜନଶୂନ୍ୟ ହେଲା । ଏତଦ୍ୱାରା ବେକାର ସମସ୍ୟା ମଧ୍ୟ ବୃଦ୍ଧିପ୍ରାପ୍ତ ହେଲା ।

**ଶିଳ୍ପର ଉନ୍ନତି**

ମଧ୍ୟଯୁଗରେ କୃଷି ଓ ପଶୁପାଳନ ଇଂଲଣ୍ଡର ପ୍ରଧାନ ବ୍ୟବସାୟ ଥିଲା । ମାତ୍ର ନାନା ନୂତନ ଦେଶ ଆବିଷ୍କାର ଓ ଉପନିବେଶ ବିସ୍ତାର ହେବାରୁ ଦେଶରେ ବାଣିଜ୍ୟର ମଧ୍ୟ ଯଥେଷ୍ଟ ପ୍ରସାର ହେଲା । ତତ୍‌ସହ ଶିଳ୍ପର ମଧ୍ୟ ନାନାପ୍ରକାର ଉନ୍ନତି ହେବାକୁ ଲାଗିଲା । କୁଟିରଶିଳ୍ପ ଯନ୍ତ୍ରଶିଳ୍ପ ହେବାରୁ ଲୋପ ପାଇଲା ।

**ବସ୍ତ୍ରଶିଳ୍ପ**

୧୭୩୮ ଖ୍ରୀ: ଅ:ରେ କେ ଙ୍କ ଦ୍ୱାରା ଆବିଷ୍କୃତ ଫ୍ଲାଇଂଶଟଲ (Kay's Flying shuttle), ୧୭୬୪ ରେ ହାରଗ୍ରିଭଙ୍କ ଆବିଷ୍କୃତ ସ୍ପିନିଂ ଜେନି (Hargreave's Spinning Jenny) ୧୭୬୯ ରେ ଅର୍କରାଇଟଙ୍କ ଆବିଷ୍କୃତ ଓ୍ୱାଟାରଫ୍ରେମ (Arkwrite's water Frame), ୧୭୭୭ ରେ କ୍ରମ୍ପଟନଙ୍କ ଦ୍ୱାରା ଆବିଷ୍କୃତ ସ୍ପିନିଂଜେନି ଓ ଓ୍ୱାଟାର ଫ୍ରେମର କୌଶଳ ସଂଯୋଗରେ ଉଦ୍ଭାବିତ ମିଉଲ (Mule) ଏବଂ ୧୭୮୫ ଖ୍ରୀଷ୍ଟାବ୍ଦରେ

କାର୍ଟରାଇଟଙ୍କ ଆବିଷ୍କୃତ ପାଓ୍ୱାର ଲୁମ (Cart wright's Power-loom ) ବସ୍ତ୍ର ବ୍ୟବସାୟରେ ଯୁଗାନ୍ତର ଆନୟନ କଲା । ଯେମସ୍ ଓ୍ୱାଟଙ୍କ ଦ୍ୱାରା ବାଷ୍ପୀୟ ଇଞ୍ଜିନର ଉନ୍ନତି ସାଧିତ ହୋଇ ବାଣିଜ୍ୟର କ୍ଷେତ୍ର ପ୍ରସାରିତ ହୋଇ ଉଠିଲା ।

ପୂର୍ବେ କାଠ କୋଇଲାରେ ଲୌହ ଗଳିତ ହେଉଥିଲା; ମାତ୍ର ପଥର କୋଇଲା ଅଗ୍ନିରେ ଉନ୍ନତ ଉପାୟରେ ଲୌହନିର୍ମିତ ଦ୍ରବ୍ୟାଦି ହେବାରୁ ଲୌହ ଶିଳ୍ପର ଯଥେଷ୍ଟ ଶ୍ରୀବୃଦ୍ଧି ସାଧିତ ହେଲା ଓ ତତ୍ସହ କୋଇଲା ଖଣିରୁ ପ୍ରଭୂତ କୋଇଲା ଆମଦାନୀ ହେବାକୁ ଲାଗିଲା । କୋଇଲା ଖଣିରେ ନିରାପଦ ଭାବରେ କାର୍ଯ୍ୟ କରିବା ପାଇଁ ଡେଭି ନାମକ ଏକ ବ୍ୟକ୍ତି ଏକପ୍ରକାର ଲାମ୍ପ ପ୍ରସ୍ତୁତ କଲେ (Davy's Safety lamp) ୧୮୧୫ । ଉକ୍ତ ବର୍ଷ ସ୍କଟଲଣ୍ଡର ମୁର୍ଡକ ନାମକ ଏକ ଇଞ୍ଜିନିୟର ଗ୍ୟାସ ଆଲୋକର ପ୍ରବର୍ତ୍ତନ କଲେ ।

**ଲୌହଶିଳ୍ପ**

୧୭୬୩ ଖ୍ରୀଷ୍ଟାବ୍ଦରେ ଯୋସିୟା ଓ୍ୱେଜଉଡ଼ (Josiah Wedg-wood) ନାମକ ଏକ ବ୍ୟକ୍ତି ଚୀନାମାଟି ସାହାଯ୍ୟରେ ଅତ୍ୟୁତ୍କୃଷ୍ଟ ମୃତ୍ପାତ୍ର ପ୍ରସ୍ତୁତ କଲେ । କର୍ଣ୍ଣଓ୍ୱାଲ ପ୍ରଦେଶର ମୃତ୍ତିକା ମଧ୍ୟରୁ ପ୍ରାପ୍ତ ଚୀନାମାଟି ଦ୍ୱାରା ଉତ୍କୃଷ୍ଟ ପ୍ରୋସିଲେନ ପ୍ରସ୍ତୁତ ହେଲା । ଫଳସ୍ୱରୂପ ଡାର୍ବି, ଓ୍ୱାରସେଷ୍ଟାର, ଷ୍ଟାଫୋର୍ଡ ସାଏାରରେ ବହୁ ଚୀନାମାଟିର କାରଖାନା ପ୍ରତିଷ୍ଠିତ ହେଲା ।

**ମୃତ୍ପାତ୍ର**

ଅଷ୍ଟାଦଶ ଶତାବ୍ଦୀରେ ଜଳପଥରେ ପଣ୍ୟଦ୍ରବ୍ୟ ସ୍ଥାନାନ୍ତରକୁ ପ୍ରେରଣ ପାଇଁ ବହୁତ କେନାଲ ଖନନ କରାଗଲା । ୧୭୬୧ ଖ୍ରୀ: ଅ: ରେ ସୁପ୍ରସିଦ୍ଧ ଇଞ୍ଜିନିୟର ବ୍ରିଣ୍ଡଲୀ (Brindly) ଓ୍ୱାରସଲି ଠାରୁ ମାଞ୍ଚେଷ୍ଟାର ପର୍ଯ୍ୟନ୍ତ ବ୍ରିଜ ଓ୍ୱାଟାର କେନାଲ ଖନନ କଲେ । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଟେଲ୍‌ଫୋର୍ଡ ଓ ମ୍ୟାକ୍ ଅଡାମ ନାମକ ଦୁଇ ବ୍ୟକ୍ତି ପକ୍‌କା ରାସ୍ତାମାନ ନିର୍ମାଣ କଲେ । ଶେଷୋକ୍ତ ବ୍ୟକ୍ତିଙ୍କ

**ଯାତାୟାତ ଓ ପଣ୍ୟଦ୍ରବ୍ୟ ସରବରାହର ସୁବିଧା**

ନାମାନୁସାରେ ପକ୍କା ରାସ୍ତାଗୁଡ଼ିକ 'ମ୍ୟାକାମାଡ଼ାଇଜଡ୍' ରାସ୍ତା ନାମରେ ଖ୍ୟାତ । ଏହି ସମୟରେ ଇଂଲଣ୍ଡରେ ରେଲପଥ ପ୍ରସ୍ତୁତ ହୋଇଥିଲା । ପ୍ରଥମ ରେଲପଥ ଷ୍ଟକଟନଠାରୁ ଡାର୍ଲିଂଟନ ପର୍ଯ୍ୟନ୍ତ ଓ ତତ୍ପରେ ଲିଭରପୁଲ-ମାଞ୍ଚେଷ୍ଟର ଓ ବର୍ମିଂହାମ-ଲିଭରପୁଲ ରେଲରାସ୍ତା ପ୍ରସ୍ତୁତ ହେଲା (୧୮୩୦) । ଇତିମଧ୍ୟରେ ବାଷ୍ପୀୟ ପୋତ ନିର୍ମିତ ହୋଇଥିଲା ଏବଂ ତାହା ପଣ୍ୟଦ୍ରବ୍ୟ ବହନରେ ବ୍ୟବହୃତ ହେବାକୁ ଲାଗିଲା ।

**ଶିଳ୍ପ ବିପ୍ଳବର ଫଳାଫଳ**

ଫରାସୀ ଯୁଦ୍ଧର ଅବସାନ ସହ ଇଂଲଣ୍ଡର ସାମାଜିକ ଓ ରାଜନୈତିକ ଅବସ୍ଥାରେ ନାନା ପରିବର୍ତ୍ତନ ଉପସ୍ଥିତ ହୋଇଥିଲା ।

**ଅଷ୍ଟ୍ରେଲିଆ ଆବିଷ୍କାର**

ଏହି ସମୟରେ ବହୁ ନୂତନ ଦେଶ ଆବିଷ୍କାର ଓ ବହୁ ନୂତନ ଯନ୍ତ୍ରାଦିର ଉଦ୍ଭାବନ ହେବାରୁ ଦେଶରେ ଏକ ସାମାଜିକ ବିପ୍ଳବ ଉପସ୍ଥିତ ହେଲା । ଯେଉଁ ସମୟରେ ଆମେରିକାର ଉପନିବେଶମାନ ଇଂଲଣ୍ଡର ହସ୍ତଚ୍ୟୁତ ହେଲା, ସେହି ସମୟରେ କୁକ ଅଷ୍ଟ୍ରେଲିଆର ଦକ୍ଷିଣ ପୂର୍ବ ଅଂଶ ଆବିଷ୍କାର କରି ସେଠାରେ ଇଂଲଣ୍ଡର ପତାକା ପ୍ରୋଥିତ କରି ତାହାକୁ 'ନିଉ ସାଉଥ ଓ୍ୱେଲସ୍' ଆଖ୍ୟା ପ୍ରଦାନ କରିଥିଲେ । ପିଟ ସେଠାକୁ ୮୫୦ ଜଣ ବନ୍ଦୀ ପ୍ରେରଣ କରି ସେଠାରେ ଏକ ନୂତନ ଉପନିବେଶ ସ୍ଥାପନ କଲେ । ପରବର୍ତ୍ତୀ କାଳରେ ବହୁ ବ୍ୟକ୍ତି ସେଠାରେ ବସତି ସ୍ଥାପନ କରି ନାନାପ୍ରକାର ବ୍ୟବସାୟଦ୍ୱାରା ଦେଶର ଶ୍ରୀବୃଦ୍ଧି କରିଥିଲେ ।

**ନୂତନ ନଗର ସ୍ଥାପନ**

ଏହି ସମୟରେ ଇଂଲଣ୍ଡରେ ବସ୍ତ୍ରବୟନ ଯନ୍ତ୍ର ଉଦ୍ଭାବନ ହେବାରୁ ବହୁ ପରିମାଣରେ ବସ୍ତ୍ର ପ୍ରସ୍ତୁତ ହୋଇ ଦେଶରେ ବାଣିଜ୍ୟର ବୃଦ୍ଧି ହେଲା ଓ ବହୁ ବ୍ୟକ୍ତି ଗ୍ରାମ ପରିତ୍ୟାଗ କରି ଯନ୍ତ୍ରାଦିରେ କାର୍ଯ୍ୟ ପ୍ରାପ୍ତି ଆଶାରେ ନଗରମାନଙ୍କରେ ବାସ କରିବାକୁ ଲାଗିଲେ । ଏହି ପ୍ରକାରେ ଇଂଲଣ୍ଡର ଗ୍ରାମଗୁଡ଼ିକ ପରିତ୍ୟକ୍ତ ଓ

ଶ୍ରୀବୃଦ୍ଧି ହୋଇ ନଷ୍ଟ ହେବାକୁ ଲାଗିଲା ଓ ତତ୍ପରବର୍ତ୍ତୀରେ ଦେଶର ନାନା ସ୍ଥାନରେ ନୂତନ ନଗରମାନ ଗଠିତ ହେଲା ଓ ନଗରମାନଙ୍କର ଲୋକ-ସଂଖ୍ୟା ଅତ୍ୟନ୍ତ ବୃଦ୍ଧିପ୍ରାପ୍ତ ହେଲା । ଏହି ସମୟରେ ପଥର କୋଇଲାର ବ୍ୟବହାର ଓ ବାଷ୍ପଚାଳିତ ଯନ୍ତ୍ରର ଆବିଷ୍କାର ହେବାରୁ କୋଇଲା ଖଣି-ମାନଙ୍କ ନିକଟରେ ବହୁ ନଗର ସ୍ଥାପିତ ହେବାକୁ ଲାଗିଲା । ମାଞ୍ଚେଷ୍ଟର ପ୍ରଭୃତି ଶିଳ୍ପପ୍ରଧାନ ନଗରମାନ ଏହି ସମୟରେ ସ୍ଥାପିତ ହୋଇଥିଲା । ଖଣିରୁ କୋଇଲା ନଗରମାନଙ୍କୁ ନେବା ପାଇଁ କେନାଲ ଓ ଉତ୍ତମ ପକ୍କା ପଥମାନ ମଧ୍ୟ ନିର୍ମିତ ହେବାକୁ ଲାଗିଲା ।

ନଗର ଓ ନଗରର ଲୋକସଂଖ୍ୟା ଏହିପ୍ରକାରେ ବୃଦ୍ଧିପ୍ରାପ୍ତ ହୁଅନ୍ତେ ଏବଂ ଗ୍ରାମ୍ୟ କୃଷକମାନଙ୍କ ସଂଖ୍ୟା ହ୍ରାସ ଓ ଯୁଦ୍ଧ ନିମିତ୍ତ ବିଦେଶରୁ ଶସ୍ୟ ଆମଦାନୀ ବନ୍ଦ ହୁଅନ୍ତେ ଖାଦ୍ୟଦ୍ରବ୍ୟର ମୂଲ୍ୟ ଅତ୍ୟନ୍ତ ବୃଦ୍ଧିପ୍ରାପ୍ତ ହେଲା । ସେଥିପାଇଁ ଧନୀ ଲୋକମାନେ ଭୂମି କ୍ରୟ କରି ସେଥିରେ ନାନାପ୍ରକାର କୃଷି କରି ଲାଭବାନ୍ ହେବାକୁ ଲାଗିଲେ । ସେମାନଙ୍କ ସାହାଯ୍ୟାର୍ଥେ ୧୮୧୫ ରେ ଗଭର୍ଣ୍ଣମେଣ୍ଟ ମଧ୍ୟ ଶସ୍ୟ ନିୟମ ( Corn law ) ପ୍ରଚଳନ କଲେ । ଏତଦ୍ଦ୍ୱାରା ଏକ କ୍ୱାର୍ଟର ଶସ୍ୟର ମୂଲ୍ୟ ୮୦ ଶିଲିଂ ନ ହେବା ପର୍ଯ୍ୟନ୍ତ ବିଦେଶର ଶସ୍ୟ ଆମଦାନୀ ବନ୍ଦ ହେଲା । ଏତଦ୍ଦ୍ୱାରା ଧନୀ ବ୍ୟକ୍ତିମାନେ ଅଧିକ ଧନଶାଳୀ ହେବାକୁ ଲାଗିଲେ; ମାତ୍ର ଦରିଦ୍ର ବ୍ୟକ୍ତିମାନଙ୍କ ଅବସ୍ଥା ଅତୀବ ଶୋଚନୀୟ ହୋଇ ଉଠିଲା ।

ଲୋକଙ୍କର ଦୁର୍ଦ୍ଦଶା

ଯୁଦ୍ଧ ସମୟରେ କରଭାର ହେତୁ ଲୋକେ ଅତ୍ୟନ୍ତ ପ୍ରପୀଡ଼ିତ ଥିଲେ ଏବଂ ବିଦେଶରୁ ଶସ୍ୟ ଆମଦାନୀ ରହିତ ହେବାରୁ ସାଧାରଣ ଲୋକମାନଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଥିଲା; କିନ୍ତୁ ଯୁଦ୍ଧ ସମୟରେ ଇଉରୋପରେ ବାଣିଜ୍ୟ ବନ୍ଦ ଥିବାରୁ ଇଂଲଣ୍ଡର ଶିଳ୍ପଜାତ ବାଣିଜ୍ୟର ଯଥେଷ୍ଟ ପ୍ରସାର ହୋଇଥିଲା; ମାତ୍ର ଯୁଦ୍ଧ ଅବସାନ ହେବାରୁ ଇଉରୋପରେ ଶିଳ୍ପବାଣିଜ୍ୟର ପୁନରୁତ୍ଥାନ ହୋଇଥିଲା ଓ ସେଥିସଙ୍ଗେ

ଇଂଲଣ୍ଡର ବାଣିଜ୍ୟ ବ୍ୟବସାୟର ବାଣିଜ୍ୟ ଅତ୍ୟନ୍ତ କ୍ଷୀଣ ହୋଇ ପଡ଼ିଲା । ଫଳସ୍ୱରୂପ ଲୋକମାନଙ୍କ ଅବସ୍ଥା ଅଧିକ ଶୋଚନୀୟ ହୋଇ ଉଠିଲା । ନାନା ସ୍ଥାନରେ ଲୋକମାନେ ବିଦ୍ରୋହୀ ହୋଇ ଉଠିଲେ ।

ଦରିଦ୍ର ବ୍ୟକ୍ତିମାନଙ୍କର ପାର୍ଲିମେଣ୍ଟ ମେମ୍ବର ନିର୍ବାଚନ ସମୟରେ ଭୋଟ ଦେବା ଅଧିକାର ନ ଥିଲା । ସେଥିପାଇଁ ସାଧାରଣ ଲୋକମାନଙ୍କ ମଧ୍ୟରେ ଅସନ୍ତୋଷ ବିଦ୍ୟମାନ ଥିଲା । ଧନଶାଳୀ ଲୋକମାନଙ୍କ ସାହାଯ୍ୟାର୍ଥ ଶସ୍ୟ ଆଇନ (Corn law) ହେବାରୁ ଓ ତଦ୍ୱାରା ଦରିଦ୍ର-ମାନଙ୍କର ଅବସ୍ଥା ଅଧିକ ଶୋଚନୀୟ ହେବାରୁ ଲୋକମାନେ ପାର୍ଲିମେଣ୍ଟ ସଂସ୍କାର ନିମିତ୍ତ ନାନାପ୍ରକାର ଆନ୍ଦୋଳନ ଉପସ୍ଥିତ କଲେ । ଇଂଲଣ୍ଡର ରାଜନୈତିକମାନେ ଫରାସୀ ବିପ୍ଳବ ତୁଲ୍ୟ ବିପ୍ଳବ ଆଶଙ୍କା କରି ଉକ୍ତ ଆନ୍ଦୋଳନ ଦମନାର୍ଥ ନାନାପ୍ରକାର କଠୋର ଆଇନମାନ ପ୍ରସ୍ତୁତ କଲେ । "ହେବସ କରପସ ଆକ୍ଟ" ( Habeas corpus ) ସ୍ଥଗିତ କରାଗଲା ଏବଂ 'ଛଅ ଆଇନ' ( Six Acts ) ନାମକ କେତେଗୋଟି କଠୋର ନିୟମ ହେଲା । ତଦ୍ୱାରା ଅସ୍ତ୍ର ବ୍ୟବହାର, ଅସ୍ତ୍ରଶିକ୍ଷା, ସଭା-ସମିତି ନିଷିଦ୍ଧ ହୋଇଥିଲା । ଯେଉଁ ଲୋକ ଗଭର୍ଣ୍ଣମେଣ୍ଟ ବିରୁଦ୍ଧରେ କିଛି ପ୍ରକାଶ କଲେ ସେମାନଙ୍କୁ ବନ୍ଦୀ କରାଗଲା ଓ ସମ୍ବାଦପତ୍ରଗୁଡ଼ିକ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖାଗଲା । ଯେଉଁ ସ୍ଥାନରେ ରାଜନୈତିକ ସଭା ବା ବକ୍ତୃତା ହେଲା, ସେଗୁଡ଼ିକ ସୈନ୍ୟ ସାହାଯ୍ୟରେ ବନ୍ଦ କରାଗଲା ଓ ଦଳପତି ବା ବକ୍ତୃତାକାରୀମାନେ କାରାରୁଦ୍ଧ ହେଲେ । ମାଞ୍ଚେଷ୍ଟର ଅନ୍ତର୍ଗତ ସେଣ୍ଟ-ପିଟର୍ସ ଫିଲ୍ଡ ନାମକ ସ୍ଥାନରେ ଏକ ଜନତା ବିକ୍ଷୋଭ ପ୍ରକାଶ ନିମିତ୍ତ ସମବେତ ହୁଅନ୍ତେ ଅଶ୍ୱାରୋହୀ ସୈନ୍ୟ ସାହାଯ୍ୟରେ ସେମାନଙ୍କୁ ଛତ୍ରଭଙ୍ଗ କରାଗଲା । ଏହା ମାଞ୍ଚେଷ୍ଟର ହତ୍ୟା ବା "ପିଟରଲୁ" ( Peterloo ) ନାମରେ ଖ୍ୟାତ (୧୮୧୯) ।

ଏଥିପୂର୍ବେ ଧର୍ମଯାଜକ ଓ ଲୋକମାନଙ୍କର ନୈତିକ ଜୀବନର ଘୋର ଅଧଃପତନ ହୋଇଥିଲା । ଲୋକମାନଙ୍କ ନୈତିକ ଓ ଆର୍ଥିକ ଉନ୍ନତି ପାଇଁ ଜନ୍ ଓ୍ୱେସଲେ ନାମକ ଏକବ୍ୟକ୍ତି ଅକ୍ସଫୋର୍ଡ଼ରେ ତାହାଙ୍କର କେତେକ ଶିଷ୍ୟଙ୍କ ସାହାଯ୍ୟରେ ଯତ୍ନପରେସନାସ୍ତି ପରିଶ୍ରମ କରିଥିଲେ । ସେମାନେ "ମେଥଡିଷ୍ଟ" (Methodist) ନାମରେ ଖ୍ୟାତ ।

ଧର୍ମନୈତିକ

ଏହି ସମୟରେ "ଏବାଞ୍ଜେଲିଷ୍ଟ" ନାମକ ଅନ୍ୟ ଏକ ସମ୍ପ୍ରଦାୟ ଲୋକମାନଙ୍କ ମଙ୍ଗଳାର୍ଥ ବହୁ ପରିଶ୍ରମ କରୁଥିଲେ । ହାଓ୍ୱାର୍ଡ ନାମକ ଏକବ୍ୟକ୍ତିଙ୍କ ଚେଷ୍ଟାରେ କାରାଗାରର କଠୋର ନିୟମମାନ ସଂଶୋଧିତ ହେଲା ଏବଂ ଉଇଲବାର ଫୋର୍ସଙ୍କ ଯତ୍ନ ହେତୁ କ୍ରୀତଦାସ ପ୍ରଥା ନିଷିଦ୍ଧ ହେଲା ।

—✻:✻—

## ଚତୁର୍ଥ ଜର୍ଜ

ଜନ୍ମ—୧୭୬୨ । ରାଜତ୍ୱ—(୧୮୨୦—୧୮୩୦)=୧୦ବର୍ଷ

ତୃତୀୟ ଜର୍ଜଙ୍କ ମୃତ୍ୟୁ ଉତ୍ତାରେ ତାହାଙ୍କର ଜ୍ୟେଷ୍ଠପୁତ୍ର ଚତୁର୍ଥ ଜର୍ଜ ଆଖ୍ୟା ଧାରଣ କରି ସିଂହାସନ ଆରୋହଣ କଲେ । ସେ ଆଳସ୍ୟପରାୟଣ ଓ ବିଳାସୀ ଥିଲେ ଏବଂ ଅଳ୍ପ ବୟସରେ ପିତାଙ୍କ ଅଗୋଚରରେ ଜଣେ କାଥଲିକ ବିଧବା ରମଣୀଙ୍କୁ ବିବାହ କରିଥିଲେ । କାଥଲିକ ବିବାହ ହେତୁ ତାହାଙ୍କୁ ସିଂହାସନରୁ ବଞ୍ଚିତ ହେବାକୁ ହୋଇଥାନ୍ତା; ମାତ୍ର ଏଥିପୂର୍ବେ ୧୭୭୨ରେ ରାଜକୀୟ ବିବାହ ବିଧି (Royal Marriage Act)ଅନୁଯାୟୀ ରାଜକୁମାରମାନେ ୨୫ବର୍ଷ ପୂର୍ବେ ରାଜାଙ୍କ

ଚତୁର୍ଥ ଜର୍ଜଙ୍କ ସିଂହାସନ ଆରୋହଣ ଓ ରାଣୀଙ୍କ ମୃତ୍ୟୁ



ଚତୁର୍ଥ ଜର୍ଜ

ବିବାହମଣ୍ଡଳରେ ବିବାହ କରି-ପାରିବେ ନାହିଁ ବୋଲି ଆଇନ ବିଧିବଦ୍ଧ ହୋଇଥିବାରୁ ଏ ବିବାହ ଅସିଦ୍ଧ ବୋଲି ଗୃହୀତ ହୋଇଥିଲା ଓ ତୃତୀୟ ଜର୍ଜଙ୍କ ଉପଦେଶମତେ ତାହାଙ୍କୁ ବର୍ଣ୍ଣସ୍‌ଉଇକର ରାଜକୁମାରୀ କାରଲାଇନଙ୍କୁ ବିବାହ କରିବାକୁ ହେଇଥିଲା (୧୭୯୫); ମାତ୍ର ଅଳ୍ପଦିନ ମଧ୍ୟରେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଥିଲା ଓ ତାହାଙ୍କର ଏକ କନ୍ୟା ରାଜକୁମାରୀ ଶାର୍ଲଟଙ୍କ ଜନ୍ମ ଉତ୍ତାରେ କାରଲାଇନ ସ୍ୱାମୀଙ୍କଠାରୁ ପୃଥକ୍ ହୋଇ ଇଉରୋପରେ ବାସ କରୁଥିଲେ । ଜର୍ଜଙ୍କ ସିଂହାସନ ଆରୋହଣ ସମୟରେ କାରଲାଇନ ସ୍ୱାମୀଙ୍କ ସହ ରାଜ୍ଞୀରୂପେ ଅଭିଷିକ୍ତ ହେବା ଉଦ୍ଦେଶ୍ୟରେ ଇଂଲଣ୍ଡକୁ ପ୍ରତ୍ୟାଗମନ କଲେ; ମାତ୍ର ରାଜା ଓ ତାହାଙ୍କର ମନ୍ତ୍ରିସମାଜ ତାହାଙ୍କର ବିରୋଧୀ ଥିବାରୁ ସେ ଓ୍ୱେଷ୍ଟମିନଷ୍ଟର ଧର୍ମାଳୟର ଅଭିଷେକ ସ୍ଥଳରେ ଉପସ୍ଥିତ ହୋଇ ପାରିଲେ ନାହିଁ । ଏହି ଅପମାନରେ ମର୍ମାହତ ହୋଇ ସେ ଅଳ୍ପଦିନ ମଧ୍ୟରେ ପ୍ରାଣତ୍ୟାଗ କଲେ ।

**କେଟୋଷ୍ଟ୍ରିଟ ଷଡଯନ୍ତ୍ର**

ଫରାସୀ ଯୁଦ୍ଧ ଅନ୍ତେ ଲୋକମାନଙ୍କର ଦୁରବସ୍ଥା ଓ ଗବର୍ଣ୍ଣମେଣ୍ଟଙ୍କ ଦମନନୀତି ହେତୁ ସାଧାରଣ ଲୋକମାନଙ୍କ ମଧ୍ୟରେ ଯେଉଁ ଅସନ୍ତୋଷ ଜାତ ହୋଇଥିଲା, ତାହା ଚତୁର୍ଥ ଜର୍ଜଙ୍କ ସିଂହାସନ ଆରୋହଣର ଅଳ୍ପଦିନ ମଧ୍ୟରେ ଗୋଟିଏ ଷଡ଼ଯନ୍ତ୍ର ଆକାର ଧାରଣ କରି ପ୍ରକାଶ ପାଇଲା । ଥିସଲ୍‌ଉଡ୍

ନାମକ ଏକବ୍ୟକ୍ତି ମନ୍ତ୍ରୀମାନଙ୍କୁ ହତ୍ୟା କରି ଏକ ନୂତନ ଗଭର୍ଣ୍ଣମେଣ୍ଟ ସ୍ଥାପନ କରିବା ଉଦ୍ଦେଶ୍ୟରେ କେଟୋଷ୍ଟ୍ରିଟରେ ଏହି ଷଡ଼ଯନ୍ତ୍ର କରିଥିଲେ; ମାତ୍ର ଷଡ଼ଯନ୍ତ୍ରକାରୀଙ୍କ ଉଦ୍ଦେଶ୍ୟ କାର୍ଯ୍ୟରେ ପରିଣତ ହେବା ପୂର୍ବରୁ ଏହା ପ୍ରକାଶ ହୋଇ ପଡ଼ିଥିଲା । ଥିସଲ୍‌ଉଡ ଧୃତ ହୋଇ ପ୍ରାଣଦଣ୍ଡ ପ୍ରାପ୍ତ ହେଲେ ଓ ତାହାଙ୍କର ଅନ୍ୟାନ୍ୟ ସହକର୍ମୀମାନେ ଦେଶରୁ ନିର୍ବାସିତ ହେଲେ ।

ଚତୁର୍ଥ ଜର୍ଜଙ୍କ ସିଂହାସନ ଆରୋହଣ ସମୟରେ ଲର୍ଡ ଲିଭରପୁଲ ପ୍ରଧାନ ମନ୍ତ୍ରୀ ଥିଲେ ଓ ସାର୍ ରବାର୍ଟ ପିଲ, ଜର୍ଜ କ୍ୟାନିଂ ଓ ଲର୍ଡ ହସ୍କିସନ ତାହାଙ୍କର ସହକର୍ମୀ ନିଯୁକ୍ତ ହୋଇଥିଲେ । ସେମାନେ ସାଧାରଣ ଲୋକମାନଙ୍କର ପୃଷ୍ଠପୋଷକ ଓ ଶାସନସଂସ୍କାରର ପକ୍ଷପାତୀ ଥିଲେ ।

**ଦେଶର ଶାସନ ସଂସ୍କାର ଆରମ୍ଭ**

ସୁତରାଂ ସେମାନଙ୍କଦ୍ୱାରା ଇଂଲଣ୍ଡରେ ଏକ ସଂସ୍କାର ଯୁଗ ପ୍ରବର୍ତ୍ତିତ ହୋଇ ବିଭିନ୍ନ ବିଭାଗରେ ନାନାପ୍ରକାର ସଂସ୍କାର ଆରମ୍ଭ ହୋଇଥିଲା ।

ରବାର୍ଟ ପୀଲ ୧୭୮୮ ଖ୍ରୀଷ୍ଟାବ୍ଦରେ ଲାଙ୍କେସାୟାରରେ ଜନ୍ମଗ୍ରହଣ କରି ୧୮୦୯ ଖ୍ରୀଷ୍ଟାବ୍ଦରେ ପାର୍ଲିମେଣ୍ଟର ସଭ୍ୟ ହୋଇଥିଲେ । ୧୮୧୨ଠାରୁ ୧୮୧୮ ପର୍ଯ୍ୟନ୍ତ ସେ ଆୟର୍ଲାଣ୍ଡର ପ୍ରଧାନ ସେକ୍ରେଟରୀ ହୋଇ ଶିକ୍ଷାର ଉନ୍ନତି ଓ ପୁଲିସ ବିଭାଗର ନାନାପ୍ରକାର ସଂସ୍କାର କରିଥିଲେ ।

**ରବାର୍ଟ ପୀଲ**

ନେପୋଲିୟନଙ୍କ ସହିତ ଯୁଦ୍ଧ ସମୟରେ ପିଟଙ୍କଦ୍ୱାରା ଇଂଲଣ୍ଡର ବ୍ୟାଙ୍କରୁ ନଗଦ ଅର୍ଥ ପ୍ରଦାନ (Cash payment) ରହିତ ହୋଇଥିଲା । ୧୮୧୯ ଖ୍ରୀଷ୍ଟାବ୍ଦରେ ପୀଲ ପୁନଃ ନଗଦ ଅର୍ଥ ପ୍ରଦାନ ପ୍ରଥା ପ୍ରବର୍ତ୍ତନ କରିଥିଲେ । ୧୮୨୨ ଖ୍ରୀଷ୍ଟାବ୍ଦରେ ସେ ହୋମ ସେକ୍ରେଟରୀ (Home Secretary) ନିଯୁକ୍ତ ହୋଇ ଇଂଲଣ୍ଡର ପୁଲିସ ବିଭାଗର ବହୁ ସଂସ୍କାର କରିଥିଲେ । ଅନୁପଯୁକ୍ତ ପୁଲିସ ପ୍ରହରୀମାନଙ୍କୁ ପଦଚ୍ୟୁତ କରି ସେ କର୍ମଠ କନଷ୍ଟେବଲ୍ (Constables) ନିଯୁକ୍ତ କଲେ । ଏହି କନଷ୍ଟେବଲ୍‌ମାନେ "ବବି" ବା "ପିଲର" (Bobbies) or (Peelers) ନାମରେ ଅଭିହିତ ହୋଇଥିଲେ । ଇଂଲଣ୍ଡର

ଫୌଜଦାରୀ ଆଇନଗୁଡ଼ିକ ଅତ୍ୟନ୍ତ କଠୋର ଥିଲା । ସାମାନ୍ୟ ଅପରାଧରେ ବହୁ ସମୟରେ ମୃତ୍ୟୁଦଣ୍ଡ ପର୍ଯ୍ୟନ୍ତ ପ୍ରଦତ୍ତ ହେଉଥିଲା । ପୀଲ ଏହି ଫୌଜଦାରୀ ଆଇନଗୁଡ଼ିକର ସଂସ୍କାର କରି ବହୁ ଅପରାଧର ମୃତ୍ୟୁଦଣ୍ଡ ରହିତ କରିଥିଲେ ।

ପୀଲ ଟୋରୀ ପକ୍ଷାବଲମ୍ବୀ ହେଲେହେଁ ଉଦାରମତାବଲମ୍ବୀ ଥିଲେ । ପ୍ରଥମେ ସେ "କାଥଲିକ ଇମାନ୍‌ସିପେସନ" ( Emancipation ) ବିରୋଧୀ ଥିଲେ । ମାତ୍ର ତାହାର ପ୍ରୟୋଜନ ବୁଝିପାରି ଓ୍ୱେଲିଂଟନଙ୍କ ସହଯୋଗେ ତାହା ପ୍ରବର୍ତ୍ତନ କରିଥିଲେ । ସେ ପ୍ରଥମେ ୧୮୩୪ରୁ ୧୮୩୫ ଓ ପରେ ୧୮୪୧ରୁ ୧୮୪୬ ପର୍ଯ୍ୟନ୍ତ ପ୍ରଧାନ ମନ୍ତ୍ରୀ ଥିଲେ । 158

ଲର୍ଡ କ୍ୟାନିଂଙ୍କର ବୈଦେଶିକ ରାଜନୀତି

ବୈଦେଶିକ ବ୍ୟାପାରରେ ଇଂରାଜମାନଙ୍କର ସ୍ୱାର୍ଥରକ୍ଷା କ୍ୟାନିଂଙ୍କର ପ୍ରଧାନ ଲକ୍ଷ୍ୟ ଥିଲା; କିନ୍ତୁ ଅନ୍ୟତ୍ର ସେ ସାଧାରଣ ଲୋକମାନଙ୍କ ସ୍ୱାର୍ଥରକ୍ଷା ପ୍ରତି ବିଶେଷ ମନୋଯୋଗୀ ଥିଲେ ଏବଂ ସବଳ ବିରୁଦ୍ଧରେ ଦୁର୍ବଳର ରକ୍ଷାକର୍ତ୍ତା ଥିଲେ । ଫ୍ରାନ୍‌ସ ସହିତ ଯୁଦ୍ଧ ସମୟରେ ଆମେରିକାରେ ସ୍ପେନୀୟ ଉପନିବେଶମାନ ସ୍ୱୀୟ ସ୍ୱାଧୀନତା ଘୋଷଣା କରନ୍ତେ ସେ ସେମାନଙ୍କ ପକ୍ଷ ଅବଲମ୍ବନ କରି ସେମାନଙ୍କୁ ସ୍ୱାଧୀନ ବୋଲି ସ୍ୱୀକାର କରି ଇଉରୋପର ରାଜନ୍ୟବର୍ଗଙ୍କୁ ଔପନିବେଶିକମାନଙ୍କ ବିରୁଦ୍ଧରେ ସ୍ପେନ ପକ୍ଷ ଗ୍ରହଣ କରିବାକୁ ନିଷେଧ କରିଥିଲେ । ଏତଦ୍ଦ୍ୱାରା ଇଂରାଜମାନଙ୍କର ମଧ୍ୟ ସ୍ୱାର୍ଥ ସାଧିତ ହୋଇଥିଲା । କାରଣ ସେମାନେ ଉକ୍ତ ଉପନିବେଶଗୁଡ଼ିକରେ ଅବାଧରେ ବାଣିଜ୍ୟ କରିବାର ଅଧିକାର ପାଇଥିଲେ । ୧୮୨୬ରେ ସ୍ପେନ ଓ ଫ୍ରାନ୍‌ସ ପର୍ତ୍ତୁଗାଲର ଶାସନତନ୍ତ୍ରର ପରିବର୍ତ୍ତନ ସାଧନାର୍ଥ ଉଦ୍ୟତ ହୁଅନ୍ତେ କ୍ୟାନିଂ କ୍ଷଣମାତ୍ର ବିଳମ୍ବ ନ କରି ପର୍ତ୍ତୁଗୀଜମାନଙ୍କ ସାହାଯ୍ୟାର୍ଥ ଏକଦଳ ଇଂରାଜ ସୈନ୍ୟ ପ୍ରେରଣ କରିଥିଲେ । ତହିଁ ଫ୍ରାନ୍‌ସ ଓ ସ୍ପେନକୁ ପଶ୍ଚାତ୍‌ପଦ ହେବାକୁ ହେଲା । ଗ୍ରୀସର ଲୋକମାନେ ତୁର୍କୀର ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ବିଦ୍ରୋହୀ ହୁଅନ୍ତେ ସେ ଗ୍ରୀସର ପକ୍ଷ

ଅବଲମ୍ବନ କରିଥିଲେ ଏବଂ ରୁଷିଆ ଏହି ସୁଯୋଗରେ କନ୍‌ଷ୍ଟାଣ୍ଟିନୋପଲ ଅଧିକାର କରିବାକୁ ଅଗ୍ରସର ହୁଅନ୍ତେ ସେ ସେଥିରେ ବାଧା ଦେଇଥିଲେ ।

ହସ୍କିସନ ମଧ୍ୟ ଇଂଲଣ୍ଡର ବାଣିଜ୍ୟ ବିଭାଗର କର୍ଣ୍ଣଧାର ପଦ ପ୍ରାପ୍ତ ହୋଇ ଦେଶର ଶିଳ୍ପବାଣିଜ୍ୟର ଉନ୍ନତିକଲ୍ପେ ଯଥାସାଧ୍ୟ ପରିଶ୍ରମ କରିଥିଲେ । ସେ ପ୍ରଥମେ ପଶମ, ରେଶମ ପ୍ରଭୃତି କେତେ ଗୁଡ଼ିଏ ପଦାର୍ଥର ଶୁଳ୍କ ଉଠାଇ ଦେଇଥିଲେ । ତଦ୍ୱାରା ଉକ୍ତ ପଦାର୍ଥଗୁଡ଼ିକର କାରବାର ବୃଦ୍ଧି ପ୍ରାପ୍ତ ହୋଇଥିଲା । ନେଭିଗେସନ ଆକ୍ଟ (Navigation Act) ଦ୍ୱାରା ବାଣିଜ୍ୟର ଯଥେଷ୍ଟ କ୍ଷତି ହେଉଥିଲା । ତାହାର ପ୍ରତିକାରକଲ୍ପେ ସେ ଉକ୍ତ ଆଇନର ସଂସ୍କାର କରିଥିଲେ (Reciprocity Act) । ଇତିପୂର୍ବେ ଶ୍ରମଜୀବୀମାନଙ୍କ ପାରିଶ୍ରମିକ ନିର୍ଦ୍ଦିଷ୍ଟ ହୋଇଥିଲା । ସେ ତାହା ଓ କମ୍ବିନେସନ ଲ (Combination Law) ରହିତ କରାଇଥିଲେ ଏବଂ ଶ୍ରମଜୀବୀମାନେ କାର୍ଯ୍ୟ ଲାଭ ନିମିତ୍ତ ଯଥେଚ୍ଛ ଗମନାଗମନର ଅଧିକାର ଓ ସ୍ୱାର୍ଥରକ୍ଷାର୍ଥ ଆଇନସଙ୍ଗତଭାବେ ସମିତି ଗଠନ କରିବାର କ୍ଷମତା ପ୍ରାପ୍ତ ହୋଇଥିଲେ । ଏହି ସମସ୍ତ ଉପାୟ ଦ୍ୱାରା ଦେଶର ବାଣିଜ୍ୟ ବୃଦ୍ଧି ହେବାରୁ ଲୋକମାନଙ୍କର ଅବସ୍ଥାର ଉନ୍ନତି ହୋଇଥିଲା । ତାହାଙ୍କ ଦ୍ୱାରା ସ୍ଲାଇଡିଂ ସ୍କେଲ (Sliding Scale) ପ୍ରବର୍ତ୍ତିତ ହୋଇଥିଲା ।

ହସ୍କିସନଙ୍କ ବାଣିଜ୍ୟ-ନୀତି

୧୮୨୭ ରେ ଲର୍ଡ଼ ଲିଭରପୁଲ ଅସୁସ୍ଥତା ହେତୁ କର୍ମ୍ମ ତ୍ୟାଗ କରିବାରୁ ଲର୍ଡ଼ କ୍ୟାନିଂ ପ୍ରଧାନ ମନ୍ତ୍ରିତ୍ୱ ଲାଭ କରିଥିଲେ; ମାତ୍ର ଚାରି ମାସ ମଧ୍ୟରେ ତାହାଙ୍କର ମୃତ୍ୟୁ ହେବାରୁ ରାଜାଙ୍କ ଅନୁରୋଧକ୍ରମେ ଡ୍ୟୁକ ଅଫ୍ ଓ୍ୱେଲିଂଟନ ପ୍ରଧାନ ମନ୍ତ୍ରିତ୍ୱ ଗ୍ରହଣ କଲେ । ଇତିମଧ୍ୟରେ ନାନାପ୍ରକାର ବୈଜ୍ଞାନିକ ଉନ୍ନତି ଓ ଦେଶର ଶ୍ରୀବୃଦ୍ଧି ସଙ୍ଗେ ସଙ୍ଗେ ଲୋକେ ଉଦାରସ୍ୱଭାବାପନ୍ନ ହୋଇଥିଲେ । ତେଣୁ କାଥଲିକମାନଙ୍କ

ଓ୍ୱେଲିଂଟନଙ୍କ ପ୍ରଧାନ ମନ୍ତ୍ରିତ୍ୱ (କାଥଲିକମାନଙ୍କ ରାଜନୈତିକ ସ୍ୱାଧୀନତା)

ଦୁରବସ୍ଥା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକୃଷ୍ଟ ହୋଇଥିଲା । ପିଟ କାଥଲିକ-ମାନଙ୍କର ଦୁରବସ୍ଥା ଦୂରୀକରଣାର୍ଥେ ଯତ୍ନବାନ ହୋଇଥିଲେ; ମାତ୍ର ତୃତୀୟ ଜର୍ଜ ତାହାଙ୍କର ବିରୋଧୀ ହୁଅନ୍ତେ ସେ ପଦତ୍ୟାଗ କରିଥିଲେ । ୧୮୨୩ରେ ଡାନଏଲ ଓକନେଲ ନାମକ ଏକ ଆଇର୍ଲାଣ୍ଡବାସୀ କାଥଲିକ ସେମାନଙ୍କ ଅବସ୍ଥାର ଉନ୍ନତିକଳ୍ପେ ଏକ ସଂଘ ଗଠନ କରି ଦେଶ ମଧ୍ୟରେ ଘୋର ଆନ୍ଦୋଳନ ଉପସ୍ଥିତ କରିଥିଲେ । ସେଥିପାଇଁ ଆଇରିସ କାଥଲିକମାନଙ୍କ ଦୁଃଖ ଦୂରୀକରଣାର୍ଥ ସାର ଫ୍ରାନସିସ୍ ବର୍ଡେଟ୍ ନାମକ ଏକ ବ୍ୟକ୍ତି କମନ୍ସ ସଭାରେ ଏକ ବିଲ ଆଗତ କରିଥିଲେ; ମାତ୍ର ଲର୍ଡସ ସଭାରେ ତାହାର ଘୋର ପ୍ରତିବାଦ ହେବାରୁ ତାହା ପରିତ୍ୟକ୍ତ ହୋଇଥିଲା । ତେଣୁ ଓକନେଲ ପୁନର୍ବାର ଆଇର୍ଲାଣ୍ଡରେ ନୂତନ ଭାବରେ ଆନ୍ଦୋଳନ ଉପସ୍ଥିତ କରିଥିଲେ । ଡ୍ୟୁକ ଅଫ୍ ଓଏଲିଂଟନ ପ୍ରଧାନ ମନ୍ତ୍ରିପଦ ପ୍ରାପ୍ତ ହୁଅନ୍ତେ ଲର୍ଡ ଜନ ରସେଲ 'ଟେଷ୍ଟ ଆକ୍ଟ' ଓ କରପୋରେସନ ଆକ୍ଟଦ୍ୱୟ ପ୍ରତ୍ୟାହାର କରିବା ପାଇଁ ଏକ ବିଲ ଆଗତ କରିଥିଲେ ଏବଂ ତାହା ଅବାଧରେ ଗୃହୀତ ହୋଇଥିଲା । ତଦ୍ଦ୍ୱାରା "ନନକନଫରମିଷ୍ଟ"ମାନେ ଅର୍ଥାତ୍ ଯେଉଁମାନେ ଇଂଲଣ୍ଡର ଚର୍ଚ୍ଚର ଅନ୍ତର୍ଭୁକ୍ତ ନ ଥିଲେ, ସେମାନେ କେତେକ ରାଜନୈତିକ ଅଧିକାର ପ୍ରାପ୍ତ ହେଲେ ।

ଏଥି ଉତ୍ତାରେ କାଥଲିକମାନଙ୍କ ବିଷୟଟି ଗୁରୁତର ଆକାର ଧାରଣ କରିଥିଲା । ଓକନେଲ ସ୍ୱୟଂ କ୍ଲେୟାର ପ୍ରଦେଶ ନିମିତ୍ତ ପାର୍ଲିମେଣ୍ଟର ସଭ୍ୟ ନିର୍ବାଚିତ ହେଲେ । ଓଏଲିଂଟନ ବୁଝିଥିଲେ ଓକନେଲଙ୍କୁ ପାର୍ଲିମେଣ୍ଟ ପ୍ରବେଶ ଅଧିକାର ନ ଦେଲେ ଦେଶ ମଧ୍ୟରେ ଘୋର ଅଶାନ୍ତି ଏବଂ ପରିଣାମରେ ଅନ୍ତର୍ବିପ୍ଳବ ଉପସ୍ଥିତ ହୋଇପାରେ । ସୁତରାଂ ସେ କାଥଲିକମାନଙ୍କର କେତେକ ରାଜନୈତିକ ସ୍ୱାଧୀନତା ଦେବାକୁ ଏକ ବିଲ ଆଗତ କରିଥିଲେ । ପ୍ରଥମେ ରାଜା ଏହାର ପ୍ରତିବାଦ କରିଥିଲେ; ମାତ୍ର ଓଏଲିଂଟନ କର୍ମତ୍ୟାଗ କରିବାକୁ ଅଗ୍ରସର ହୁଅନ୍ତେ ସେ ସେଥିରେ ସମ୍ମତି ଦାନ କରିଥିଲେ । ସୁତରାଂ "କାଥଲିକମାନଙ୍କ ରାଜନୈତିକ

ସ୍ୱାଧୀନତା (Catholic Emancipation) ବଲ ପାସ ହୋଇଥିଲା। ଏତଦ୍ଦ୍ୱାରା କାଥଲିକମାନେ ରିଜେଣ୍ଟ, ଲର୍ଡ ଚାନସେଲର ଓ ଆୟର୍ଲାଣ୍ଡର ଲାଟସାହେବ ବା ରାଜପ୍ରତିନିଧି ବ୍ୟତୀତ ଅପର ସମସ୍ତ ରାଜକର୍ମ ପ୍ରାପ୍ତ ହେବାର ଅଧିକାର ପାଇଲେ (୧୮୨୯)।

ଇତିପୂର୍ବେ ଆୟର୍ଲାଣ୍ଡରେ ଯେଉଁ ଲୋକମାନଙ୍କର ବାର୍ଷିକ କର ୪୦ ଶିଲିଂ ଥିଲା, ସେମାନେ ଭୋଟ ଦେବା ଅଧିକାର ପାଇଥିଲେ। କାଥଲିକମାନେ ରାଜନୈତିକ ସ୍ୱାଧୀନତା ପ୍ରାପ୍ତ ହୋଇ ଭୋଟ ଦେବା ଅଧିକାର ଲାଭ କରନ୍ତେ ଯେଉଁମାନଙ୍କର କର ୧୦ ପାଉଣ୍ଡ ଥିଲା, କେବଳ ସେହିମାନଙ୍କୁ ଭୋଟ ଦେବା ଅଧିକାର ପ୍ରଦତ୍ତ ହେଲା।

ଆୟର୍ଲାଣ୍ଡରେ ଲୋକମାନେ ପୂର୍ବୋକ୍ତ କେତେକ ଅଧିକାର ଲାଭ କରି ସନ୍ତୁଷ୍ଟ ହୋଇ ନ ଥିଲେ। ଓକନେଲଙ୍କ ସଙ୍ଗ ଆୟର୍ଲାଣ୍ଡର ସମ୍ପୂର୍ଣ୍ଣ ସ୍ୱାଧୀନତା ପ୍ରାପ୍ତି ନିମିତ୍ତ ପୁନର୍ବାର ଆନ୍ଦୋଳନ ଉପସ୍ଥିତ କରିଥିଲେ।

୧୮୩୦ରେ ଚତୁର୍ଥ ଜର୍ଜ ଅପୁତ୍ରକ ଅବସ୍ଥାରେ ପ୍ରାଣତ୍ୟାଗ କରିବାରୁ ଓ ତାହାଙ୍କର ମଧ୍ୟମ ଭ୍ରାତା ୟର୍କର ଡ୍ୟୁକ ୧୮୨୭ରେ ଅପୁତ୍ରକ ହୋଇ ପ୍ରାଣତ୍ୟାଗ କରିଥିବାରୁ ତାହାଙ୍କର ତୃତୀୟ ଭ୍ରାତା କ୍ଲାରେନ୍ସର ଡ୍ୟୁକ ଚତୁର୍ଥ ଉଇଲିୟମ ଆଖ୍ୟା ଧାରଣ କରି ସିଂହାସନ ପ୍ରାପ୍ତ ହେଲେ।

**୪ର୍ଥ ଜର୍ଜଙ୍କ ମୃତ୍ୟୁ**

---

(ସ୍ମୃତି) **ଚତୁର୍ଥ ଉଇଲିୟମ** 9. A Ex

ଜନ୍ମ—୧୭୬୫। ରାଜତ୍ୱ—(୧୮୩୦-୧୮୩୭)=ବ ୭ ବର୍ଷ

ନୂତନ ରାଜା ଅତ୍ୟନ୍ତ ଲୋକପ୍ରିୟ ଏବଂ ସଂସ୍କାରର ଏକାନ୍ତ ପକ୍ଷପାତୀ ଥିଲେ। ପାର୍ଲିମେଣ୍ଟର ଯେଉଁ ସଭ୍ୟମାନେ ନିର୍ବାଚିତ ହୋଇଥିଲେ ସେମାନେ ମଧ୍ୟ ପାର୍ଲିମେଣ୍ଟ ସଂସ୍କାରର ପକ୍ଷପାତୀ ଥିଲେ। ଏହି ସମୟରେ ଫ୍ରାନ୍ସର ଲୋକମାନେ ରାଜାଙ୍କ ଅତ୍ୟାଚାର ହେତୁ ବିଦ୍ରୋହୀ ହୋଇ ଅର୍ଲିଏନ୍ସର ଡ୍ୟୁକଙ୍କୁ

**ନୂତନ ଯୁଗ ଆରମ୍ଭ**

ରାଜା କରନ୍ତେ ଇଂଲଣ୍ଡର ରାଜନୈତିକମାନେ ସଂସ୍କାରଦ୍ୱାରା ଲୋକମାନଙ୍କୁ ସନ୍ତୁଷ୍ଟ କରିବାକୁ ଇଚ୍ଛୁକ ଥିଲେ । ସୁତରାଂ ଉଇଲିୟମଙ୍କ ସିଂହାସନ ଆରୋହଣ ସଙ୍ଗେ ଇଂଲଣ୍ଡରେ ଏକ ନୂତନ ଯୁଗ ପ୍ରବର୍ତ୍ତିତ ହୋଇ ଶାସନ ବ୍ୟବସ୍ଥାର ଯଥେଷ୍ଟ ସଂସ୍କାର ସାଧନ କରିଥିଲା; କିନ୍ତୁ ଶାସନସଂସ୍କାର ପୂର୍ବେ ଅପର ଏକ ନୂତନ ବିଷୟ ପ୍ରବର୍ତ୍ତିତ ହୋଇ ଲୋକମାନଙ୍କର ଜୀବନର ଧାରା ପରିବର୍ତ୍ତନ କରିଥିଲା ।

**ଲିଭରପୁଲ ଓ ମାଞ୍ଚେଷ୍ଟର ରେଲପଥ**

ଜର୍ଜ ଷ୍ଟିଫେନସନ ନାମକ ଏକ ବ୍ୟକ୍ତି ବାଷ୍ପଦ୍ୱାରା ଗୃହୀତ ଶକଟ ଉଦ୍ଭାବନ କରି ଏକ ନବଯୁଗ ଆରମ୍ଭ କରିଥିଲେ । ଏହି ସମୟରେ ଲିଭରପୁଲ ଓ ମାଞ୍ଚେଷ୍ଟର ମଧ୍ୟରେ ପ୍ରଥମ ରେଲମାର୍ଗ ପ୍ରସ୍ତୁତ ହୋଇ ବାଣିଜ୍ୟର ଓ ଲୋକମାନଙ୍କ ଯାତାୟାତର ଯଥେଷ୍ଟ ସୁବିଧା କରିଥିଲା । ଏଥିପୂର୍ବେ ବାଷ୍ପବାହିତ ପୋତ ଉଦ୍ଭାବିତ ହୋଇଥିଲା । ୧୮୩୮ରେ ପ୍ରଥମ ବାଷ୍ପୀୟ ପୋତ ଆଟଲାଣ୍ଟିକ ମହାସାଗର ଅତିକ୍ରମ କରି ଆମେରିକାରେ ଉପସ୍ଥିତ ହୋଇଥିଲା ।

**ପାର୍ଲିମେଣ୍ଟ ସଂସ୍କାର ଆଇନ (Reform Bill)**

ଇଂଲଣ୍ଡରେ ଶିଳ୍ପ ବିପ୍ଳବ ଉପସ୍ଥିତ ହୁଅନ୍ତେ ବହୁ ନୂତନ ନଗର ଗଠିତ ହୋଇଥିଲା ଏବଂ ବହୁ ପୁରାତନ ଜନପୂର୍ଣ୍ଣ ଗ୍ରାମ ପରିତ୍ୟକ୍ତ ହୋଇଥିଲା ଓ ରଟନ୍ ବରୋ (Rotten Borough) ନାମରେ ଅଭିହିତ ହେଉଥିଲା; ମାତ୍ର ପୂର୍ବ ପ୍ରଥା ହେତୁ ନୂତନ ନଗରଗୁଡ଼ିକ ପାର୍ଲିମେଣ୍ଟ ସଭ୍ୟ ନିର୍ବାଚନ ଅଧିକାର ପାଇ ନ ଥିଲା । କିନ୍ତୁ ବହୁ ପରିତ୍ୟକ୍ତ ଗ୍ରାମ "ରଟନ୍ ବରୋ" ଉକ୍ତ ଅଧିକାର ଭୋଗ କରୁଥିଲେ । ସୁତରାଂ ପାର୍ଲିମେଣ୍ଟ ସଂସ୍କାର ଅତ୍ୟନ୍ତ ଆବଶ୍ୟକ ହୋଇ ପଡ଼ିଥିଲା; ମାତ୍ର ଏ ବିଷୟ ପାର୍ଲିମେଣ୍ଟରେ ଉତ୍ଥାପିତ ହୁଅନ୍ତେ ଓ୍ୱେଲିଂଟନ ଏହାର ବିରୁଦ୍ଧରେ ଦଣ୍ଡାୟମାନ ହୋଇଥିଲେ । ଏଥିରେ ସେ ଲୋକମାନଙ୍କର ଏପରି ଅପ୍ରିୟ ହୋଇ ପଡ଼ିଥିଲେ ଯେ, ତାହାଙ୍କୁ

ଅଳ୍ପଦିନ ମଧ୍ୟରେ ପଦ ତ୍ୟାଗ କରିବାକୁ ହୋଇଥିଲା । ତାହାଙ୍କ ଅନ୍ତେ ହୁଇଗ ଦଳର ନେତା ଲର୍ଡ ଗ୍ରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରିତ୍ୱ ପ୍ରାପ୍ତ ହେଲେ । ଲର୍ଡ ଜନ ରସେଲ୍ ନାମକ ତାହାଙ୍କର ଏକ ସହକର୍ମୀ ପାର୍ଲିମେଣ୍ଟର ସଂସ୍କାର ନିମିତ୍ତ ଏକ ବିଲ ଅଗତ କରିଥିଲେ । ଏହି ବିଲ ପାର୍ଲିମେଣ୍ଟରେ ଗୃହୀତ ହୋଇଥିଲା; ମାତ୍ର ତାହାର ସର୍ତ୍ତଗୁଡ଼ିକ ଗୋଟିଏ ସ୍ୱତନ୍ତ୍ର କମିଟିରେ ଆଲୋଚିତ ହୁଅନ୍ତେ ତାହା ପରିତ୍ୟକ୍ତ ହୋଇଥିଲା । ମନ୍ତ୍ରୀମାନଙ୍କ ଉପଦେଶ-ମତେ ରାଜା ପାର୍ଲିମେଣ୍ଟ ଭଙ୍ଗ କରି ନୂତନ ପାର୍ଲିମେଣ୍ଟ ଆହ୍ୱାନ କରନ୍ତେ ସେଥିରେ ଉକ୍ତ ବିଲ ଅଗତ କରାଯାଇ କମନ୍ସ ସଭାରେ ଗୃହୀତ ହୋଇ-ଥିଲା; ମାତ୍ର ସାମନ୍ତମାନେ ତାହାର ବିରୋଧୀ ହେବାରୁ ଲର୍ଡସ ସଭାରେ ତାହା ପରିତ୍ୟକ୍ତ ହେଲା । ଏଥିରେ ଲୋକମାନେ କ୍ରୁଦ୍ଧ ହୋଇ ସାମନ୍ତ-ମାନଙ୍କୁ ପ୍ରକାଶ୍ୟ ଭାବରେ ଅପମାନ କରିବାକୁ ଲାଗିଲେ; କେତେକ ସ୍ଥାନରେ ଗୃହମାନ ଭସ୍ମୀଭୂତ କରି ବନ୍ଦୀମାନଙ୍କୁ ମୁକ୍ତ କରିବାକୁ ଲାଗିଲେ ।

ତତ୍ପରେ ଡିସେମ୍ବର ମାସରେ ପାର୍ଲିମେଣ୍ଟର ବୈଠକ ଆରମ୍ଭ ହୁଅନ୍ତେ ଉକ୍ତ ବିଲ ପୁନର୍ବାର ଅଗତ କରାଯାଇ କମନ୍ସ ବା ସାଧାରଣ ସଭାରେ ଗୃହୀତ ହେଲା; ମାତ୍ର ପୁନର୍ବାର ସାମନ୍ତମାନେ ତାହାର ବିରୋଧୀ ହେବାରୁ ମନ୍ତ୍ରିସମାଜ ରାଜାଙ୍କୁ ନୂତନ ସାମନ୍ତ ସୃଷ୍ଟି କରି ସାମନ୍ତ ସଭାରେ (House of Lords) ତାହା ଗୃହୀତ କରାଇବାକୁ ଅନୁରୋଧ କଲେ । ରାଜା ଏଥିରେ ଅସମ୍ମତ ହେବାରୁ ମନ୍ତ୍ରିସମାଜ ପଦତ୍ୟାଗ କଲେ । ତେଣୁ ରାଜା ଓ୍ୱେଲିଂଟନଙ୍କୁ ପ୍ରଧାନ ମନ୍ତ୍ରିତ୍ୱ ଗ୍ରହଣ କରି ଶାସନକାର୍ଯ୍ୟ ପରି-ଚାଳନାର୍ଥ ଅନୁରୋଧ କଲେ । ଓ୍ୱେଲିଂଟନ ଏଥିରେ ଅପାରଗ ହେବାରୁ ରାଜା ଲର୍ଡ ଗ୍ରେଙ୍କ ଅନୁରୋଧମତେ ଆବଶ୍ୟକ ହେଲେ ନୂତନ ସାମନ୍ତ ସୃଷ୍ଟି କରିବାକୁ ସମ୍ମତ ହୁଅନ୍ତେ ଗ୍ରେ ପୁନର୍ବାର ପ୍ରଧାନ ମନ୍ତ୍ରିତ୍ୱ ଗ୍ରହଣ କଲେ ଓ ଉକ୍ତ ବିଲ ପୁନର୍ବାର ଅଗତ କରାଗଲା । ଏଥିରେ ବିରୋଧୀ ସାମନ୍ତମାନେ ପାର୍ଲିମେଣ୍ଟ ସଭାରେ ଅନୁପସ୍ଥିତ ରହିବାରୁ ବିଲ୍ଟି ସାମନ୍ତ ସଭାରେ ମଧ୍ୟ ଗୃହୀତ ହେଲା (୧୮୩୨) ।

ଏତଦ୍ୱାରା ୨୦୦୦ ରୁ ଅଳ୍ପ ଲୋକସଂଖ୍ୟାବିଶିଷ୍ଟ ଗ୍ରାମଗୁଡ଼ିକ ପାର୍ଲିମେଣ୍ଟ ସଭ୍ୟ ନିର୍ବାଚନ କ୍ଷମତାରୁ ବଞ୍ଚିତ ହେଲେ ଏବଂ ୪୦୦୦ ଲୋକସଂଖ୍ୟାବିଶିଷ୍ଟ ଗ୍ରାମଗୁଡ଼ିକ କେବଳ ମାତ୍ର ଏକଜଣ ସଭ୍ୟ ନିର୍ବାଚନ କରିବାର କ୍ଷମତା ପ୍ରାପ୍ତ ହେଲେ । ଏହି ପ୍ରକାରେ ୧୪୩ ଟି ସଭ୍ୟ କ୍ଷୁଦ୍ର କ୍ଷୁଦ୍ର ଗ୍ରାମଗୁଡ଼ିକରୁ ନିର୍ବାଚିତ ନ ହୋଇ ବଡ଼ ବଡ଼ ନୂତନ ନଗର ଓ ଜିଲ୍ଲାମାନଙ୍କରୁ ନିର୍ବାଚିତ ହେବାକୁ ଲାଗିଲେ । ନଗରମାନଙ୍କରେ ଯେଉଁ ଗୃହସ୍ୱାମୀମାନେ ବାର୍ଷିକ ୧୦ ପାଉଣ୍ଡ କର ଦେଉଥିଲେ ସେମାନେ ଭୋଟ ଦେବା କ୍ଷମତା ପ୍ରାପ୍ତ ହେଲେ ଏବଂ କାଉଣ୍ଟି ବା ପ୍ରଦେଶମାନଙ୍କରେ ଯେଉଁ ଲୋକଙ୍କର ଜମିର ବାର୍ଷିକ ଖଜଣା ୫୦ ପାଉଣ୍ଡ, ସେମାନେ ଭୋଟ ଦେବା ଅଧିକାର ପାଇଲେ ।

ସ୍କଟଲଣ୍ଡ ୪୫ ସ୍ଥଳେ ୫୩ ଜଣ ଓ ଆୟର୍ଲଣ୍ଡ ୧୦୦ ସ୍ଥଳେ ୧୦୫ ଜଣ ସଭ୍ୟ ନିର୍ବାଚନ କ୍ଷମତା ଲାଭ କଲା ।

ଏତଦ୍ୱାରା ସାମନ୍ତମାନଙ୍କ କ୍ଷମତା ହ୍ରାସ ହେଲା ଓ ସାଧାରଣ ଲୋକଙ୍କ କ୍ଷମତା ବୃଦ୍ଧି ପ୍ରାପ୍ତ ହେଲା ।

**ନୂତନ ପାର୍ଲିମେଣ୍ଟର କାର୍ଯ୍ୟାବଳୀ**

ସଂସ୍କାର ଆଇନ ଅନୁଯାୟୀ ନୂତନ ପାର୍ଲିମେଣ୍ଟ ଅଦ୍ଭୂତ ହୁଅନ୍ତେ ହୁଇଗମାନେ ପ୍ରାଧାନ୍ୟ ଲାଭ କରିଥିଲେ ଏବଂ ଦେଶ ମଧ୍ୟରେ ନାନାପ୍ରକାର ସଂସ୍କାର ପ୍ରବର୍ତ୍ତିତ ହୋଇଥିଲା ।

**କ୍ରୀତଦାସ ପ୍ରଥା ରହିତ**

୧୮୩୩ ରେ କ୍ରୀତଦାସ ପ୍ରଥା ଆଇନ ଦ୍ୱାରା ନିଷିଦ୍ଧ କରାଗଲା ଏବଂ ଯେଉଁ ଲୋକମାନଙ୍କର ଏତଦ୍ୱାରା କ୍ଷତି ହୋଇଥିଲା, ସେମାନଙ୍କୁ କ୍ଷତିପୂରଣ ସ୍ୱରୂପ ଉପଯୁକ୍ତ ଅର୍ଥ ପ୍ରଦତ୍ତ ହେଲା । ଏହି ପ୍ରକାରରେ ଇଂଲଣ୍ଡକୁ ଦୁଇ କୋଟି ପାଉଣ୍ଡ ଦେବାକୁ ହୋଇଥିଲା ।

**ଶିକ୍ଷାର ଉନ୍ନତି**

୧୮୩୩ରେ ଲୋକମାନଙ୍କର ଉନ୍ନତିକଳ୍ପେ ପ୍ରାଥମିକ ଶିକ୍ଷାର ବିସ୍ତାର ନିମିତ୍ତ ବାର୍ଷିକ ବିଂଶ ସହସ୍ର ପାଉଣ୍ଡ ପ୍ରଦତ୍ତ ହେବାର ସ୍ଥିର ହେଲା ।

**କାରଖାନା ଆଇନ (Factory Act)**

କଳ କାରଖାନାମାନଙ୍କରେ ଅତି ଅଳ୍ପ ବୟସ୍କ ବାଳକବାଳକା-ମାନଙ୍କୁ ନିଯୁକ୍ତ କରାହେଉଥିଲା ଓ ସେମାନଙ୍କୁ କଠୋର ପରିଶ୍ରମ କରିବାକୁ ହେଉଥିବାରୁ ସେମାନଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଉଥିଲା । ୧୮୩୩ରେ ଏକ ଆଇନଦ୍ୱାରା ୯ ବର୍ଷରୁ ଅଳ୍ପ ବୟସ୍କ ବାଳକବାଳକାମାନଙ୍କ ନିଯୁକ୍ତି ନିଷିଦ୍ଧ ହେଲା ଏବଂ ୧୨ ବର୍ଷରୁ ଅଳ୍ପ ବୟସ୍କ ବାଳକମାନେ ଦୈନିକ ୮ ଘଣ୍ଟାରୁ ଅଧିକ କାର୍ଯ୍ୟ କରିବେ ନାହିଁ ସ୍ଥିର ହେଲା ।

**ଦରିଦ୍ର ଆଇନର ସଂଶୋଧନ (Poor law amended)**

ଏଲିଜାବେଥଙ୍କ ସମୟରୁ 'ଦରିଦ୍ର ଆଇନ' ପ୍ରଚଳିତ ହୋଇ ଦେଶର ଦୁଃସ୍ଥ ଅସମର୍ଥ ଲୋକମାନଙ୍କୁ ସାହାଯ୍ୟ ପ୍ରଦତ୍ତ ହେଉଥିଲା; ମାତ୍ର ଏତଦ୍ୱାରା ବହୁ କାର୍ଯ୍ୟକ୍ଷମ ଲୋକ କାର୍ଯ୍ୟ ନ କରି କେବଳ ଲୋକଙ୍କ ସାହାଯ୍ୟ ଉପରେ ନିର୍ଭର କରୁଥିଲେ ଏବଂ ବହୁ ଅସମର୍ଥ ବ୍ୟକ୍ତି ଉକ୍ତ ସାହାଯ୍ୟରୁ ବଞ୍ଚିତ ହେଉଥିଲେ । ବର୍ତ୍ତମାନ ଉକ୍ତ ଆଇନ ସଂଶୋଧିତ ହୋଇ କେବଳ ମାତ୍ର ଅସମର୍ଥ ଲୋକମାନଙ୍କୁ ସାହାଯ୍ୟ ପ୍ରଦତ୍ତ ହେଲା ଏବଂ ସବଳ ଦରିଦ୍ର ବ୍ୟକ୍ତିମାନଙ୍କର ଜୀବିକା ଅର୍ଜନ ନିମିତ୍ତ 'କର୍ମଗୃହ' (Work House) ପ୍ରତିଷ୍ଠିତ ହେଲା ।

**ମ୍ୟୁନିସିପାଲିଟି ସଂଶୋଧନ**

୧୮୩୫ ରେ ସହରଗୁଡ଼ିକରେ ମ୍ୟୁନିସିପାଲିଟିର ପରିଚାଳନା ନିମିତ୍ତ ଏକ ସଂଶୋଧିତ ଆଇନ ପ୍ରସ୍ତୁତ ହୋଇଥିଲା । ତଦ୍ୱାରା କରଦାତାମାନେ ସେମାନଙ୍କ ପ୍ରତିନିଧି ନିର୍ବାଚନ କରିବାକୁ ଲାଗିଲେ ଓ ସେହି ପ୍ରତିନିଧିମାନେ ସେମାନଙ୍କର ମେୟର ବା ସଭାପତି ନିର୍ବାଚନ କଲେ ।

ଇଂଲଣ୍ଡରେ ଭିକାର, ରେକ୍ଟର ନାମକ ଧର୍ମଯାଜକମାନେ ଲୋକମାନଙ୍କଠାରୁ ସେମାନଙ୍କ ଭୂମିର ଉତ୍ପନ୍ନ ଦ୍ରବ୍ୟର ବା ଆୟର ଏକ-

**ଟାଇଥ ଅଦାୟ (Tithe)**

ଦଶମାଂଶ ଆଦାୟ କରୁଥିଲେ । ଏତଦ୍ଦ୍ୱାରା ଲୋକମାନଙ୍କର ଅତ୍ୟନ୍ତ ଅସୁବିଧା ହେଉଥିଲା । ଏହି ସମୟରେ ଭୂମିର ୭ ବର୍ଷର ଉତ୍ପନ୍ନ ଦ୍ରବ୍ୟର ହାରହାରି ବାର୍ଷିକ ଆୟ ସ୍ଥିର କରି ତଦନୁଯାୟୀ ଭୂମ୍ୟଧିକାରୀମାନଙ୍କ ଉପରେ ଏକ କର ଧାର୍ଯ୍ୟ ହୋଇଥିଲା । ଉକ୍ତ କର ଧର୍ମାଳୟମାନଙ୍କରେ ବ୍ୟୟ ହେଉଥିଲା ।

ସମ୍ବାଦପତ୍ର ସମ୍ପାଦକମାନଙ୍କୁ ଏଥିପୂର୍ବେ ଗୋଟିଏ କର ଦେବାକୁ ହେଉଥିଲା । ଉକ୍ତ କର ହ୍ରାସ କରାହୋଇ ଏକ ପେନି ହିସାବରେ ଧାର୍ଯ୍ୟ

**ସମ୍ବାଦପତ୍ରର କର ହ୍ରାସ**

କରାଗଲା । ଏତଦ୍ଦ୍ୱାରା ସମ୍ବାଦପତ୍ରର ସଂଖ୍ୟା ଅତ୍ୟନ୍ତ ବୃଦ୍ଧିପ୍ରାପ୍ତ ହୋଇ ଲୋକମାନଙ୍କର ପ୍ରଭୂତ ଉପକାର ସାଧନ କରିଥିଲା ।

ଏଥିପୂର୍ବେ ୧୭୭୧ରେ ପାର୍ଲିମେଣ୍ଟର ବକ୍ତାମାନଙ୍କ ବକ୍ତୃତା ପ୍ରକାଶିତ ହେବା ଆରମ୍ଭ ହୋଇଥିଲା । ଏହି ସମୟରୁ ପାର୍ଲିମେଣ୍ଟର ବିଭିନ୍ନ

**ପାର୍ଲିମେଣ୍ଟର ବିଭିନ୍ନ ଦଳର ସଂଖ୍ୟା ପ୍ରକାଶ**

ଦଳର ସଂଖ୍ୟାର ତାଲିକା ପ୍ରକାଶିତ ହେବାକୁ ଲାଗିଲା । ଏତଦ୍ଦ୍ୱାରା ଲୋକମାନେ ପାର୍ଲିମେଣ୍ଟର କାର୍ଯ୍ୟକଳାପ ସମସ୍ତ ବୁଝିପାରି ଦେଶର ରାଜନୀତି ବିଷୟରେ ନାନାପ୍ରକାର ଆଲୋଚନା କରିବାକୁ ଆରମ୍ଭ କଲେ ।

**୪ର୍ଥ ଉଇଲିୟମଙ୍କ ମୃତ୍ୟୁ**

୧୮୩୭ରେ ଲୋକପ୍ରିୟ ରାଜା ଚତୁର୍ଥ ଉଇଲିୟମ ଅପୁତ୍ରକ ଅବସ୍ଥାରେ ପ୍ରାଣତ୍ୟାଗ କରିବାରୁ ତାହାଙ୍କର କନିଷ୍ଠ ଭ୍ରାତା କେଣ୍ଟର ଡ୍ୟୁକଙ୍କ କନ୍ୟା ଭିକ୍ଟୋରିୟା ୧୮ ବର୍ଷ ବୟସରେ ସିଂହାସନ ଆରୋହଣ କଲେ ।

---

# ଭିକ୍ଟୋରିଆ

## ଜନ୍ମ—୧୮୧୯ । ବିବାହ—୧୮୪୦ । ରାଜତ୍ୱ-(୧୮୩୭-୧୯୦୧)

ପ୍ରଥମ ଜର୍ଜଙ୍କଠାରୁ ଏପର୍ଯ୍ୟନ୍ତ ଇଂଲଣ୍ଡର ରାଜାମାନେ ହେନୋଭରର ମଧ୍ୟ ରାଜା ଥିଲେ । ମାତ୍ର ହେନୋଭରର 'ସାଲିକ୍' ନିୟମାନୁଯାୟୀ କୌଣସି ସ୍ତ୍ରୀଲୋକ ପକ୍ଷରେ ସିଂହାସନପ୍ରାପ୍ତି ଅସମ୍ଭବ ଥିବାରୁ ଭିକ୍ଟୋରିଆ ଇଂଲଣ୍ଡର ସିଂହାସନ ଅଧିରୋହଣ କରନ୍ତେ ତାହା ଇଂଲଣ୍ଡଠାରୁ ବିଚ୍ୟୁତ ହୋଇଯାଇଥିଲା । ଭିକ୍ଟୋରିଆଙ୍କ ପିତୃବ୍ୟ କମ୍ବରଲ୍ୟାଣ୍ଡର ଡିଉକଙ୍କୁ ହେନୋଭରର ସିଂହାସନ ପ୍ରଦତ୍ତ ହେଲା । ଏତଦ୍ଦ୍ୱାରା ଇଂଲଣ୍ଡର ମଙ୍ଗଳ ହୋଇଥିଲା । କାରଣ ହେନୋଭର ହେତୁ ଇଂଲଣ୍ଡର ରାଜାମାନଙ୍କୁ ଇଉରୋପର ରାଜନୀତି ଓ ଯୁଦ୍ଧାଦିରେ ଜଡ଼ିତ ହେବାକୁ ହେଉଥିଲା ଓ ତଦ୍ଦ୍ୱାରା ଇଂଲଣ୍ଡର ବହୁ କ୍ଷତି ହେଉଥିଲା ।

ମେଲବୋର୍ଣ୍ଣଙ୍କ ମନ୍ତ୍ରିତ୍ୱ (ହେନୋଭରବିଚ୍ୟୁତ)



ଇଂରାଜ ଅଧିକୃତ ଅମେରିକାର କାନାଡ଼ା ପ୍ରଦେଶ ଦୁଇ ବିଭାଗରେ ବିଭକ୍ତ ହୋଇଥିଲା ଏବଂ ପ୍ରତ୍ୟେକ ବିଭାଗ ପାଇଁ ସ୍ୱତନ୍ତ୍ର ଶାସନକର୍ତ୍ତା ନିଯୁକ୍ତ ହୋଇଥିଲେ । ଦକ୍ଷିଣାଞ୍ଚଳରେ ପ୍ରଧାନତଃ ଫରାସୀମାନେ ବାସ କରୁଥିଲେ । ସେମାନେ ଇଂରେଜମାନଙ୍କ ଶାସନରେ ଅସନ୍ତୁଷ୍ଟ ହୋଇ ୧୮୩୭ରେ ବିଦ୍ରୋହୀ ହୋଇଥିଲେ; ମାତ୍ର ତାହା ଅକ୍ଳେଶରେ ଦମନ

କାନାଡ଼ା ବିଦ୍ରୋହ ୧୮୩୭

କରିଗଲା । ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଲର୍ଡ ମେଲବୋର୍ଣ୍ଣ ଲର୍ଡ ଡରହାମ ନାମକ ଏକ ଶାସନକର୍ତ୍ତା ନିଯୁକ୍ତ କରି କାନାଡ଼ାକୁ ପ୍ରେରଣ କଲେ । ସେ ସେଠାରେ ଉପସ୍ଥିତ ହୋଇ ବିଦ୍ରୋହୀମାନଙ୍କୁ ନିର୍ବାସିତ କଲେ; ମାତ୍ର ପାର୍ଲିମେଣ୍ଟରେ ତାହାଙ୍କର ଏହି କାର୍ଯ୍ୟର ପ୍ରତିବାଦ ହୁଅନ୍ତେ ସେ ପଦ ତ୍ୟାଗ କଲେ ଏବଂ ତାହାଙ୍କ ସ୍ଥାନରେ ଲର୍ଡ ସିଡେନହାମ ପ୍ରେରିତ ହୋଇ ତାହାଙ୍କ ପଦାଙ୍କ ଅନୁସରଣ କରି ଶାସନକାର୍ଯ୍ୟ ପରିଚାଳନ କଲେ । ତାହାଙ୍କ ଦ୍ୱାରା ୧୮୪୦ ରେ କାନାଡ଼ାର ଦୁଇ ପୃଥକ୍ ବିଭାଗ ଯୁକ୍ତ ହୋଇ ଏକ ଶାସନକର୍ତ୍ତାଙ୍କ ଅଧୀନ ହେଲା । ୧୮୬୭ରେ ଉତ୍ତର ଆମେରିକାର ନୋଭାସ୍କୋଟିଆ ପ୍ରଭୃତି ଅନ୍ୟାନ୍ୟ କେତେକ ପ୍ରଦେଶ କାନାଡ଼ା ସହିତ ଯୁକ୍ତ ହୋଇ ଏକ ବିଶାଳ ସାମ୍ରାଜ୍ୟ ସୃଷ୍ଟି କରିଅଛି ଏବଂ ତାହା ଏ ପର୍ଯ୍ୟନ୍ତ ଇଂଲଣ୍ଡର ଅନ୍ତର୍ଗତ ଅଛି ।

ଇଂଲଣ୍ଡର ଔପନିବେଶିକ ଉନ୍ନତି

ଭିକ୍ଟୋରିଆଙ୍କ ରାଜତ୍ୱର ପ୍ରଥମ ଭାଗରେ ଇଂଲଣ୍ଡର ଅନେକ ଔପନିବେଶିକ ଉନ୍ନତି ଘଟିଥିଲା । ୧୮୩୬ ରେ ଦକ୍ଷିଣ ଅଷ୍ଟ୍ରେଲିଆରେ ଇଂରାଜ ଉପନିବେଶ ସ୍ଥାପିତ ହୋଇଥିଲା ଏବଂ ଚତୁର୍ଥ ଉଇଲିୟମଙ୍କ ରାଣୀଙ୍କ ନାମାନୁସାରେ ଏହାର ରାଜଧାନୀର ନାମ ଏଡିଲେଡ ହୋଇଥିଲା । ତତ୍ପୂର୍ବବର୍ଷ ଡଚମାନେ ଉତ୍ତମାଶା ଅନ୍ତରୀପ (Cape of Good Hope)ରୁ ଅପସରଣ କରି ନେଟାଲ ପ୍ରଦେଶରେ ଉପନିବେଶ ସ୍ଥାପନ କଲେ । ପ୍ରଥମେ ତାହା ସ୍ୱାଧୀନ ଥିଲା; ମାତ୍ର ୧୮୪୧ରେ ତାହା ଇଂରାଜମାନଙ୍କ ଅଧୀନ ହୋଇଥିଲା । ୧୮୩୯ ରେ ଇଂରାଜମାନେ ଲୋହିତ ସାଗରର ପ୍ରବେଶ ପଥ ଏଡେନ ହସ୍ତଗତ କଲେ ଏବଂ ନିଉଜିଲଣ୍ଡରେ ପ୍ରଥମ ଇଂରାଜ ଉପନିବେଶ ସ୍ଥାପିତ ହେଲା ।

ମିଶର

୧୮୩୯ ରେ ମିଶର ରାଜ୍ୟ ବୃଦ୍ଧିର ଚେଷ୍ଟା କରିବାରୁ ତୁରସ୍କ ସହ ଗୋଟିଏ ଯୁଦ୍ଧ ଆରମ୍ଭ ହେଲା । ଫ୍ରାନ୍ସ ମିଶର ପକ୍ଷ ଓ ଇଂଲଣ୍ଡ ତୁରସ୍କର ପକ୍ଷ ଅବଲମ୍ବନ କଲା । ୧୮୪୦ ରେ ଏହା ଇଂରାଜମାନଙ୍କର ହସ୍ତଗତ ହେଲା ଓ ମିଶରର ମେହେମେଟ୍ ଅଲିଙ୍କୁ ମିଶର ନେଇ ସନ୍ତୁଷ୍ଟ ହେବାକୁ ପଡ଼ିଲା ।

ଟେଲିଗ୍ରାଫ ଓ ଷ୍ଟିମାର ଆରମ୍ଭ (୧୮୩୭-୩୮)

୧୮୩୭ରେ ପ୍ରଥମେ ଟେଲିଗ୍ରାଫ୍ ଦେଶରେ ପ୍ରବର୍ତ୍ତିତ ହେଲା ଓ ୧୮୩୮ରେ ବାଷ୍ପଚାଳିତ ଷ୍ଟିମାର ପ୍ରଥମେ ଲଣ୍ଡନଠାରୁ ଆମେରିକା ଗମନ କରିଥିଲା ।

ପେନିପୋଷ୍ଟ

ଲର୍ଡ ମେଲବୋର୍ଣ୍ଣଙ୍କ ମନ୍ତ୍ରିତ୍ୱ ସମୟରେ ଇଂଲଣ୍ଡରେ ଏକ ପେନି ମୂଲ୍ୟର ଡାକଟିକଟ ପ୍ରଚଳିତ ହେବାରୁ ବାଣିଜ୍ୟର ଏବଂ ଲୋକମାନଙ୍କର ପ୍ରଭୂତ ଉପକାର ସାଧିତ ହୋଇଥିଲା । ଏଥିପୂର୍ବେ କେବଳ ପାର୍ଲିମେଣ୍ଟର ସଭ୍ୟମାନେ ବିନା ଖରଚରେ ପତ୍ରାଦି ପ୍ରେରଣ କରି ପାରୁଥିଲେ । ଅନ୍ୟାନ୍ୟ ଲୋକମାନଙ୍କୁ ପତ୍ର ପ୍ରେରଣ କରିବାକୁ ହେଲେ ଦୂରତ୍ୱ ଅନୁସାରେ ୪ପେନ୍ସ ଠାରୁ ୧ଶିଲିଂ ପର୍ଯ୍ୟନ୍ତ ଦେବାକୁ ପଡୁଥିଲା ।

ଚାର୍ଟିଷ୍ଟ ଆନ୍ଦୋଳନ (Chartist movement)

ଲର୍ଡ ମେଲବୋର୍ଣ୍ଣଙ୍କ ସମୟରେ ଇଂରାଜମାନଙ୍କ ମଧ୍ୟରେ ଦୁଇଗୋଟି ଗୁରୁତର ଆନ୍ଦୋଳନ ଉପସ୍ଥିତ ହୋଇଥିଲା । ସେଥିମଧ୍ୟରୁ ଚାର୍ଟିଷ୍ଟ ଆନ୍ଦୋଳନ ପ୍ରଧାନ । ଇଂଲଣ୍ଡର ରାଡ଼ିକେଲ (Radicals) ବା ଚରମପନ୍ଥୀ ଦଳ ୧୮୩୨ର ପାର୍ଲିମେଣ୍ଟ ସଂସ୍କାରରେ ସନ୍ତୁଷ୍ଟ ନ ହୋଇ ପୁନର୍ବାର ପାର୍ଲିମେଣ୍ଟ ସଂସ୍କାର ନିମିତ୍ତ ଏକ ଗୁରୁତର ଆନ୍ଦୋଳନ ଉପସ୍ଥିତ କରିଥିଲେ ଏବଂ ଫିୟାରଗସ୍ ଓ କନର (Feargus O'connor) ନାମକ ଏକ ବ୍ୟକ୍ତିଙ୍କ ନେତୃତ୍ୱରେ ଏକ ଆବେଦନ ପତ୍ର ପ୍ରସ୍ତୁତ କରି ତାହା ପାର୍ଲିମେଣ୍ଟରେ ଉପସ୍ଥାପିତ କରିଥିଲେ । ଉକ୍ତ ଆବେଦନ ପତ୍ରରେ ନିମ୍ନଲିଖିତ ପ୍ରାର୍ଥନାଗୁଡ଼ିକ ସ୍ଥାନ ଲାଭ କରିଥିଲା ।

୧ । ପ୍ରତ୍ୟେକ ପ୍ରାପ୍ତବୟସ୍କ ବ୍ୟକ୍ତିର ଭୋଟ ଦେବା ଅଧିକାର ଥିବା ଉଚିତ ।

୨। ଅପରର ଅସାକ୍ଷାତ୍‌ରେ ବାଲଟରେ ଭୋଟ ଦେବା ଉଚିତ (Vote by Ballot)। ତାହାହେଲେ କେହି ଭୟ ପ୍ରଦର୍ଶନପୂର୍ବକ ଭୋଟ ଆଦାୟ କରି ପାରିବେ ନାହିଁ।

୩। ପ୍ରତିବର୍ଷ ନୂତନ ପାର୍ଲିମେଣ୍ଟ ଆହୂତ ହେବା ଆବଶ୍ୟକ। ତାହାହେଲେ ମେମ୍ବରମାନେ ଭୋଟଦାତାମାନଙ୍କ ଇଚ୍ଛାନୁଯାୟୀ ଚାଲିତ ହେବେ।

୪। ମେମ୍ବରମାନଙ୍କର ନିର୍ଦ୍ଦିଷ୍ଟ ବେତନ ପାଇବା ଆବଶ୍ୟକ। ତାହାହେଲେ ଦରିଦ୍ର ବ୍ୟକ୍ତିମାନେ ସ୍ୱୀୟ କାର୍ଯ୍ୟ ତ୍ୟାଗ କରି ପାର୍ଲିମେଣ୍ଟରେ ଉପସ୍ଥିତ ହେବେ।

୫। ଆର୍ଥିକ ଅସ୍ୱଚ୍ଛଳତା ମେମ୍ବର ପଦର ଅନ୍ତରାୟ ହେବା ଉଚିତ ନୁହେ।

୬। ଲୋକସଂଖ୍ୟା ଅନୁସାରେ ଦେଶକୁ ସମାନ ସମାନ ଭାଗରେ ବିଭକ୍ତ କରି ସମସ୍ତଙ୍କୁ ପାର୍ଲିମେଣ୍ଟ ସଭ୍ୟ ନିର୍ବାଚନ ବିଷୟରେ ସମାନ ଅଧିକାର ଦେବା ଉଚିତ।

ଏହି ଚାର୍ଟିଷ୍ଟମାନେ ଦୁଇ ଦଳରେ ବିଭକ୍ତ ହୋଇ ଆନ୍ଦୋଳନ ଉପସ୍ଥିତ କରିଥିଲେ। ଏକଦଳ ଅସ୍ତ୍ରଧାରଣପୂର୍ବକ ଓ ଅପର ଦଳ ବକ୍ତୃତା ପ୍ରଭୃତି ଦ୍ୱାରା ଆନ୍ଦୋଳନ କରି ସ୍ୱୀୟ ଉଦ୍ଦେଶ୍ୟ ସିଦ୍ଧ କରିବାର ପ୍ରୟାସୀ ଥିଲେ। ଏମାନଙ୍କଦ୍ୱାରା ଓ୍ୱେଲସର ଦକ୍ଷିଣ ଭାଗସ୍ଥ ନିଉପୋର୍ଟ ଏବଂ ଇଂଲଣ୍ଡର ଅପର କେତେକ ସ୍ଥାନରେ ଗୋଳମାଳ ଆରମ୍ଭ ହୁଅନ୍ତେ ଗଭର୍ଣ୍ଣମେଣ୍ଟ ଏହି ଆନ୍ଦୋଳନ ଦମନ କରିଥିଲେ। ଏଥି ଉତ୍ତାରେ ମଧ୍ୟ ଏହି ଆନ୍ଦୋଳନ କିଛିକାଳ ଚାଲିଥିଲା ଏବଂ ୧୮୪୬ରେ "କରନ ଲ" (Corn Law) ଉଠିଯିବାରୁ ଖାଦ୍ୟ ପଦାର୍ଥର ମୂଲ୍ୟ ହ୍ରାସ ହୁଅନ୍ତେ ୧୮୪୮ରେ ଲର୍ଡ ରସେଲଙ୍କ ପ୍ରଧାନ ମନ୍ତ୍ରିତ୍ୱ ସମୟରେ ଏହା ସ୍ୱତଃ ବନ୍ଦ ହୋଇଥିଲା।

ଶସ୍ୟ ଅଇନଦ୍ୱାରା ଏକ କାଠର ଶସ୍ୟର ମୂଲ୍ୟ ୮୦ ଶିଲିଂ ନ ହେବା ପର୍ଯ୍ୟନ୍ତ ଇଂଲଣ୍ଡକୁ ବିଦେଶରୁ ଶସ୍ୟ ଆମଦାନୀ ହୋଇ ନ ଥିଲା । ଏତଦ୍ଦ୍ୱାରା ଧନୀ କୃଷକମାନଙ୍କର ଅତ୍ୟନ୍ତ ସୁବିଧା ହୋଇଥିଲା । ମାତ୍ର ଶ୍ରମଜୀବୀମାନଙ୍କର ଅତ୍ୟନ୍ତ କଷ୍ଟ ହେଉଥିଲା । ସେଥିପାଇଁ ଶ୍ରମଜୀବୀମାନେ ଜନ୍ ବ୍ରାଇଟ୍ ଓ ରିଚାର୍ଡ କବଡେନ ନାମକ ଦୁଇ ବ୍ୟକ୍ତିଙ୍କ ନେତୃତ୍ୱରେ ଶସ୍ୟ ଆଇନ ପ୍ରତ୍ୟାହାର କରିବାଲାଗି ତୁମୁଳ ଆନ୍ଦୋଳନ କରିଥିଲେ ।

ଶସ୍ୟ ଅଇନ ବିରୁଦ୍ଧରେ ଆନ୍ଦୋଳନ (Anti Corn Law League)

୧୮୪୧ରେ ଭିକ୍ଟୋରିଆଙ୍କ ସହିତ ସ୍ୟାକ୍ସକୋବାର୍ଗର ଯୁବରାଜ ଆଲବାର୍ଟଙ୍କ ସହିତ ବିବାହ ହେବାରୁ ସେ ଉପଯୁକ୍ତ ସ୍ୱାମୀ ଓ ଉପଦେଷ୍ଟା ଲାଭ କରନ୍ତେ ମେଲବୋର୍ଣ୍ଣଙ୍କ ରାଣୀଙ୍କୁ ଶିକ୍ଷାଦାନ କାର୍ଯ୍ୟ ଶେଷ ହୋଇଥିଲା ଏବଂ ନୂତନ ପାର୍ଲିମେଣ୍ଟର ଅଧିକାଂଶ ସଭ୍ୟ ତାହାଙ୍କର ବିରୋଧୀ ହୁଅନ୍ତେ ସେ ମନ୍ତ୍ରିତ୍ୱ ତ୍ୟାଗ କଲେ ଓ ସାର ରବାର୍ଟ ପୀଲ ପୁନର୍ବାର ପ୍ରଧାନ ମନ୍ତ୍ରିତ୍ୱ ପ୍ରାପ୍ତ ହେଲେ ।

✓ପୀଲ ବିଚକ୍ଷଣ ଅର୍ଥନୀତିଜ୍ଞ ଥିଲେ । ଗତ ପାଞ୍ଚବର୍ଷ ମଧ୍ୟରେ ବ୍ୟୟାଧିକ୍ୟ ହେତୁ ଗଭର୍ଣ୍ଣମେଣ୍ଟଙ୍କର ଅର୍ଥ ସଙ୍କଟ ଉପସ୍ଥିତ ହୁଅନ୍ତେ ସେ ଲୋକମାନଙ୍କ ଆୟର ୧ ପାଉଣ୍ଡ ମଧ୍ୟରୁ ୭ପେନ୍ସ ହାରି ଅଦାୟ କରି ଉକ୍ତ ଅର୍ଥସଙ୍କଟ ସମସ୍ୟା ପୂରଣ କରିଥିଲେ (Income Tax) । ତଦ୍ଦ୍ୱାରା ଅର୍ଥ ଉଦ୍‌ବୃତ୍ତ ହୁଅନ୍ତେ ସେ ବହୁ ବାଣିଜ୍ୟ ଦ୍ରବ୍ୟର ଶୁଳ୍କ ହ୍ରାସ କରି ଓ କେତେକ ଦ୍ରବ୍ୟର ଶୁଳ୍କ ଉଠାଇଦେଇ ବାଣିଜ୍ୟର ଯଥେଷ୍ଟ ଉନ୍ନତି କରିଥିଲେ ଓ ଆୟର୍ଲାଣ୍ଡରେ କାଥଲିକମାନଙ୍କର ମେନୁଥ କଲେଜକୁ ଯଥେଷ୍ଟ ଅର୍ଥ ସାହାଯ୍ୟ ପ୍ରଦାନ କରିଥିଲେ ।

ପୀଲଙ୍କ ମନ୍ତ୍ରିତ୍ୱ

'ଶସ୍ୟ ଅଇନ' ହେତୁ ଦେଶର ଦୁରବସ୍ଥା ଦେଖି ପ୍ରତିକାରକଲେ । ୧୮୪୪ରେ ସେ ବିଦେଶୀ ଶସ୍ୟ ଉପରେ ଏପରି ଭାବରେ ଶୁଳ୍କ ଧାର୍ଯ୍ୟ

କରୁଥିଲେ ଯେ, ଦେଶରେ ଶସ୍ୟର ମୂଲ୍ୟ ବୃଦ୍ଧି ସଙ୍ଗେ ଉକ୍ତ କର ହ୍ରାସ ହେଉଥିଲା ଓ ଦେଶର ଶସ୍ୟର ମୂଲ୍ୟ ହ୍ରାସ ହୁଅନ୍ତେ ଉକ୍ତ କର ବର୍ଦ୍ଧିତ ହେଉଥିଲା (Sliding duties on Corn) ୧୮୪୪ ।

୧୮୪୬ରେ ଆୟର୍ଲାଣ୍ଡର ପ୍ରଧାନ ଉତ୍ପନ୍ନ ଦ୍ରବ୍ୟ ଆଳୁ ଫସଲ ନଷ୍ଟ ହୁଅନ୍ତେ ଦେଶ ମଧ୍ୟରେ ଘୋର ଦୁର୍ଭିକ୍ଷ ଉପସ୍ଥିତ ହେଲା । ଉକ୍ତ ବର୍ଷ ଜୁଲାଇ ମାସରେ ଅତିବୃଷ୍ଟି ହେତୁ ଇଂଲଣ୍ଡର ଶସ୍ୟ ମଧ୍ୟ ନଷ୍ଟ ହୋଇଥିଲା । ସୁତରାଂ ପୀଲଙ୍କୁ ବହୁ ବାଧାସତ୍ତ୍ୱେ ଶସ୍ୟ ଆଇନ ପ୍ରତ୍ୟାହାର କରିବାକୁ ହୋଇଥିଲା (୧୮୪୬) ।

ପୀଲଙ୍କ ଦଳର ସଭ୍ୟମାନେ ଶସ୍ୟ ଆଇନ ପ୍ରତ୍ୟାହାର କରିବାର ବିରୋଧୀ ଥିଲେ; ସୁତରାଂ ସେ ଉକ୍ତ ଆଇନ ପ୍ରତ୍ୟାହାର କରିବାରୁ ତାହାଙ୍କ ଦଳର ଲୋକମାନେ ତାହାଙ୍କର ବିରୋଧୀ ହୋଇଥିଲେ । ଆୟର୍ଲାଣ୍ଡରେ ଦୁର୍ଭିକ୍ଷ ହେତୁ ନାନା ଗୋଳମାଳ ଆରମ୍ଭ ହେବାରୁ ପୀଲ ପୁନର୍ବାର ସେଠାରେ ଅସ୍ତ୍ର ଆଇନ ପ୍ରବର୍ତ୍ତନ କରିବାକୁ ପ୍ରୟାସୀ ହୁଅନ୍ତେ ତାହାଙ୍କ ବିରୋଧୀ ଦଳର ସଭ୍ୟମାନେ ତାହାଙ୍କ କାର୍ଯ୍ୟର ଘୋର ପ୍ରତିବାଦ ଆରମ୍ଭ କରିଥିଲେ । ତେଣୁ ତାହାଙ୍କୁ ୧୮୪୬ରେ ପ୍ରଧାନ ମନ୍ତ୍ରିତ୍ୱ ତ୍ୟାଗ କରିବାକୁ ହୋଇଥିଲା ।

**ପୀଲଙ୍କ ମନ୍ତ୍ରିତ୍ୱ ତ୍ୟାଗ**

୧୮୪୬ରେ ପୀଲ ପଦତ୍ୟାଗ କରନ୍ତେ ଲର୍ଡ ଜନ ରସେଲ ପ୍ରଧାନ ମନ୍ତ୍ରିତ୍ୱ ପ୍ରାପ୍ତ ହେଲେ । ୧୮୪୮ରେ ଇଉରୋପରେ ଫ୍ରାନ୍ସ, ଜରମାନୀ, ଅଷ୍ଟ୍ରିଆ ଓ ଇଟାଲିରେ ଭୟଙ୍କର ରାଷ୍ଟ୍ରବିପ୍ଳବ ଉପସ୍ଥିତ ହେଲା । ଇଂଲଣ୍ଡ ସହିତ ଆୟର୍ଲାଣ୍ଡର ମିଶ୍ରଣରେ ଆୟର୍ଲାଣ୍ଡର ଲୋକମାନେ ସନ୍ତୁଷ୍ଟ ନ ଥିଲେ । ସେମାନେ ଇଉରୋପର ଦୃଷ୍ଟାନ୍ତରୁ ବିଦ୍ରୋହୀ ହେଲେ । ଏହି ବିଦ୍ରୋହ ଦମିତ ହୋଇଥିଲା ଓ ନେତାମାନେ ଦେଶରୁ ନିର୍ବାସିତ ହୋଇଥିଲେ ।

**ଲର୍ଡ ଜନ ରସେଲଙ୍କ ମନ୍ତ୍ରିତ୍ୱ—ଆୟର୍ଲାଣ୍ଡର ବିଦ୍ରୋହ**

ଅଷ୍ଟ୍ରେଲିୟାର ଔପନିବେଶିକମାନେ ଇଂରାଜମାନଙ୍କର ସଦାନୁଗତ ଥିଲେ । ସେଥିପାଇଁ ସେମାନଙ୍କର ଆନୁଗତ୍ୟର ପୁରସ୍କାରସ୍ୱରୂପ ସେମାନଙ୍କୁ ସ୍ୱତନ୍ତ୍ର ପାର୍ଲିମେଣ୍ଟ ଆହ୍ୱାନ କରି ସ୍ୱ ଉପନିବେଶର ଶାସନଭାର ପରିଚାଳନ କରିବା ଅଧିକାର ପ୍ରଦତ୍ତ ହେଲା । ଏହି ଅଧିକାର କ୍ରମେ ଅପର ଉପନିବେଶଗୁଡ଼ିକୁ ମଧ୍ୟ ପ୍ରଦତ୍ତ ହୋଇଥିଲା (୧୮୪୯) । ଉକ୍ତ ବର୍ଷ ନେଭିଗେସନ ଆକ୍ଟ (Navigation Act) ପ୍ରତ୍ୟାହାର କରାଗଲା ଓ ଦେଶର ବାଣିଜ୍ୟାଦିର ଯଥେଷ୍ଟ ସୁବିଧା ହେଲା ।

ଅଷ୍ଟ୍ରେଲିୟାର ଔପନିବେଶିକମାନଙ୍କର ସ୍ୱତନ୍ତ୍ର ପାର୍ଲିମେଣ୍ଟ

ଅନ୍ୟାନ୍ୟ ଦେଶର ଶିଳ୍ପାଦି ଦର୍ଶନ କରି ଲୋକମାନେ ସ୍ୱଦେଶର ଶିଳ୍ପର ଉନ୍ନତି କରିପାରିବେ, ଏହା ଆଶା କରି ଭିକ୍ଟୋରିଆଙ୍କ ସ୍ୱାମୀ ଇଂଲଣ୍ଡରେ ଏକ ଶିଳ୍ପ ପ୍ରଦର୍ଶନୀ ଆରମ୍ଭ କରିଥିଲେ ।

ଶିଳ୍ପପ୍ରଦର୍ଶନୀ ୧୮୫୧

୧୮୫୧ର ଡିସେମ୍ବର ମାସରେ ନେପୋଲିୟନ ବୋନାପାର୍ଟଙ୍କ ଭ୍ରାତୃଷ୍ପୁତ୍ର ୧୮୪୮ରେ ସ୍ଥାପିତ ଫରାସୀ ସାଧାରଣତନ୍ତ୍ରର ସଭ୍ୟମାନଙ୍କୁ ହତ୍ୟା କରି ଆପଣାକୁ ଫ୍ରାନ୍ସର ସମ୍ରାଟ ବୋଲି ଘୋଷଣା କଲେ । ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଲର୍ଡ ଜନ ରସେଲ ଆଶଙ୍କା କରୁଥିଲେ ଯେ, ସେ ସ୍ୱୀୟ ପିତୃବ୍ୟ ନେପୋଲିୟନଙ୍କ ୱାଟରଲୁର ପରାଜୟର ପ୍ରତିଶୋଧ ଗ୍ରହଣାର୍ଥ ଇଂଲଣ୍ଡ ଆକ୍ରମଣର ଉଦ୍ୟୋଗ କରିବେ । ସେଥିପାଇଁ ସେ ଇଂଲଣ୍ଡର ସୈନ୍ୟସଂଖ୍ୟା ବୃଦ୍ଧି କରିବାର ଉଦ୍ୟୋଗ କରନ୍ତେ ଲର୍ଡ ପାମାରଷ୍ଟୋନ ନାମକ ଇଂଲଣ୍ଡର ଭୂତପୂର୍ବ ବୈଦେଶିକ ସଚିବ ଘୋର ପ୍ରତିବାଦ କରିଥିଲେ । ଫଳସ୍ୱରୂପ ଲର୍ଡ ଜନ ରସେଲ ପରାସ୍ତ ହୋଇ ପଦ ତ୍ୟାଗ କଲେ ଓ ଲର୍ଡ ଡଷରେଲ ପ୍ରଧାନ ମନ୍ତ୍ରୀ ହେଲେ; ମାତ୍ର ଗ୍ଲାଡ଼ଷ୍ଟୋନ ନାମକ ପାର୍ଲିମେଣ୍ଟର ଏକ ସଭ୍ୟ ତାହାଙ୍କ 'ବଜେଟର" ଘୋର ପ୍ରତିବାଦ

ଲର୍ଡ ଜନ ରସେଲଙ୍କ ପଦତ୍ୟାଗ

କରନ୍ତେ ସେ ମଧ୍ୟ ପଦ ତ୍ୟାଗ କଲେ ଓ ଲର୍ଡ ଏବାର୍ଡିନ ପ୍ରଧାନ ମନ୍ତ୍ରୀ ଓ ଗ୍ଲାଡ୍‌ଷ୍ଟୋନ ଚାନସେଲର ପଦ ପ୍ରାପ୍ତ ହେଲେ । ଗ୍ଲାଡଷ୍ଟୋନ ପୀଲଙ୍କ ନୀତି ଅନୁସରଣ କରି ବାଣିଜ୍ୟ ଦ୍ରବ୍ୟମାନଙ୍କ ଶୁଳ୍କ ରହିତ କରି ବାଣିଜ୍ୟର ପ୍ରଭୂତ ଉପକାର ସାଧନ କରିଥିଲେ ।

ଖ୍ରୀଷ୍ଟିୟାନମାନଙ୍କ ତୀର୍ଥକ୍ଷେତ୍ର ଜେରୁଶାଲମ ତୁରସ୍କର ଅଧୀନ ଥିଲା; ମାତ୍ର ଏହି ସମୟରେ ତୁରସ୍କ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିବାରୁ ରୁଷିଆର ସମ୍ରାଟ୍ ଆପଣାକୁ ତୁରସ୍କର ଖ୍ରୀଷ୍ଟାନ ପ୍ରଜାମାନଙ୍କର ରକ୍ଷକ ବୋଲି ଘୋଷଣା କରି ଜେରୁଶାଲମ ଦାବୀ କଲେ । ତୁରସ୍କର ସୁଲତାନ ଏଥିରେ ଅସମ୍ମତ ହୁଅନ୍ତେ ସେ ତୁରସ୍କ ଅଧିକୃତ ଡାନ୍ୟୁବ ନଦୀର ଉଭୟ ପାର୍ଶ୍ୱସ୍ଥ ପ୍ରଦେଶ ଅଧିକାର କରି କୃଷ୍ଣସାଗରତୀରସ୍ଥ ସିନୋପ ବନ୍ଦରସ୍ଥ ତୁରସ୍କର ରଣପୋତବହର ଧ୍ୱଂସ କଲେ ।

**ଏବାର୍ଡିନଙ୍କ ମନ୍ତ୍ରିତ୍ୱ ରୁଷିଆ ସହିତ କ୍ରିମିୟା ଯୁଦ୍ଧ (୧୮୫୪—୫୬)**

ତୁରସ୍କରେ ରୁଷିଆର ପ୍ରାଧାନ୍ୟ ଇଂଲଣ୍ଡର ଅଭିପ୍ରେତ ନ ଥିଲା; ସୁତରାଂ ଇଂଲଣ୍ଡ ପ୍ରଥମେ ରୁଷିଆକୁ ଏହି ଯୁଦ୍ଧରୁ କ୍ଷାନ୍ତ ହେବାକୁ ପରାମର୍ଶ ଦେଇଥିଲା; ମାତ୍ର ରୁଷିଆ ସେଥିରେ କର୍ଣ୍ଣପାତ ନ କରି ସିନୋପସ୍ଥ ତୁରସ୍କ ରଣପୋତ ବିନଷ୍ଟ କରନ୍ତେ ଇଂଲଣ୍ଡ ତୁରସ୍କ ସାହାଯ୍ୟାର୍ଥ ୪୦୦୦୦ ସୈନ୍ୟ ସହ ଅଗ୍ରସର ହେଲା । ଫ୍ରାନ୍‌ସର ରାଜା ତୃତୀୟ ନେପୋଲିୟନ ଅସତ୍ ଉପାୟରେ ସିଂହାସନ ଲାଭ କରିଥିଲେ । ସେଥିପାଇଁ ଲୋକମାନଙ୍କର ମନ ଅନ୍ୟ ଦିଗରେ ପ୍ରବର୍ତ୍ତିତ କରିବା ପାଇଁ ଓ ସ୍ୱୟଂ ଯଶଃ ଲାଭ କରିବା ଉଦ୍ଦେଶ୍ୟରେ ଏହି ଯୁଦ୍ଧରେ ଅବତୀର୍ଣ୍ଣ ହୋଇ ଏକଲକ୍ଷ ସୈନ୍ୟ ସହ ଇଂରାଜମାନଙ୍କ ସହିତ ରୁଷିଆ ବିପକ୍ଷରେ ଯୋଗଦାନ କଲେ । ସାର୍ଡିନିୟା ମଧ୍ୟ ସେମାନଙ୍କ ସହିତ ତୁରସ୍କର ସାହାଯ୍ୟାର୍ଥ ଅଗ୍ରସର ହେଲା ।

ରୁଷିଆନମାନଙ୍କୁ ଡାନ୍ୟୁବ ପ୍ରଦେଶରୁ ବିତାଡ଼ିତ କରି ଇଂରାଜମାନେ ରୁଷିଆର କ୍ରିମିଅସ୍ଥିତ ପ୍ରଧାନ ବନ୍ଦର ଓ ଅସ୍ତ୍ରାଗାର ସିବାଷ୍ଟୋପୋଲ ଅଧିକାର କରିବାକୁ ଅଗ୍ରସର ହେଲେ । କ୍ରିମିଆରେ ଉପସ୍ଥିତ ହୋଇ

ଇଂରେଜମାନେ ରୁଷିଆନମାନଙ୍କୁ ଆଲମା ନଦୀ ମୁହାଣ ନିକଟରେ ପରାସ୍ତ କରି ଜଳଭାଗ ଓ ସ୍ଥଳଭାଗ ଉଭୟ ଦିଗରୁ ସିବାଷ୍ଟୋପୋଲ ଅବରୋଧ କଲେ । ସିବାଷ୍ଟୋପୋଲ ନିକଟରେ 'ବାଲାକ୍ଲାଭା" ଓ "ଇଙ୍କାରମେନ" ନାମକ ଦୁଇଗୋଟି ଯୁଦ୍ଧରେ ରୁଷିଆନମାନେ ପରାଜିତ ହେଲେ । ଏହି ସମୟରେ ଇଂଲଣ୍ଡର ମନ୍ତ୍ରୀମାନଙ୍କ ବ୍ୟବସ୍ଥା ଦୋଷରୁ ଇଂରେଜ ସୈନ୍ୟ-ମାନଙ୍କୁ କ୍ରିମିଆଠାରେ ବହୁ ଅସୁବିଧା ଭୋଗ କରିବାକୁ ହୋଇଥିଲା ଓ ସେଥିପାଇଁ ମନ୍ତ୍ରୀମାନଙ୍କ କାର୍ଯ୍ୟର ତୀବ୍ର ପ୍ରତିବାଦ ହୁଅନ୍ତେ ଲର୍ଡ ଏବାର୍ଡିନ ପ୍ରଧାନ ମନ୍ତ୍ରିତ୍ୱ ତ୍ୟାଗ କଲେ ଓ ଲର୍ଡ ପାମାରଷ୍ଟୋନ ଉକ୍ତ ପଦ ପ୍ରାପ୍ତ ହେଲେ । ତାହାଙ୍କ ସୁବ୍ୟବସ୍ଥା ହେତୁ ମିତ୍ରଶକ୍ତିମାନେ ପ୍ରାୟ ୧ବର୍ଷ ଉତ୍ତାରେ ସିବାଷ୍ଟୋପୋଲ ଅଧିକାର କରିବାକୁ ସମର୍ଥ ହେଲେ ।

କ୍ରିମିଆରେ ଆହତ ସୈନ୍ୟମାନଙ୍କ ଶୁଶ୍ରୂଷା ଲାଗି କୁମାରୀ ଫ୍ଲରେନ୍ସ ନାଇଟିଂଗେଲ ଗୋଟିଏ ଶୁଶ୍ରୂଷାକାରିଣୀ ଦଳ ଗଠନ କରି ଯୁଦ୍ଧକ୍ଷେତ୍ରରେ ସମସ୍ତ ଦୁଃଖ କଷ୍ଟ ସହ୍ୟ କରି ଅକ୍ଳରେ ଓ ଆହତମାନଙ୍କୁ ନବଜୀବନ ଦାନ କରିଥିଲେ । ସେଥିପାଇଁ ସେ ଚିରସ୍ମରଣୀୟ ହୋଇଅଛନ୍ତି ।

ସିବାଷ୍ଟୋପୋଲ ଇଂରେଜମାନଙ୍କ ହସ୍ତଗତ ହେଲା ଉତ୍ତାରେ ପ୍ୟାରିସ-ଠାରେ ରୁଷିଆ ସହିତ ଗୋଟିଏ ସନ୍ଧି ହେଲା । ଏତଦ୍ୱାରା ରୁଷିଆ ସିବାଷ୍ଟୋପୋଲ ଫେରି ପାଇଲା; ମାତ୍ର ସେ ସିବାଷ୍ଟୋପୋଲ ସଂସ୍କାର କରି ଭବିଷ୍ୟତ୍ କୃଷ୍ଣସାଗର ମଧ୍ୟରେ ରଣପୋତ ରଖା କରିବ ନାହିଁ ବୋଲି ସ୍ୱୀକୃତ ହେଲା । ଏହି ସନ୍ଧିଦ୍ୱାରା ରୁଷିଆର କ୍ଷମତା ଖର୍ବ ହୋଇଥିଲା; ମାତ୍ର ଇଂରେଜମାନଙ୍କର ବିଶେଷ କୌଣସି ଲାଭ ହୋଇ ନ ଥିଲା ।

ରୁଷିଆ ସହିତ ଯୁଦ୍ଧ ଅବସାନ ହୁଅନ୍ତେ ଚୀନ ସହିତ ଇଂଲଣ୍ଡର ସଂଘର୍ଷ ଉପସ୍ଥିତ ହେଲା । ଏଥିପୂର୍ବେ ୧୮୩୯ରେ ଇଂରେଜମାନଙ୍କର ଅଫିମ

**ଚୀନ ସହିତ ଯୁଦ୍ଧ—୧୮୫୬**

ବ୍ୟବସାୟ ଉପଲକ୍ଷରେ ଚୀନ ସହିତ ଇଂଲଣ୍ଡର ଏକ ଯୁଦ୍ଧ ହୋଇଥିଲା ଏବଂ ସେଥିରେ ଇଂରେଜମାନେ ହଂକଂ ପ୍ରାପ୍ତ ହୋଇଥିଲେ ଓ ଚୀନ ଦେଶର ଅନ୍ୟ ୫ଟି

ବନ୍ଦରରେ ବାଣିଜ୍ୟ କରିବାର ଅଧିକାର ଲାଭ କରିଥିଲେ । ଏହି ଦ୍ୱିତୀୟ ଚୀନ ଯୁଦ୍ଧର କାରଣ ମଧ୍ୟ ଅତ୍ୟନ୍ତ ଅସଙ୍ଗତ ଥିଲା । ଏରୋ ନାମକ ଏକ ତରୀ ଅନ୍ୟାୟରୂପେ ବ୍ରିଟିଶ ପତାକା ବ୍ୟବହାର କରିବାରୁ ତାହା ଚୀନ ଦେଶର ଶୁଳ୍କ ବିଭାଗର ଅଧ୍ୟକ୍ଷମାନଙ୍କଦ୍ୱାରା ଧୃତ ହେଲା । ଏଥିରେ ଇଂରେଜମାନେ ଅପମାନ ବୋଧ କରି ଚୀନ ସହିତ ଯୁଦ୍ଧ ଆରମ୍ଭ କଲେ । ଏହି ଯୁଦ୍ଧରେ ଫ୍ରାନ୍ସ ମଧ୍ୟ ଯୋଗଦାନ କରିଥିଲା । ଯାହାହେଉ ଚୀନାମାନେ ପରାସ୍ତ ହୋଇ ଇଂରେଜ ଓ ଫରାସୀ ରାଜଦୂତଙ୍କୁ ପେକିଂ ନଗରୀରେ ସ୍ଥାନ ଦାନ କରିଥିଲେ ଏବଂ ଇଂରେଜ ଓ ଫରାସୀମାନଙ୍କ ବାଣିଜ୍ୟ ନିମନ୍ତେ ଅନ୍ୟ କେତେଗୁଡ଼ିଏ ବନ୍ଦର ଉନ୍ମୁକ୍ତ ହୋଇଥିଲା ।

ଚୀନ ସହିତ ଯୁଦ୍ଧ ଶେଷ ନ ହେଉଣୁ ଭାରତବର୍ଷରେ ସିପାହୀମାନଙ୍କ ମଧ୍ୟରେ ଏକ ବିଦ୍ରୋହ ଉପସ୍ଥିତ ହୋଇଥିଲା । ଏହାର ଫଳସ୍ୱରୂପ ଭାରତର ଶାସନଭାର ଇଷ୍ଟଇଣ୍ଡିଆ କମ୍ପାନୀ ହସ୍ତରୁ ରାଜାଙ୍କ ହସ୍ତକୁ ଗତ ହେଲା ଏବଂ ଇଂଲଣ୍ଡର ଏକ ମନ୍ତ୍ରୀ ( Secretary of State for India)ଙ୍କ ଦ୍ୱାରା ଉକ୍ତ ଶାସନ କାର୍ଯ୍ୟ ପରିଚାଳିତ ହେବାକୁ ଲାଗିଲା ।

ଭାରତରେ ସିପାହୀ ବିଦ୍ରୋହ ୧୮୫୭-୫୭

ପାମାରଷ୍ଟୋନଙ୍କ ମନ୍ତ୍ରିତ୍ୱ କାଳରେ ଇଉରୋପ ଓ ଆମେରିକାରେ କେତେଗୁଡ଼ିଏ ପ୍ରଧାନ ଘଟଣା ଘଟିଥିଲା ଏବଂ ସେଥିରେ ନ୍ୟୂନାଧିକ୍ୟ-ଭାବରେ ଇଂଲଣ୍ଡର ସମ୍ପର୍କ ଥିଲା । ଇଟାଲୀ ଏଥିପୂର୍ବେ ପ୍ରାୟ ୮ ଗୋଟି କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା; ମାତ୍ର ୧୮୫୯ ରେ ଇଟାଲୀସ୍ଥାନମାନେ ସାର୍ଡିନିଆର ରାଜା ଭିକ୍ଟର ଏମାନୁଏଲଙ୍କୁ ସମସ୍ତ ଇଟାଲୀର ରାଜା ବୋଲି ଗ୍ରହଣ କରିବାକୁ ଅଗ୍ରସର ହେଲେ । ଏମାନୁଏଲ ଫରାସୀମାନଙ୍କ ସାହାଯ୍ୟରେ ଅଷ୍ଟ୍ରିଆନ୍‌-ମାନଙ୍କୁ ଉତ୍ତରାଞ୍ଚଳରୁ ବହିଷ୍କୃତ କରି ଅପର କ୍ଷୁଦ୍ର ରାଜ୍ୟମାନ ଅଧିକାର କଲେ ଏବଂ ତାହାଙ୍କର ମନ୍ତ୍ରୀ ଗାରିବାଲଡି ଇଂରାଜମାନଙ୍କ ସହାୟତାରେ

ଯୁକ୍ତ ଇଟାଲୀ

ସିସିଲି ଓ ନେପଲ୍ସ ଅଧିକାର କରି ସମସ୍ତ ଇଟାଲୀ ଏମାନୁଏଲଙ୍କ ଅଧୀନ କଲେ । ରୋମ ଓ ଭିନିସ କେବଳ ପୋପଙ୍କ ଅଧୀନ ରହିଲା; ମାତ୍ର ୧୮୬୬ରେ ଫ୍ରାନ୍ସ ଓ ଅଷ୍ଟ୍ରିୟା ସହିତ ପ୍ରୁସିଆର ଯୁଦ୍ଧ ସମୟରେ ଭିନିସ ଇଟାଲୀ ଅଧୀନକୁ ଆସିଲା ଏବଂ ୧୮୭୦ ରେ ଫ୍ରାନ୍ସ ଓ ଜରମାନୀ ଯୁଦ୍ଧ ସମୟରେ ରୋମ ମଧ୍ୟ ଇଟାଲୀ ରାଜାଙ୍କର ଅଧୀନ ହେଲା ।

ଅମେରିକାର ଯୁକ୍ତରାଜ୍ୟର ଅନ୍ତର୍ବିପ୍ଳବ

୧୮୬୧ ରେ ଆମେରିକାର ଯୁକ୍ତରାଜ୍ୟର ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ ମଧ୍ୟରେ ଏକ ବିପ୍ଳବ ଉପସ୍ଥିତ ହୋଇଥିଲା । ଉତ୍ତରାଞ୍ଚଳ କ୍ରୀତଦାସ ପ୍ରଥା ରହିତ କରିଥିଲା; ମାତ୍ର ଦକ୍ଷିଣାଞ୍ଚଳ ଇକ୍ଷୁକୃଷି ହେତୁ କ୍ରୀତଦାସ ପ୍ରଥାର ସମର୍ଥକ ଥିଲେ । ଏଥିରେ ଇଉରୋପର ଶକ୍ତିମାନେ ନିରପେକ୍ଷଭାବରେ ଥିଲେ । ମାତ୍ର ଦକ୍ଷିଣାଞ୍ଚଳର 'ଆଲାବାମା' ନାମକ ଏକ ରଣପୋତ ଇଂଲଣ୍ଡରେ ପ୍ରସ୍ତୁତ ହୋଇଥିବାରୁ ଇଂରାଜମାନଙ୍କୁ କ୍ଷତି-ପୂରଣସ୍ୱରୂପ ଉତ୍ତର ଅଞ୍ଚଳକୁ ୩୦ ଲକ୍ଷ ପାଉଣ୍ଡ ଦେବାକୁ ହୋଇଥିଲା । ଅବଶେଷରେ ଉତ୍ତର ଅଞ୍ଚଳ ଜୟୀ ହୋଇଥିଲା; ମାତ୍ର ଯୁକ୍ତରାଜ୍ୟର ସଭାପତି ଲିଙ୍କନଙ୍କ ଚେଷ୍ଟାରେ ଉଭୟ ଅଞ୍ଚଳ ମଧ୍ୟରେ ସନ୍ଧି ସ୍ଥାପିତ ହୋଇ ଏକ ରାଜ୍ୟରୂପେ ରହିଥିଲା ।

ଜରମାନୀ ସାମ୍ରାଜ୍ୟ ଗଠନ—୧୮୭୧

ଜରମାନୀ ଏଥିପୂର୍ବେ କେତେଗୁଡ଼ିଏ କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା ଏବଂ ଏହି ରାଜ୍ୟଗୁଡ଼ିକ ମଧ୍ୟରେ ସଦ୍ଭାବ ନ ଥିଲା । ପ୍ରୁଶିୟାର ରାଜା ପ୍ରଥମ ଉଇଲିୟମ ୧୮୬୧ ରେ ସିଂହାସନ ଆରୋହଣ କରି ବିସମାର୍କ ନାମକ ଏକ ବିଚକ୍ଷଣ ରାଜନୀତିଜ୍ଞଙ୍କୁ ତାହାଙ୍କର ପ୍ରଧାନ ମନ୍ତ୍ରିପଦରେ ବରଣ କରିଥିଲେ । ବିସମାର୍କ ବୁଝିଥିଲେ, ସମସ୍ତ ଜରମାନୀ ରାଜ୍ୟଗୁଡ଼ିକ ଏକତ୍ର କରି ଏକ ରାଜାଙ୍କ ଅଧୀନ ନ କଲେ ଦେଶର ମଙ୍ଗଳ ହେବ ନାହିଁ । ସେଥିପାଇଁ ସେ ପ୍ରୁଶିୟାର ରାଜାଙ୍କୁ ସମସ୍ତ ଜରମାନୀର ସମ୍ରାଟ୍ ପଦ ପ୍ରଦାନ କରିବାକୁ ପ୍ରୟାସୀ ହୋଇଥିଲେ । ସେ ପ୍ରଥମେ ଅଷ୍ଟ୍ରିଆ ସହିତ ଯୋଗଦାନ

କରି ଡେନମାର୍କ ଅଧିକୃତ ହଲଷ୍ଟିନ ଓ ସେଲସୱିଗ ନାମକ ଦୁଇ ଜରମାନ ପ୍ରଦେଶ ଅଧିକାର କରିଥିଲେ । ତଦନନ୍ତର ସେ ଜରମାନୀର ଉତ୍ତରାଞ୍ଚଳର କେତେକ ରାଜ୍ୟ ସହିତ ଯୋଗଦାନ କରି ଅଷ୍ଟ୍ରିଆକୁ ପରାସ୍ତ କରି ପ୍ରୁଶିଆର ରାଜାଙ୍କୁ ଜରମାନୀର ସମ୍ରାଟ ବୋଲି ଘୋଷଣା କରିଥିଲେ । ତାହାଙ୍କ ଶିକ୍ଷାରେ ବଳୀୟାନ୍ ହୋଇ ଜରମାନୀ ସାମ୍ରାଜ୍ୟ ନୂତନ ଭାବରେ ଗଠିତ ହେଲା । ଫ୍ରାନ୍ସ ଏଥିରେ ଈର୍ଷାନ୍ୱିତ ହୋଇ ଯୁଦ୍ଧାର୍ଥ ଅଗ୍ରସର ହୁଅନ୍ତେ ପ୍ରୁଶିଆ କର୍ତ୍ତୃକ ପରାସ୍ତ ହୋଇ 'ଅଲସାକ୍ ଲରେନ' ନାମକ ପ୍ରଦେଶ ପ୍ରଦାନ କଲା । ଫ୍ରାନ୍ସର ରାଜା ତୃତୀୟ ନେପୋଲିୟନ ସିଂହାସନଚ୍ୟୁତ ହେଲେ ଓ ଫ୍ରାନ୍ସ ସାଧାରଣତନ୍ତ୍ରରେ ପରିଣତ ହେଲା (୧୮୭୧) ।

ଗ୍ଲାଡଷ୍ଟୋନଙ୍କ ମନ୍ତ୍ରିତ୍ୱ କାଳରେ ୧୮୭୧ ରେ ଭିକ୍ଟୋରିଆଙ୍କ ସ୍ୱାମୀ କାଳଗ୍ରାସରେ ପତିତ ହୋଇଥିଲେ ଏବଂ ତାହାର ଦୁଇ ବର୍ଷ ଉତ୍ତାରେ ଇଂଲଣ୍ଡର ଯୁବରାଜ ପ୍ରିନ୍ସ ଅଫ୍ ଓ୍ୱେଲ୍ସଙ୍କ ପରିଣୟ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ୧୮୬୫ରେ ପାମାରଷ୍ଟୋନଙ୍କ ମୃତ୍ୟୁ ହୁଅନ୍ତେ ଦେଶରେ ଏକ ନୂତନ ସଂସ୍କାର ଯୁଗ ପ୍ରବର୍ତ୍ତିତ ହେଲା । ଲର୍ଡ ରସେଲ ପୁନର୍ବାର ମନ୍ତ୍ରିତ୍ୱ ଲାଭ କରି ଏକ ନୂତନ ପାର୍ଲିମେଣ୍ଟ ସଂସ୍କାର ଆଇନ ଆଗତ କଲେ; ମାତ୍ର ସେଥିରେ ଲୋକମାନେ ଅସନ୍ତୁଷ୍ଟ ହୋଇ ତାହାର ଘୋର ପ୍ରତିବାଦ କରନ୍ତେ ସେ ପଦତ୍ୟାଗ କଲେ ଓ ଲର୍ଡ ଡର୍ବି ପୁନର୍ବାର ପ୍ରଧାନ ମନ୍ତ୍ରିତ୍ୱ ଗ୍ରହଣ କଲେ ।

ପାମାରଷ୍ଟୋନଙ୍କ ମନ୍ତ୍ରିତ୍ୱର ଅବସାନ

ଡର୍ବିଙ୍କ ସମୟରେ ଏକ ନୂତନ ପାର୍ଲିମେଣ୍ଟ-ସଂସ୍କାର ଆଇନ ପ୍ରବର୍ତ୍ତିତ ହେଲା । ଏତଦ୍ୱାରା ନଗରମାନଙ୍କର ସମସ୍ତ ଗୃହସ୍ଥମାନଙ୍କୁ ଓ ୧୨ ପାଉଣ୍ଡ କରଦାତା ସମସ୍ତ ପ୍ରାଦେଶିକ ଗୃହସ୍ଥମାନଙ୍କୁ ଭୋଟ ଦେବା ଅଧିକାର ପ୍ରଦତ୍ତ ହେଲା । କେତେକ କ୍ଷୁଦ୍ର ନଗରମାନଙ୍କରୁ ସଭ୍ୟ ନିର୍ବାଚନ କ୍ଷମତା ଗୃହୀତ ହୋଇ କେତେକ ବର୍ଦ୍ଧିଷ୍ଣୁ ନଗରମାନଙ୍କୁ ପ୍ରଦତ୍ତ ହେଲା ।

ଦ୍ୱିତୀୟ ସଂସ୍କାର ଆଇନ ୧୮୬୭

ଅସୁସ୍ଥତା ହେତୁ ଡର୍ବି ପଦତ୍ୟାଗ କରନ୍ତେ ଲର୍ଡ ଡିସ୍‌ରେଲି କିଛିକାଳ ପାଇଁ ପ୍ରଧାନ ମନ୍ତ୍ରୀ ହୋଇଥିଲେ । ନୂତନ ପାର୍ଲିମେଣ୍ଟର ବହୁ ମେମ୍ବର ତାହାଙ୍କ ବିପକ୍ଷ ହୁଅନ୍ତେ ସେ ଅଳ୍ପଦିନ ମଧ୍ୟରେ ପଦତ୍ୟାଗ କଲେ ଓ ଗ୍ଲାଡଷ୍ଟୋନ ପ୍ରଧାନ ମନ୍ତ୍ରୀ ହେଲେ । ସେ ଏଥିପୂର୍ବେ ଏବାର୍ଡିନ ଓ ପାମାରଷ୍ଟୋନଙ୍କ ମନ୍ତ୍ରିତ୍ୱ କାଳରେ ଚାନ୍‌ସେଲର ସ୍ୱରୂପ ବହୁ ବାଣିଜ୍ୟ ଦ୍ରବ୍ୟ ଉପରୁ କର ଉଠାଇଦେଇ ସୁନାମ ଅର୍ଜ୍ଜନ କରିଥିଲେ ।

**ଆଇର୍ଲାଣ୍ଡର ଅସନ୍ତୋଷ**—ଆଇର୍ଲାଣ୍ଡର କାଥଲିକ୍‌ମାନଙ୍କୁ ରାଜନୈତିକ ସ୍ୱାଧୀନତା ପ୍ରଦତ୍ତ ହୋଇଥିଲା; ମାତ୍ର ସେମାନଙ୍କୁ ଇଂଲଣ୍ଡର

**ଗ୍ଲାଡଷ୍ଟୋନଙ୍କ ମନ୍ତ୍ରିତ୍ୱ**

ପ୍ରତିଷ୍ଠିତ ଚର୍ଚ୍ଚର ବିଶପମାନଙ୍କୁ ଟାଇଥ କର ଦେବାକୁ ହେଉଥିଲା ଓ ଭୂମି ଉପରେ ସେମାନଙ୍କର କୌଣସି ଅଧିକାର ନ ଥିଲା । ସେଥିପାଇଁ ଆଇରିସମାନେ ଅସନ୍ତୁଷ୍ଟ ଥିଲେ ଓ ୧୮୪୮ ରେ ଇଉରୋପରେ ରାଷ୍ଟ୍ରବିପ୍ଳବ ଉପସ୍ଥିତ ହୁଅନ୍ତେ ସେମାନେ ଫେନିଏନ୍ ନାମରେ ପରିଚିତ ଏକ ସଂଘ ଗଠନ କରି ଷ୍ଟିଫେନସ୍ ନାମକ ନେତାଙ୍କ ଅଧୀନରେ ବିଦ୍ରୋହୀ ହୋଇଥିଲେ; ମାତ୍ର ଏହି ବିଦ୍ରୋହ ଦମିତ ହୋଇଥିଲା । ଗ୍ଲାଡଷ୍ଟୋନ ମନ୍ତ୍ରିତ୍ୱ ଗ୍ରହଣ କରି ଆଇର୍ଲାଣ୍ଡର ଅଧିବାସୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଇଂଲଣ୍ଡର ପ୍ରତିଷ୍ଠିତ ଧର୍ମଠାରୁ ସେମାନଙ୍କୁ ସ୍ୱାଧୀନ କରିଦେଇଥିଲେ । ପ୍ରୋଟେଷ୍ଟାଣ୍ଟ ବିଶପମାନଙ୍କୁ ଟାଇଥ ଦେବା ପ୍ରଥା ରହିତ ହୋଇଥିଲା (୧୮୬୯) ।



ଗ୍ଲାଡ୍‌ଷ୍ଟୋନ

'ଆଇରିସ ପ୍ରଜାମାନଙ୍କର ଭୂମି ଉପରେ କୌଣସି ଅଧିକାର ନ ଥିଲା; ସେଠାର ଇଂରାଜ ଓ ସ୍କଚ ଜମିଦାରମାନେ ସର୍ବଦା ସ୍ୱଦେଶରେ ରହୁଥିଲେ । ମାତ୍ର ଦେଶର ରାସ୍ତା, ଅଟ୍ଟାଳିକା ପ୍ରଭୃତି ନିର୍ମାଣର ଭାର ପ୍ରଜାମାନଙ୍କ ଉପରେ ଥିଲା । ଜମିଦାରମାନେ ଇଚ୍ଛା କଲେ ଅକ୍ଳେଶରେ ପ୍ରଜାମାନଙ୍କୁ ଦୂର କରିଦେଉଥିଲେ । ଗ୍ଲାଡଷ୍ଟୋନ ଏହି ଅନ୍ୟାୟ ଓ ଅସନ୍ତୋଷ ଦୂରୀକରଣାର୍ଥ ତାହାଙ୍କର ପ୍ରଥମ ଭୂମି ଆଇନ ( First Land Act ) ପ୍ରଣୟନ କରିଥିଲେ । ଏତଦ୍ୱାରା ଆଇରିଷ ପ୍ରଜାମାନଙ୍କୁ ଭୂମିରୁ ଦୂର କରିବାକୁ ହେଲେ ଜମିଦାରମାନଙ୍କୁ କ୍ଷତିପୂରଣ ଦେବାକୁ ପଡ଼ିଲା (୧୮୭୦) ।

୧୮୭୦ରେ ଫର୍ଷ୍ଟାରଙ୍କଦ୍ୱାରା ଆଗତ ଇଂଲଣ୍ଡରେ ଏକ ଶିକ୍ଷା ଆଇନ (Education Act ) ପ୍ରବର୍ତ୍ତିତ ହୋଇଥିଲା । ପ୍ରଦେଶମାନଙ୍କରେ ସାଧାରଣ ଲୋକମାନେ ସେମାନଙ୍କର ସ୍କୁଲ ବୋର୍ଡମାନ ନିର୍ବାଚନ ଓ ପରିଚାଳନ ନିମିତ୍ତ ଲୋକମାନଙ୍କଠାରୁ ଏକ ଶିକ୍ଷା-କର ଆଦାୟ କରିବାର ଅଧିକାର ଲାଭ କଲେ । ବାଳକବାଳିକାମାନଙ୍କୁ ସ୍କୁଲକୁ ପ୍ରେରଣ କରିବା ପାଇଁ ଲୋକମାନଙ୍କୁ ବାଧ୍ୟ କରାଗଲା । ତତ୍ପରବର୍ଷ ବିଶ୍ୱବିଦ୍ୟାଳୟର ଏକ ଆଇନ ପ୍ରସ୍ତୁତ ହୋଇଥିଲା । ତଦ୍ଦ୍ୱାରା କାଥଲିକ ଓ ନନ୍ କନଫର୍ମିଷ୍ଟ ଅର୍ଥାତ୍ ଯେଉଁମାନେ ଇଂଲିସ ଚର୍ଚ୍ଚର ଅନ୍ତର୍ଗତ ନ ଥିଲେ, ସେମାନେ କେମ୍ବ୍ରିଜ ଓ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ଶିକ୍ଷା ଲାଭ କରିବାର ଅଧିକାର ପାଇଲେ ।

ଇଂଲଣ୍ଡର ଶିକ୍ଷା-ବିଭାଗ

ଏଥିପୂର୍ବେ ଲୋକମାନେ ପ୍ରକାଶ୍ୟ ଭାବରେ ପାର୍ଲିମେଣ୍ଟ ନିର୍ବାଚନ ସମୟରେ ଭୋଟ ଦେଉଥିଲେ; ମାତ୍ର ୧୮୭୨ର 'ବାଲଟ' ଆଇନ ଅନୁସାରେ ଲୋକମାନେ ଅନ୍ୟର ଅଗୋଚରରେ ଭୋଟ ଦେବାକୁ ଲାଗିଲେ । କୌଣସି ବ୍ୟକ୍ତି ଅପରକୁ ଭୟ ପ୍ରଦର୍ଶନପୂର୍ବକ ଭୋଟ ଲାଭ କରିବାର ସୁବିଧା ବନ୍ଦ ହେଲା ।

ଶାସନ ବିଭାଗ
(ବାଲଟ ଆଇନ—
Ballot Act)

ଇଂଲଣ୍ଡରେ ବହୁ ବିଚାରାଳୟ ସ୍ଥାପିତ ହୋଇଥିଲା । ୧୮୭୩ରେ ଇଂଲଣ୍ଡରେ 'ସୁପ୍ରିମ କୋର୍ଟ'' ନାମକ ଏକ ବିଚାରାଳୟ ସ୍ଥାପିତ ହୋଇ ଅନ୍ୟ ବିଚାରାଳୟଗୁଡ଼ିକୁ ତାହାର ଅଧୀନ କରାଗଲା ।

ସୁପ୍ରିମକୋର୍ଟ ସ୍ଥାପନ

ପୂର୍ବେ ସୈନ୍ୟବିଭାଗର ଉଚ୍ଚ ପଦସ୍ଥ କର୍ମଚାରୀ-ମାନେ ସ୍ୱୀୟ ନିୟୋଗ ପତ୍ର (Commission) ରାଜାଙ୍କଠାରୁ କ୍ରୟ କିମ୍ବା ଅପରକୁ ବିକ୍ରୟ କରି ପାରୁଥିଲେ । ୧୮୭୧ରେ ଏହି ପ୍ରଥା ରହିତ ହୋଇଥିଲା ।

ସୈନ୍ୟ ବିଭାଗ

୧୮୭୪ରେ ନୂତନ ପାର୍ଲିମେଣ୍ଟର ଅଧିକାଂଶ ସଭ୍ୟ ଗ୍ଲାଡ୍‌ଷ୍ଟୋନଙ୍କର ବିରୋଧୀ ହୁଅନ୍ତେ ସେ ପଦ ତ୍ୟାଗ କଲେ ଏବଂ ଲର୍ଡ ଡ଼ିସରେଲି (ବେକନସ୍ ଫିଲଡ୍) ପ୍ରଧାନ ମନ୍ତ୍ରୀ ହେଲେ ।

୧୮୭୧ରେ ରୁଷିୟା ପ୍ରୁଶିୟାର ପ୍ରଧାନ ମନ୍ତ୍ରୀ ବିସମାର୍କଙ୍କ ଇଙ୍ଗିତରେ ୧୮୫୬ର ପାରୀ ସନ୍ଧି ଭଙ୍ଗ କରି କୃଷ୍ଣସାଗରରେ କେତେକ ରଣତରୀ ରକ୍ଷା କରିଥିଲା । ତଦନନ୍ତର ୧୮୭୫ରେ ତୁରସ୍କ ଅଧିକୃତ ଡାନ୍ୟୁବ ନଦୀ ନିକଟସ୍ଥ ଇଉରୋପୀୟ ପ୍ରଦେଶମାନଙ୍କର ଖ୍ରୀଷ୍ଟାନ ପ୍ରଜାମାନେ ତୁରସ୍କର ସୁଲତାନଙ୍କ ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ବିଦ୍ରୋହୀ ହୁଅନ୍ତେ ତୁର୍କମାନେ ଅତ୍ୟନ୍ତ ନିର୍ଦ୍ଦୟ ଭାବରେ ଉକ୍ତ ବିଦ୍ରୋହ ଦମନ କରିଥିଲେ । ଏଥିରେ ରୁଷିଆ କ୍ରୁଦ୍ଧ ହୋଇ ତୁରସ୍କର ରାଜଧାନୀ କନଷ୍ଟାଣ୍ଟିନୋପଲ ଅଧିକାର କରିବାକୁ ଅଗ୍ରସର ହେଲା । ତୁରସ୍କରେ ରୁଷିଆର କ୍ଷମତା ବୃଦ୍ଧି ଇଂରାଜମାନଙ୍କର ଅନଭିପ୍ରେତ ଥିବାରୁ ଲର୍ଡ ବେକନସ୍ ଫିଲଡ୍ ତୁରସ୍କର ସାହାଯ୍ୟ ନିମିତ୍ତ କନଷ୍ଟାଣ୍ଟି-ନୋପଲଠାକୁ ଏକ ଦଳ ବ୍ରିଟିଶ ରଣତରୀ ଓ ମାଲଟାକୁ ଏକଦଳ ଭାରତୀୟ ସୈନ୍ୟ ଅନୟନ କଲେ । ରୁଷିୟା ଭୀତ ହୋଇ ଅବଶେଷରେ

ବେକନ୍‌ସ ଫିଲଡ୍‌ଙ୍କ ମନ୍ତ୍ରିତ୍ୱ (ଇଂଲଣ୍ଡର ବୈଦେଶିକ ସମ୍ବନ୍ଧ) ରୁଷିଆ ତୁରସ୍କ ଯୁଦ୍ଧ

ବର୍ଲିନଠାରେ ଏକ ସନ୍ଧି-ପତ୍ର ସ୍ୱାକ୍ଷର କଲା । ତଦ୍ଦ୍ୱାରା ରୁମାନିଆ, ସର୍ବିଆ, ମଣ୍ଟିନିଗ୍ରୋ ସ୍ୱାଧୀନତା ପ୍ରାପ୍ତ ହେଲେ । ବସ୍‌ନିଆ, ହାର୍ଜିଗୋଭିନା ଅଷ୍ଟ୍ରିଆର ଶାସନାଧୀନ ହେଲା । ବୁଲଗେରିଆ କେତେକ ପରିମାଣରେ ସ୍ୱାଧୀନତା ଲାଭ କଲା । ଇଂରାଜମାନେ ତୁରସ୍କ ସାମ୍ରାଜ୍ୟ ରକ୍ଷା କରିବା ପାଇଁ ସାଇପ୍ରସଠାରେ କେତେକ ରଣତରୀ ରକ୍ଷା କରିବାକୁ ଲାଗିଲେ ।

ସୁଯେଜ ଖାଲ

ଫରାସୀ ଇଞ୍ଜିନିୟର ଫର୍ଡିନେଣ୍ଡ ଲସେପ୍ ( Ferdinand de Lesseps) ସୁଯେଜ ଖାଲ ଖନନ କରି ଭୂମଧ୍ୟସାଗର ସହିତ ଲୋହିତ-ସାଗର ଯୋଗ କରିଥିଲେ । ବେକନସ୍‌ଫିଲ୍ଡ ସେଥିରେ ଅନେକଗୁଡ଼ିଏ ଅଂଶ କ୍ରୟ କରି ସେଠାରେ ଇଂରାଜ ପ୍ରାଧାନ୍ୟ ସ୍ଥାପନ କଲେ । ଏହାଦ୍ୱାରା ଭାରତବର୍ଷକୁ ଯାତାୟାତର ଅତ୍ୟନ୍ତ ସୁବିଧା ହେଲା ।

୧୮୮୦ରେ ନୂତନ ପାର୍ଲିମେଣ୍ଟ ଆହୂତ ହୁଅନ୍ତେ ଅଧିକାଂଶ ନୂତନ ସଭ୍ୟ ବେକନସଫିଲ୍ଡଙ୍କ ବିରୋଧୀ ଦଳଭୁକ୍ତ ହୋଇଥିଲେ । ସୁତରାଂ ସେ ପଦ ତ୍ୟାଗ କଲେ ଓ ଗ୍ଲାଡ଼ଷ୍ଟୋନ ପୁନର୍ବାର ପ୍ରଧାନ ମନ୍ତ୍ରୀ ହେଲେ ।

ଗ୍ଲାଡଷ୍ଟୋନଙ୍କ ମନ୍ତ୍ରିତ୍ୱ ଆୟର୍ଲାଣ୍ଡର 'ହୋମରୁଲ' ଆନ୍ଦୋଳନ

ଗ୍ଲାଡଷ୍ଟୋନଙ୍କ ପ୍ରଥମ ମନ୍ତ୍ରିତ୍ୱ କାଳରେ ଆୟର୍ଲାଣ୍ଡକୁ ଭୂମି ଓ ଧର୍ମ ସମ୍ବନ୍ଧୀୟ କେତେକ ସୁବିଧା ପ୍ରଦତ୍ତ ହୋଇଥିଲା; ମାତ୍ର ସେଥିରେ ସେମାନେ ସନ୍ତୁଷ୍ଟ ନ ହୋଇ ଇଂଲଣ୍ଡଠାରୁ ପୃଥକ୍ ହୋଇ ସ୍ୱତନ୍ତ୍ର ପାର୍ଲିମେଣ୍ଟ ସୃଷ୍ଟି କରିବାର ଅଧିକାର ପାଇଁ ଆନ୍ଦୋଳନ ଉପସ୍ଥିତ କରିଥିଲେ । ସେମାନଙ୍କ ନେତା ପାର୍ନେଲ ଇଂଲଣ୍ଡର ପାର୍ଲିମେଣ୍ଟରେ ଉପସ୍ଥିତ ଥାଇଁ ଯେଉଁ ସମସ୍ତ ବିଷୟ ସହିତ ଆୟର୍ଲାଣ୍ଡର ସମ୍ପର୍କ ନ ଥିଲା, ସେ ସମସ୍ତ ବିଷୟରେ ବାଧା ଦେବାକୁ ଲାଗିଲେ । ଆୟର୍ଲାଣ୍ଡର ଲୋକମାନେ ସଙ୍ଘବଦ୍ଧ ହୋଇ ଭୂମିର କର ହ୍ରାସ କରିବା ପାଇଁ ଆନ୍ଦୋଳନ ଉପସ୍ଥିତ କଲେ (୧୮୭୭) ।

ଗ୍ଲାଡ଼ଷ୍ଟୋନ ମନ୍ତ୍ରିତ୍ୱ ଗ୍ରହଣ କରି ଆଇରିସମାନଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଭୂମି ସମ୍ବନ୍ଧରେ ଏକ ନୂତନ ଆଇନ ପ୍ରସ୍ତୁତ କରିଥିଲେ । ଏତଦ୍ଦ୍ୱାରା ଭୂମିର କର ଜମିଦାରମାନଙ୍କ ଦ୍ୱାରା ନିର୍ଦ୍ଧାରିତ ନ ହୋଇ ଗୋଟିଏ ସ୍ୱତନ୍ତ୍ର ବିଚାରାଳୟ ଦ୍ୱାରା ୧୫ ବର୍ଷ ପାଇଁ ନିର୍ଦ୍ଧାରିତ ହେଲା ଏବଂ ଭୂମି ଉପରେ ପ୍ରଜାମାନଙ୍କ ସ୍ୱତ୍ୱ ବା ଅଧିକାର ସ୍ୱୀକୃତ ହେଲା । ଆଇରିସ୍‌ମାନଙ୍କ ନେତା ପାରନେଲ ସନ୍ତୁଷ୍ଟ ନ ହୋଇ ଲୋକମାନଙ୍କୁ ଭୂମିର କର ଦେବାକୁ ନିଷେଧ କରିଥିଲେ । ଏତଦ୍ଦ୍ୱାରା ଦେଶ ମଧ୍ୟରେ ନାନାପ୍ରକାର ଗୋଳମାଳ ଉପସ୍ଥିତ ହୁଅନ୍ତେ ପାରନେଲ ଓ ଅନ୍ୟାନ୍ୟ ନେତାମାନେ କାରାରୁଦ୍ଧ ହେଲେ ।

ମାତ୍ର ସାମାନ୍ୟ କେତେକ ସୁବିଧା ପ୍ରଦାନ ବା ଭୟ ପ୍ରଦର୍ଶନଦ୍ୱାରା ଅୟର୍ଲାଣ୍ଡର "ହୋମରୁଲ" ଆନ୍ଦୋଳନ ସ୍ଥଗିତ ନ ହୁଅନ୍ତେ ଗ୍ଲାଡ଼ଷ୍ଟୋନ ଅୟର୍ଲାଣ୍ଡକୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ "ହୋମରୁଲ ବିଲ" ଓ "ଭୂମି ସମ୍ବନ୍ଧୀୟ ଆଇନ" ( Land Act ) ନାମକ ଦୁଇଗୋଟି ବିଲ ଆଗତ କରିଥିଲେ (୧୮୮୬) ।

"ହୋମରୁଲ" ବିଲର ଉଦ୍ଦେଶ୍ୟ ଥିଲା ଯେ, ଅୟର୍ଲାଣ୍ଡର ସ୍ୱତନ୍ତ୍ର ପାର୍ଲିମେଣ୍ଟ ହେବ ଏବଂ ସେଥିରେ ଅୟର୍ଲାଣ୍ଡର ସମସ୍ତ ବିଷୟ ସମାଧାନ ହେବ । ଅୟର୍ଲାଣ୍ଡର ଆଭ୍ୟନ୍ତରିକ ବିଭାଗ ଉକ୍ତ ପାର୍ଲିମେଣ୍ଟର ଅଧୀନ ହେବ; ମାତ୍ର ବୈଦେଶିକ ବିଭାଗ, ସେନା ବିଭାଗ ଓ ନୌବିଭାଗ ଇଂରାଜ ପାର୍ଲିମେଣ୍ଟର ଅଧୀନ ରହିବ । ଅୟର୍ଲାଣ୍ଡ ଇଂଲଣ୍ଡର ଅଧୀନରେ ରହିବ ଏବଂ ସାମ୍ରାଜ୍ୟର ବ୍ୟୟ ଭାରର ଅଂଶ ଗ୍ରହଣ କରିବ ।

ଦ୍ୱିତୀୟ ବିଲର ଉଦ୍ଦେଶ୍ୟ ଥିଲା ଯେ, ଅୟର୍ଲାଣ୍ଡର ଜମିଦାରମାନଙ୍କୁ ଅର୍ଥ ପ୍ରଦାନପୂର୍ବକ ସମସ୍ତ ଭୂମି କ୍ରୟ କରି ଉକ୍ତ ଭୂମି ଆଇରିସ ପ୍ରଜାମାନଙ୍କୁ ପ୍ରଦତ୍ତ ହେବ । ମାତ୍ର ପାର୍ଲିମେଣ୍ଟର ଅଧିକାଂଶ ସଭ୍ୟ ଗ୍ଲାଡ଼ଷ୍ଟୋନଙ୍କ "ହୋମରୁଲ ବିଲ" ର ବିରୋଧୀ ହୁଅନ୍ତେ ସେ ପଦ ତ୍ୟାଗ କଲେ ଏବଂ

ଲର୍ଡ ସଲସବରୀ ପ୍ରଧାନ ମନ୍ତ୍ରୀ ହେଲେ । ଯେଉଁମାନେ ଆୟର୍ଲାଣ୍ଡର ହୋମରୁଲ ସପକ୍ଷରେ ଥିଲେ ସେମାନେ "ହୋମରୁଲର୍ସ" ଓ ଯେଉଁମାନେ ତାହାର ବିରୋଧରେ ଥିଲେ ଏବଂ ଆୟର୍ଲାଣ୍ଡ ଓ ଇଂଲଣ୍ଡ ଏକ ପାର୍ଲିମେଣ୍ଟର ଅଧୀନ ରହିବ ବୋଲି ଯେଉଁମାନଙ୍କର ଇଚ୍ଛା ଥିଲା, ସେମାନେ "ୟୁନିୟନିଷ୍ଟ" ନାମରେ ଅଭିହିତ ହେଲେ ।

ଗ୍ଲାଡଷ୍ଟୋନଙ୍କ ମନ୍ତ୍ରିତ୍ୱ କାଳରେ ପାର୍ଲିମେଣ୍ଟର ତୃତୀୟ ସଂସ୍କାର ଆଇନ ବିଧିବଦ୍ଧ ହୋଇଥିଲା । ଏତଦ୍ୱାରା କୃଷିଜୀବୀ ଗୃହସ୍ଥମାନଙ୍କୁ ଭୋଟ ଦେବା ଅଧିକାର ପ୍ରଦତ୍ତ ହେଲା ଏବଂ ବୃହତ୍ ପ୍ରଦେଶଗୁଡ଼ିକୁ କ୍ଷୁଦ୍ର କ୍ଷୁଦ୍ର ବିଭାଗରେ ବିଭକ୍ତ କରି ପ୍ରତ୍ୟେକ ବିଭାଗକୁ ଏକ ଜଣ ଲେଖାଏଁ ସଭ୍ୟ ନିର୍ବାଚନ କରିବାର ଅଧିକାର ପ୍ରଦାନ କରାଗଲା । ପ୍ରଦେଶ ଓ ନଗରସମୂହ ଲୋକସଂଖ୍ୟା ଅନୁଯାୟୀ ପାର୍ଲିମେଣ୍ଟକୁ ପ୍ରତିନିଧି ପଠାଇବାର ଅଧିକାର ଲାଭ କଲେ । ଇଂଲଣ୍ଡରେ ପୂର୍ଣ୍ଣ ସାଧାରଣ ତନ୍ତ୍ର ପ୍ରତିଷ୍ଠିତ ହେଲା ( Democracy ) ।

ତୃତୀୟ ସଂସ୍କାର ଆଇନ ୧୮୮୪

ଗ୍ଲାଡଷ୍ଟୋନଙ୍କ ଉତ୍ତାରେ ସଲସବରୀ ୬ବର୍ଷ ପାଇଁ ପ୍ରଧାନ ମନ୍ତ୍ରୀ ହୋଇଥିଲେ । ତାହାଙ୍କ ସମୟରେ କେତେଗୁଡ଼ିଏ ପ୍ରଧାନ ନିୟମ ପ୍ରବର୍ତ୍ତିତ ହୋଇଥିଲା । ୧୮୮୭ ସନେ, ଆଇରିସ ଦଣ୍ଡବିଧି ଆଇନ ନାମକ ଏକ ନିୟମ ପ୍ରବର୍ତ୍ତିତ ହୋଇଥିଲା । ଯେଉଁ ଲୋକମାନେ ରାଜନୈତିକ ବା ଜମିଦାରୀ ଗୋଳମାଳରେ ଲିପ୍ତ ଥିଲେ, ସେମାନଙ୍କ ବିଚାର ଓ ଦଣ୍ଡ ପାଇଁ ଏହି ନିୟମ ପ୍ରବର୍ତ୍ତିତ ହୋଇଥିଲା । ତଦନନ୍ତର ଆଇରିସ କୃଷକମାନଙ୍କ ଉନ୍ନତିକଳ୍ପେ ଦେଶ ମଧ୍ୟରେ ରେଲଲାଇନ ପ୍ରତିଷ୍ଠିତ ହୋଇ ଲୋକଙ୍କର ବହୁ ସୁବିଧା କରିଥିଲା ।

ଲର୍ଡ ସଲସ୍‌ବରୀଙ୍କ ମନ୍ତ୍ରିତ୍ୱ (୧୮୮୬-୧୮୯୨) (ଆଇରିସ ଦଣ୍ଡବିଧି ଆଇନ—Irish Crimes Act )

ସ୍ୱର୍ଣ୍ଣ ଜୁବିଲି

୧୮୭୭ ରେ ଭିକ୍ଟୋରିଆଙ୍କ ଶାସନର ୫୦ ବର୍ଷ ପୂର୍ଣ୍ଣ ହୁଅନ୍ତେ ଦେଶ ମଧ୍ୟରେ ଏକ ଜୁବିଲି ଉତ୍ସବ ସମ୍ପାଦିତ ହୋଇଥିଲା ।

ପ୍ରାଦେଶିକ ସ୍ୱାୟତ୍ତ ଶାସନ (County Council Act)

୧୮୮୮ରେ ଇଂଲଣ୍ଡର ପ୍ରଦେଶଗୁଡ଼ିକୁ ସ୍ୱାୟତ୍ତ-ଶାସନ ଭାର ପ୍ରଦତ୍ତ ହେଲା । ଲୋକମାନଙ୍କ ଦ୍ୱାରା ନିର୍ବାଚିତ ସଭ୍ୟମାନେ ସ୍ୱୀୟ ପ୍ରଦେଶଗୁଡ଼ିକର ଅଭ୍ୟନ୍ତରୀଣ ସମସ୍ତ କାର୍ଯ୍ୟ ପରିଚାଳନା କରି ଦେଶର ଉନ୍ନତି ସାଧନ କରିବାକୁ ଲାଗିଲେ । ଲୋକମାନଙ୍କୁ ସମସ୍ତ ବିଷୟରେ ଗଭର୍ଣ୍ଣମେଣ୍ଟଙ୍କ ମୁଖାପେକ୍ଷୀ ହେବାକୁ ହେଲା ନାହିଁ ।

ଶିକ୍ଷା ଆଇନ ୧୮୯୧

ଏଥିପୂର୍ବେ ୧୮୭୦ ରେ ଫର୍ଷ୍ଟରଙ୍କ ଦ୍ୱାରା ଆଗତ ଏକ ଶିକ୍ଷା ଆଇନ ପ୍ରବର୍ତ୍ତିତ ହୋଇ ଇଂଲଣ୍ଡରେ ବାଧ୍ୟତାମୂଳକ ଶିକ୍ଷା ପ୍ରବର୍ତ୍ତିତ ହୋଇଥିଲା; ମାତ୍ର ଉକ୍ତ ଆଇନ ଅନୁଯାୟୀ ଶିକ୍ଷା ନିମିତ୍ତ ଏକ ସ୍ୱତନ୍ତ୍ର କର ଗୃହୀତ ହେଉଥିବାରୁ ଲୋକମାନଙ୍କୁ କଷ୍ଟପ୍ରଦ ହୋଇଥିଲା । ବର୍ତ୍ତମାନ ନିୟମ କରାଗଲା ଯେ, ପ୍ରାଥମିକ ଶିକ୍ଷାର ବ୍ୟୟଭାର ଗଭର୍ଣ୍ଣମେଣ୍ଟ ବହନ କରିବେ । ଲୋକମାନଙ୍କୁ ସେଥିପାଇଁ କୌଣସି କର ଦେବାକୁ ହେବ ନାହିଁ । ଏତଦ୍ୱାରା ବାଳକବାଳିକାମାନେ ବିନା ବ୍ୟୟରେ ପ୍ରାଥମିକ ଶିକ୍ଷା ଲାଭ କରିବାକୁ ଲାଗିଲେ ।

ଔପନିବେଶିକ ସମ୍ମିଳନୀ

ଲୋକମାନଙ୍କର ଧାରଣା ହୋଇଥିଲା, ସ୍ୱାୟତ୍ତଶାସନ ଅଧିକାରପ୍ରାପ୍ତ ଇଂଲଣ୍ଡର ଉପନିବେଶଗୁଡ଼ିକ ସମ୍ପୂର୍ଣ୍ଣ ସ୍ୱାଧୀନତା ଘୋଷଣା କରିବେ । ଲୋକମାନଙ୍କର ଏହି ଭ୍ରାନ୍ତ ଧାରଣା ଦୂରୀକରଣାର୍ଥ ଲଣ୍ଡନରେ ସ୍ୱାୟତ୍ତ-ଶାସନ ଅଧିକାରପ୍ରାପ୍ତ ଉପନିବେଶମାନଙ୍କରୁ ସଭ୍ୟ ଆହୂତ ହୋଇ ଏକ ସମ୍ମିଳନୀ ହୋଇଥିଲା । ଏତଦ୍ୱାରା ଲୋକମାନଙ୍କର

ଭକ୍ତ ଭ୍ରାନ୍ତ ଧାରଣା ଦୂର ହୋଇଥିଲା । ଲୋକେ ବୁଝିଥିଲେ, ଉପନିବେଶ-ଗୁଡ଼ିକ ସ୍ୱାୟତ୍ତଶାସନ ଅଧିକାର ପ୍ରାପ୍ତ ହେଲେହେଁ ବ୍ରିଟିଶ ସାମ୍ରାଜ୍ୟ-ଅନ୍ତର୍ଭୁକ୍ତ ।

ଗ୍ଲାଡଷ୍ଟୋନଙ୍କ ମନ୍ତ୍ରିତ୍ୱ (ତୃତୀୟ ବାର) ୧୮୯୨—୧୮୯୪

୧୮୯୨ରେ ପାର୍ଲିମେଣ୍ଟର ସାଧାରଣ ନିର୍ବାଚନ ହୁଅନ୍ତେ ଗ୍ଲାଡଷ୍ଟୋନ ପୁନର୍ବାର କ୍ଷମତାଶାଳୀ ହୋଇଉଠିଲେ ଏବଂ ଲର୍ଡ ସଲିସ-ବରୀ ମନ୍ତ୍ରିତ୍ୱ ତ୍ୟାଗ କରନ୍ତେ ଗ୍ଲାଡଷ୍ଟୋନ ପୁନର୍ବାର ପ୍ରଧାନ ମନ୍ତ୍ରିତ୍ୱ ଗ୍ରହଣ କଲେ ।

ଗ୍ଲାଡ୍‌ଷ୍ଟୋନଙ୍କ ହୋମରୁଲ ବିଲ ଓ ତାହାର ପରିଣାମ

ଗ୍ଲାଡ୍‌ଷ୍ଟୋନ ମନ୍ତ୍ରିତ୍ୱ ଗ୍ରହଣ କରି ଆୟର୍ଲାଣ୍ଡର ହୋମରୁଲ ବିଲର କେତେକ ପରିବର୍ତ୍ତନ ସାଧନ କରି ତାହା ପୁନର୍ବାର ପାର୍ଲିମେଣ୍ଟରେ ଆଗତ କରିଥିଲେ । ଏହି ବିଲ ହାଉସ ଅଫ କମନସରେ ଗୃହୀତ ହୋଇଥିଲା; ମାତ୍ର ହାଉସ ଅଫ ଲର୍ଡସ୍‌ରେ ଏହା ପରିତ୍ୟକ୍ତ ହେଲା ।

ଗ୍ଲାଡ୍‌ଷ୍ଟୋନଙ୍କ ହୋମରୁଲ ବିଲ ପରିତ୍ୟକ୍ତ ହୁଅନ୍ତେ ସେ ଇଂଲଣ୍ଡର କେତେକ ଆଇନ ସଂସ୍କାରରେ ମନୋଯୋଗୀ ହୋଇଥିଲେ । ପ୍ରତ୍ୟେକ

ଗ୍ରାମ୍ୟ ସମିତି (The Parish Council)

ଗ୍ରାମ୍ୟ ବିଭାଗରେ ପୁରାତନ ଆଙ୍ଗ୍ଲୋ ସ୍ୟାକସନ-ମାନଙ୍କ ଗ୍ରାମ୍ୟ ସଭା ( Village moot ) ତୁଲ୍ୟ ଗୋଟିଏ ସମିତି ଗଠିତ ହୋଇ ସମସ୍ତ ସ୍ଥାନୀୟ ବିଷୟର ମୀମାଂସା ଓ ଅନ୍ୟାନ୍ୟ ଉନ୍ନତି କରିବାକୁ ଲାଗିଲା ।

୧୮୯୨ ରେ ପ୍ରିନ୍ସ ଅଫ ଓ୍ୱେଲ୍ସଙ୍କ ଜ୍ୟେଷ୍ଠପୁତ୍ର କ୍ଲାରେନ୍ସର ଡିଉକଙ୍କ ଇନ୍‌ଫ୍ଲୁଏଞ୍ଜା ରୋଗରେ ମୃତ୍ୟୁ ହେବାରୁ ତାହାଙ୍କର କନିଷ୍ଠ ଭ୍ରାତା ୟର୍କର ଡ଼ିଉକ ଇଂଲଣ୍ଡର ଭାବୀ ଉତ୍ତରାଧିକାରୀ ସ୍ଥିର ହୋଇଥିଲେ । ୧୮୯୩ରେ କୁମାରୀ ମେରୀଙ୍କ ସହିତ ତାହାଙ୍କର ପରିଣୟ କ୍ରିୟା ସମ୍ପନ୍ନ ହୋଇଥିଲା ଓ ୧୮୯୪ର ଜୁନ ମାସରେ ଯୁବରାଜ ଏଡ଼୍‌ୱାର୍ଡ଼ ଜନ୍ମଗ୍ରହଣ କଲେ ।

ୟର୍କର ଡ଼ିଉକଙ୍କ ବିବାହ

ହୋମରୁଲ ବିଲ୍ ପାଶ ହେବାର କୌଣସି ଆଶା ନ ଦେଖି ବାର୍ଦ୍ଧକ୍ୟ ହେତୁ ଗ୍ଲାଡ଼ଷ୍ଟୋନ ଶ୍ରୀଘ୍ର ପଦତ୍ୟାଗ କଲେ ଏବଂ ଲର୍ଡ ରୋଜବେରୀ ୧ବର୍ଷ ପାଇଁ ପ୍ରଧାନ ମନ୍ତ୍ରିତ୍ୱ ଲାଭ କରିଥିଲେ । ତାହାଙ୍କ ସମୟରେ ଇଂଲଣ୍ଡରେ ବିଶେଷ କୌଣସି ଘଟଣା ଘଟି ନାହିଁ । ତାହାଙ୍କ ଦଳର ସଂଖ୍ୟା ହ୍ରାସ ହୁଅନ୍ତେ ସେ ପଦତ୍ୟାଗ କଲେ ଓ ଲର୍ଡ ସଲସବରୀ ପ୍ରଧାନ ମନ୍ତ୍ରୀ ହେଲେ ।

ଗ୍ଲାଡଷ୍ଟୋନଙ୍କ ପଦତ୍ୟାଗ—୧୮୯୪

ସଲସବରୀଙ୍କ ମନ୍ତ୍ରିତ୍ୱ କାଳରେ ଇଂଲଣ୍ଡର ବୈଦେଶିକ ଓ ଔପନିବେଶିକ ସମ୍ବନ୍ଧ ପ୍ରାଧାନ୍ୟ ଲାଭ କରିଥିଲା । ସେଥି ମଧ୍ୟରୁ ଇଂଲଣ୍ଡ ସହିତ ଅଫ୍ରିକାର ସମ୍ବନ୍ଧ ବିଶେଷ ଉଲ୍ଲେଖଯୋଗ୍ୟ ।

ସଲସବରୀଙ୍କ ମନ୍ତ୍ରିତ୍ୱ ୧୮୯୫—୧୯୦୦

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ମିଶର ( Egypt ) ତୁରସ୍କ ସମ୍ରାଟଙ୍କ ଅଧୀନରେ ଥିଲେହେଁ ଏହାର ଶାସନକର୍ତ୍ତା ଇସମାଇଲ ପାଶା ପ୍ରକୃତରେ ସ୍ୱାଧୀନ ଥିଲେ । ବ୍ୟୟ ବାହୁଲ୍ୟ ହେତୁ ସେ ସୁଏଜ ଖାଲର ଅଂଶ ବିକ୍ରୟ କରନ୍ତେ ଇଂରେଜ ଓ ଫରାସୀମାନେ ସେଥିରୁ କେତେକ ଅଂଶ କ୍ରୟ କରିଥିଲେ । ମିଶରରେ ଇଂରେଜ ପ୍ରାଧାନ୍ୟର ସୂତ୍ରପାତ ହୋଇଥିଲା (୧୮୭୫) । ତଦନନ୍ତର ଇସମାଇଲ ପାଶାଙ୍କ ଋଣ

ଇଂଲଣ୍ଡ ଓ ଉତ୍ତର ଅଫ୍ରିକା

ହେତୁ ଶାସନ କାର୍ଯ୍ୟ ଅଚଳ ହୋଇପଡ଼ିବାରୁ ଇଂରେଜ ଓ ଫରାସୀମାନେ ସେଠାରେ ସ୍ୱ ସ୍ୱ ଆଧିପତ୍ୟ ସ୍ଥାପନ କରିଥିଲେ ; ମାତ୍ର ଆରବୀ ପାଶା ନାମକ ତତ୍ରସ୍ଥ ଏକ ସେନାନାୟକ ବୈଦେଶିକମାନଙ୍କ ପ୍ରଭୁତ୍ୱରେ କ୍ଷୁବ୍ଧ ହୋଇ ଏକ ସେନାଦଳ ଗଠନ କରି ବୈଦେଶିକମାନଙ୍କୁ ଦେଶରୁ ଦୂର କରିବା ଉଦ୍ଦେଶ୍ୟରେ ଆଲେକ୍‌ଜାଣ୍ଡ୍ରିଆ ଅଧିକାର କଲେ । ଏଥିରେ ଇଂରେଜମାନେ କ୍ଷୁବ୍ଧ ହୋଇ ସେଠାର କେତେକ ଦୁର୍ଗ ଅଧିକାରପୂର୍ବକ ଇଂରେଜ ପ୍ରାଧାନ୍ୟ ପ୍ରତିଷ୍ଠିତ କଲେ (୧୮୮୨) । ଫରାସୀମାନେ ଏହି ଯୁଦ୍ଧରେ ଯୋଗ ଦେଇ ନ ଥିବାରୁ ତାହାଙ୍କର କୌଣସି କ୍ଷମତା ରହିଲା ନାହିଁ ।

ସୁଦାନ ଯୁଦ୍ଧ
୧୮୮୩--୧୮୯୯

ମିଶରରେ ଇଂରେଜ ପ୍ରାଧାନ୍ୟ ପ୍ରତିଷ୍ଠିତ ହୁଅନ୍ତେ ସୁଦାନର ଲୋକମାନେ ମାହାଦ ଉପାଧିଧାରୀ ଏକ ବ୍ୟକ୍ତିଙ୍କ ଅଧୀନରେ ବିଦ୍ରୋହୀ ହୋଇଥିଲେ । ବିଦ୍ରୋହ ଦମନାର୍ଥ ଏକଦଳ ମିଶର ସୈନ୍ୟ ପ୍ରେରିତ ହୋଇଥିଲେ; ମାତ୍ର ମାହାଦଙ୍କଦ୍ୱାରା ଉକ୍ତ ସୈନ୍ୟଦଳ ବିଧ୍ୱସ୍ତ ହୋଇଥିଲେ । ତହୁଁ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ସେନାନାୟକ ଗର୍ଡନଙ୍କ ଅଧୀନରେ ଏକଦଳ ସୈନ୍ୟ ପ୍ରେରଣ କରିଥିଲେ । ଗର୍ଡନ କିନ୍ତୁ ଚତୁର୍ଦ୍ଦିଗରୁ ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ପରାସ୍ତ ଓ ନିହତ ହୋଇଥିଲେ (୧୮୮୫) ।

ସୁଦାନ ଅଧିକାର
୧୮୯୯

ଗର୍ଡନଙ୍କ ମୃତ୍ୟୁ ଅନ୍ତେ ଇଂରେଜମାନେ ସୁଦାନ ଅଧିକାରର କଳ୍ପନା ତ୍ୟାଗ କରି କେବଳ ମାତ୍ର ମିଶରରେ ସ୍ୱୀୟ ପ୍ରଭୁତ୍ୱ ଅକ୍ଷୁଣ୍ଣ ରଖିବାକୁ ଚେଷ୍ଟା କରିଥିଲେ ; ମାତ୍ର ସୁଦାନର ଲୋକମାନେ ସେଥିରେ ସନ୍ତୁଷ୍ଟ ନ ହୋଇ ମିଶରର ସୀମାନ୍ତ ପ୍ରଦେଶମାନ ଲୁଣ୍ଠନରେ ବ୍ୟାପୃତ ଥିଲେ । ମାହାଦଙ୍କ ମୃତ୍ୟୁ ଅନ୍ତେ ତାହାଙ୍କ ଉତ୍ତରାଧିକାରୀ ଖଲିଫା ଉପାଧି ଗ୍ରହଣପୂର୍ବକ ମିଶର ଆକ୍ରମଣ କରିବାକୁ ଲାଗିଲେ । ଇଂରେଜ

ସେନାନାୟକ କଚେନାର ମିଶର ସୈନ୍ୟମାନଙ୍କୁ ଇଉରୋପୀୟ ପ୍ରଣାଳୀରେ ଶିକ୍ଷିତ କରି ଖଲିଫାଙ୍କ ରାଜଧାନୀ ଓମଦୁରମାନ ଆକ୍ରମଣ କଲେ ( ୧୮୯୮ ) । ଖଲିଫା ପରାସ୍ତ ଓ ନିହତ ହୋଇଥିଲେ । ସୁଦାନ ମିଶର ସହିତ ଇଂରାଜ ପ୍ରାଧାନ୍ୟ ଗ୍ରହଣ କଲା ଏବଂ କଚେନାର ଲର୍ଡ ଉପାଧି ପ୍ରାପ୍ତ ହେଲେ (୧୮୯୯) ।

ନେପୋଲିୟନଙ୍କ ସହିତ ଇଂଲଣ୍ଡର ଯୁଦ୍ଧ ସମୟରେ ଇଂରାଜମାନେ କେପ କଲୋନି ଅଧିକାର କରି ଦକ୍ଷିଣ ଆଫ୍ରିକାରେ ବ୍ରିଟିଶ ପ୍ରଭାବର ସୂତ୍ରପାତ କରିଥିଲେ । ବୁଅର ନାମରେ ପରିଚିତ ତତ୍ରସ୍ଥ ଡଚମାନଙ୍କର ବଂଶଧରମାନେ କେପ କଲୋନି ତ୍ୟାଗ କରି ନେଟାଲକୁ ଯାଇ ସେଠାରେ ବାସ କରିବାକୁ ଲାଗିଲେ; ମାତ୍ର ଇଂରାଜମାନେ ୧୮୪୩ରେ ନେଟାଲ ଅଧିକାର କରି ତାହା ବ୍ରିଟିଶ ସାମ୍ରାଜ୍ୟଭୁକ୍ତ କରନ୍ତେ ବୁଅରମାନେ ଅରେଞ୍ଜ ନଦୀ ତୀରରେ ଏକ ସ୍ୱାଧୀନ ରାଜ୍ୟ ଓ ଟ୍ରାନ୍ସଭାଲ ନାମକ ସ୍ଥାନରେ ଏକ ସାଧାରଣତନ୍ତ୍ର ପ୍ରତିଷ୍ଠା କରିଥିଲେ ।

ଦକ୍ଷିଣ ଆଫ୍ରିକାରେ ବ୍ରିଟିଶ ପ୍ରାଧାନ୍ୟ

ଟ୍ରାନ୍ସଭାଲରେ ବହୁ ସ୍ୱର୍ଣ୍ଣଖଣି ଆବିଷ୍କୃତ ହୁଅନ୍ତେ ବହୁ ବୈଦେଶିକ ସେଠାରେ ଉପସ୍ଥିତ ହୋଇଥିଲେ । ବୁଅରମାନେ ଏହି ବୈଦେଶିକମାନଙ୍କୁ ସାଧାରଣତନ୍ତ୍ରର କୌଣସି ପ୍ରକାର ଅଧିକାର ପ୍ରଦାନ କରିବାକୁ ଅନିଚ୍ଛୁକ ହୁଅନ୍ତେ ଇଂରାଜମାନେ ତାହାର ପ୍ରତିବାଦ କରିବାକୁ ଲାଗିଲେ । ଜେମସନ ନାମକ ଦକ୍ଷିଣ ଆଫ୍ରିକାରେ ପ୍ରତିଷ୍ଠିତ ଏକ ବ୍ରିଟିଶ କମ୍ପାନୀର କର୍ମଚାରୀ ଉକ୍ତ ବୈଦେଶିକ (Uitlanders) ମାନଙ୍କ ସାହାଯ୍ୟାର୍ଥ ୫୦୦ ସଶସ୍ତ୍ର ପୁଲିଶ ସହ ଟ୍ରାନ୍ସଭାଲରେ ଉପସ୍ଥିତ ହେଲେ । ଟ୍ରାନ୍ସଭାଲ ସାଧାରଣତନ୍ତ୍ରର ସଭାପତି କ୍ରୁଗାର ତାହାଙ୍କୁ ପରାସ୍ତ କରି ବିଚାର ନିମିତ୍ତ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ହସ୍ତରେ ସମର୍ପଣ କଲେ । ବିଚାରରେ ସେ କାରାଦଣ୍ଡ ଲାଭ କରି

ବୁଅର ଯୁଦ୍ଧ ୧୮୯୯-୧୯୦୨

ଥିଲେ ସତ୍ୟ; ମାତ୍ର ବୁଅରମାନେ ଇଂରେଜମାନଙ୍କ ପ୍ରତି ବୀତଶ୍ରଦ୍ଧ ହୋଇ ସେମାନଙ୍କୁ ଦକ୍ଷିଣ ଆଫ୍ରିକାରୁ ଦୂର କରିବା ଉଦ୍ଦେଶ୍ୟରେ କେପକଲୋନି ଓ ନେଟାଲ ଆକ୍ରମଣ କଲେ (୧୮୯୯)।

ଯୁଦ୍ଧର ପ୍ରଥମ ଭାଗରେ ବୁଅରମାନେ ସର୍ବତ୍ର ଜୟୀ ହୋଇଥିଲେ। ନେଟାଲସ୍ଥ ଇଂରେଜ ସେନାନାୟକ ସାର ଜର୍ଜ ହ୍ୱାଇଟ ଲେଡ଼ିସ୍ମିଥ ନାମକ ସ୍ଥାନରେ ଅବରୁଦ୍ଧ ହୋଇଥିଲେ। ବୁଲର ନାମକ ଇଂରେଜ ସେନାନାୟକ ତାହାଙ୍କ ସାହାଯ୍ୟାର୍ଥେ ପ୍ରେରିତ ହୋଇ ବୁଅରମାନଙ୍କଦ୍ୱାରା ପରାସ୍ତ ହେଲେ। ଅବଶେଷରେ ଲର୍ଡ ରବାର୍ଟସ୍ ପ୍ରାୟ ଦୁଇଲକ୍ଷ ଇଂରେଜ ସୈନ୍ୟ ସହ ଦକ୍ଷିଣ ଆଫ୍ରିକାକୁ ପ୍ରେରିତ ହେଲେ। ସେ ଅରେଞ୍ଜ ସ୍ୱାଧୀନ ରାଜ୍ୟର ରାଜଧାନୀ ବ୍ଲୁମଫନ୍‌ଟେନ୍ ଓ ଟ୍ରାନ୍ସଭାଲର ରାଜଧାନୀ ପ୍ରିଟୋରିଆ ଅଧିକାର କଲେ। ଟ୍ରାନ୍ସଭାଲ ବ୍ରିଟିଶ ସାମ୍ରାଜ୍ୟଭୁକ୍ତ ହେଲା (୧୯୦୦)। ବୁଅରମାନେ କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ ହୋଇ ଇଂରେଜମାନଙ୍କ ସହିତ ଖଣ୍ଡ ଯୁଦ୍ଧ କରିବାକୁ ଲାଗିଲେ। ୧୯୦୧ ରେ ଲର୍ଡ ରବାର୍ଟ ଇଂଲଣ୍ଡ ପ୍ରସ୍ଥାନ କରନ୍ତେ ଦକ୍ଷିଣ ଆଫ୍ରିକାରେ ଶାନ୍ତିସ୍ଥାପନାର୍ଥେ ଲର୍ଡ କିଚେନାର ପ୍ରେରିତ ହେଲେ। ଅବଶେଷରେ ୧୯୦୨ରେ ପ୍ରିଟୋରିଆଠାରେ ବୁଅରମାନଙ୍କ ସହିତ ଏକ ସନ୍ଧି ହେବାରୁ ଯୁଦ୍ଧର ଅବସାନ ହେଲା।

ଯୁଦ୍ଧର ବିବରଣ

ଅଷ୍ଟ୍ରେଲିୟାରେ ପାଞ୍ଚଗୋଟି ଉପନିବେଶ ସ୍ଥାପିତ ହୋଇଥିଲା। ୧୮୯୭ ରେ ସମସ୍ତ ଉପନିବେଶଗୁଡିକ ଏକ ସାମ୍ରାଜ୍ୟଭୁକ୍ତ କରି ଏକ ପାର୍ଲିମେଣ୍ଟାଧୀନ କରିବାର ଉଦ୍ୟୋଗ ହେଲା। ୧୯୦୧ ରେ ଏହି ପ୍ରସ୍ତାବ କାର୍ଯ୍ୟରେ ପରିଣତ ହୋଇଥିଲା। ଅଷ୍ଟ୍ରେଲିଆର ସମସ୍ତ ଉପନିବେଶ ଏକ ସାମ୍ରାଜ୍ୟଭୁକ୍ତ ଓ ଏକ ପାର୍ଲିମେଣ୍ଟାଧୀନ ହେଲା। ଏହି ପାର୍ଲିମେଣ୍ଟର ସଭ୍ୟମାନେ ପ୍ରତି ତିନିବର୍ଷ ଅନ୍ତରେ ନିର୍ବାଚିତ ହେବାକୁ ଲାଗିଲେ। ଦେଶର ଶାସନ ନିମିତ୍ତ ପ୍ରତି ଉପନିବେଶରୁ ନିର୍ବାଚିତ ୬ ଜଣ ସଭ୍ୟଦ୍ୱାରା ଗଠିତ ଗୋଟିଏ ସିନେଟ ପ୍ରତିଷ୍ଠିତ ହେଲା। ଏହି

ଅଷ୍ଟ୍ରେଲିଆର ଯୁକ୍ତ ସାମ୍ରାଜ୍ୟ ୧୯୦୧

ସିନେଟର ସଭ୍ୟମାନେ ପ୍ରତି ୭ବର୍ଷ ଅନ୍ତରରେ ନିର୍ବାଚିତ ହେବାକୁ ଲାଗିଲେ । ବ୍ରିଟିଶ ସମ୍ରାଟଙ୍କ ପ୍ରତିନିଧି ସ୍ୱରୂପ ଏକଜଣ ଗଭର୍ଣ୍ଣର ନିଯୁକ୍ତ ହେଲେ ।

ଭିକ୍ଟୋରିଆଙ୍କ ମୃତ୍ୟୁ—୧୯୦୧

ଜାନୁଆରୀ ମାସ ତା ୨୨ରିଖ ଦିବସ ସନ୍ଧ୍ୟା ସମୟରେ ପୁତ୍ରପୌତ୍ରାଦି ପରିବେଷ୍ଟିତ ହୋଇ ତାହାଙ୍କର ବିଶାଳ ସାମ୍ରାଜ୍ୟର ପ୍ରଜାମାନଙ୍କୁ ଶୋକସାଗରରେ ଭସାଇ ଭିକ୍ଟୋରିଆ ଇହଧାମ ପରିତ୍ୟାଗ କଲେ ।

---

## ସପ୍ତମ ଏଡ଼ୱାର୍ଡ

ଜନ୍ମ—୧୮୪୧ । ବିବାହ—୧୮୬୩ । ରାଜତ୍ୱ—୧୯୦୧—୧୯୧୦ ।

ଏଡୱାର୍ଡ, ପୃଥିବୀର ଶାନ୍ତି-ସ୍ଥାପୟିତା (ପ୍ରିଟୋରିଆ ସନ୍ଧି)।

ସପ୍ତମ ଏଡୱାର୍ଡ ପୃଥିବୀର ଶାନ୍ତି-ସ୍ଥାପୟିତା ବୋଲି ବିଦିତ । ତାହାଙ୍କ ସିଂହାସନ ଆରୋହଣ ଉତ୍ତାରେ ଦକ୍ଷିଣ ଅଫ୍ରିକାରେ ବୁଅରମାନଙ୍କ ସହିତ ଇଂରେଜମାନଙ୍କର ଶାନ୍ତି ସ୍ଥାପନ ହୋଇଥିଲା ।

ଜାପାନ ସହ ସନ୍ଧି

ଜାପାନ ସହିତ ଇଂଲଣ୍ଡର ଏକ ସନ୍ଧିପତ୍ର ସ୍ୱାକ୍ଷରିତ ହୋଇ ସ୍ଥିର ହୋଇଥିଲା ଯେ, ଉଭୟ ଦେଶ ମଧ୍ୟରୁ ଯଦି କୌଣସି ଦେଶ ବୈଦେଶିକ ଯୁଦ୍ଧରେ ଲିପ୍ତ ହୁଏ, ତାହାହେଲେ ଅନ୍ୟ ଦେଶ ଶତ୍ରୁ ସହିତ ଯୋଗଦାନ ନ କରି ନିରପେକ୍ଷ ରହିବ । କିନ୍ତୁ ଯଦି କୌଣସି ଦେଶ ବହୁ ଶତ୍ରୁମାନଙ୍କ-ଦ୍ୱାରା ଆକ୍ରାନ୍ତ ହୁଏ, ତାହାହେଲେ ଅପର ଦେଶ ତାହାକୁ ସାହାଯ୍ୟ କରିବ (୧୯୦୨) ।



ସପ୍ତମ ଏଡୱାର୍ଡ

ଏନ୍‌ଟାଁତ କର୍ଡିଏଲ ( Entente Cordiale ) ଇଉରୋପରେ ସନ୍ଧି

ଇଉରୋପର ଅନ୍ୟାନ୍ୟ ଦେଶ ସହିତ ଇଂଲଣ୍ଡର ସଦ୍‌ଭାବ ନ ଥିଲା । ତୁରସ୍କ ହେତୁ ରୁଷିଆ, ମିଶର ହେତୁ ଫ୍ରାନ୍‌ସ ଏବଂ ଈର୍ଷାହେତୁ ଜରମାନୀ ଇଂଲଣ୍ଡର ଶତ୍ରୁ ହୋଇଥିଲେ । ଶାନ୍ତିସ୍ଥାପନାର୍ଥ ଏଡୱାର୍ଡ ଇଉରୋପର ବିଭିନ୍ନ ସାମ୍ରାଜ୍ୟରେ ଭ୍ରମଣ କରି ସେମାନଙ୍କୁ ମିତ୍ରତା-ସୂତ୍ରରେ ଆବଦ୍ଧ କରିଥିଲେ । ଫ୍ରାନ୍‌ସ, ରୁଷିଆ ଓ ଜରମାନୀ ଏହିରୂପେ ଇଂଲଣ୍ଡର ମିତ୍ରରୂପେ ପରିଣତ ହୋଇଥିଲେ ।

ଔପନିବେଶିକ ସମ୍ମିଳନୀ

ଉପନିବେଶମାନଙ୍କ ସହିତ ଇଂଲଣ୍ଡର ମିତ୍ରତା ରକ୍ଷା ନିମିତ୍ତ ପ୍ରତ୍ୟେକ ଉପନିବେଶରୁ ସଭ୍ୟ ବା ପ୍ରତିନିଧି ଆହୂତ ହୋଇ ଲଣ୍ଡନଠାରେ ଏକ ସମ୍ମିଳନୀ ହୋଇଥିଲା । ବ୍ରିଟିଶ ସାମ୍ରାଜ୍ୟର ନୌବହର ରକ୍ଷା ନିମିତ୍ତ କେଉଁ ଉପନିବେଶ କେତେ ପ୍ରଦାନ କରିବ, ତାହା ଏହି ସମ୍ମିଳନୀରେ ସ୍ଥିର ହୋଇଥିଲା ।

ବେଲଫୋରଙ୍କ ମନ୍ତ୍ରିତ୍ୱ ୧୯୦୨--୧୯୦୫

ଏଡୱାର୍ଡଙ୍କ ସିଂହାସନ ଆରୋହଣ ସମୟରେ ଲର୍ଡ ସଲ୍‌ସବେରି ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଥିଲେ; ମାତ୍ର ବାର୍ଦ୍ଧକ୍ୟ ହେତୁ ସ୍ୱାସ୍ଥ୍ୟଭଙ୍ଗ ହୁଅନ୍ତେ ସେ ପଦତ୍ୟାଗ କଲେ ଓ ଲର୍ଡ ବେଲ୍‌ଫୋର ପ୍ରଧାନ ମନ୍ତ୍ରିତ୍ୱ ଗ୍ରହଣ କଲେ । ତାହାଙ୍କ ଉତ୍ତାରେ ସାର ହେନରୀ କାମ୍ବେଲ ବର୍ନାଣ୍ଡମେନ ୧୯୦୮ ପର୍ଯ୍ୟନ୍ତ ପ୍ରଧାନ ମନ୍ତ୍ରୀ ଥିଲେ । ତଦନନ୍ତର ହାର୍ବାର୍ଟ ଅସ୍‌କୁଇଥ ୧୯୧୬ ପର୍ଯ୍ୟନ୍ତ ପ୍ରଧାନ ମନ୍ତ୍ରୀ କାର୍ଯ୍ୟ କରିଥିଲେ ।

୧୯୦୨ ଖ୍ରୀଷ୍ଟାବ୍ଦରେ ଗୋଟିଏ ନୂତନ ଏଡୁକେଶନ ଆକ୍ଟ (Education Act) ପାଶ ହେଲା । ଏତଦ୍ଦ୍ୱାରା ପୁରାତନ ସ୍କୁଲ ବୋର୍ଡ ପରିବର୍ତ୍ତେ

ଏକ ମନ୍ତ୍ରୀଙ୍କ ଅଧୀନରେ ବୋର୍ଡ ଅଫ୍ ଏଡୁକେଶନ ( Board of Education ) ପ୍ରତିଷ୍ଠିତ ହେଲା ଏବଂ ଶିକ୍ଷାର ଭାର କାଉଣ୍ଟି ଓ ବରୋ କାଉନ୍ସିଲ ଉପରେ ନ୍ୟସ୍ତ ହେଲା ।

୧୯୦୪ ଖ୍ରୀଷ୍ଟାବ୍ଦରେ ଆୟର୍ଲାଣ୍ଡ ପାଇଁ ଏକ ଜମି ଆଇନ ( Irish Land Act) ପାଶ ହେଲା । ଏତଦ୍ଦ୍ୱାରା ଆଇରିସ ପ୍ରଜାମାନେ ଗଭର୍ଣ୍ଣମେଣ୍ଟ-ଠାରୁ ଅର୍ଥ ପ୍ରାପ୍ତ ହୋଇ ଜମିଦାରମାନଙ୍କଠାରୁ ସ୍ୱ ସ୍ୱ ଜମି କ୍ରୟ କରି ଉକ୍ତ ଅର୍ଥ ଗଭର୍ଣ୍ଣମେଣ୍ଟକୁ ୬ ୮½ ବର୍ଷରେ ପରିଶୋଧ କରିବାର ଅଧିକାର ପାଇଲେ । ଗଭର୍ଣ୍ଣମେଣ୍ଟକୁ ବାର୍ଷିକ ଦେୟ, ପୁରାତନ ଖଜଣା-ହାରର ଅଧିକ ନୁହେ ।

୧୯୦୮ ରେ ଚିଲଡ୍ରେନ୍ସ ଆକ୍ଟ (Children's Act) ନାମକ ଏକ ଆଇନ ବିଧିବଦ୍ଧ ହୋଇ ଅଳ୍ପବୟସ୍କ ବାଳକବାଳିକାମାନଙ୍କର ଧୂମ୍ରପାନ ଓ ଅନ୍ୟାନ୍ୟ କେତେକ ମନ୍ଦ ଆଚରଣ ନିଷିଦ୍ଧ ହେଲା ।

ଉକ୍ତ ବର୍ଷ ବେଡେନ ପାଓଏଲଙ୍କ ଦ୍ୱାରା 'ବାଳଚର ଦଳ' ( Boy Scouts ) ଗଠିତ ହେଲା । କ୍ରୀଡ଼ା-ସୂତ୍ରରେ ସେମାନେ ଦୁଃସ୍ଥର ସେବା ଓ ପରସ୍ପରିକୁ ସାହାଯ୍ୟ କରିବାକୁ ଶିକ୍ଷା କଲେ । ଶ୍ରମଜୀବୀମାନଙ୍କ ମଙ୍ଗଳସାଧନାର୍ଥ କେତେଗୁଡ଼ିଏ ନିୟମ ମଧ୍ୟ ପ୍ରବର୍ତ୍ତିତ ହେଲା ।

୧ । ଟ୍ରେଡ ଡିସ୍ପିଉଟ ଆକ୍ଟ (Trade Dispute Act) ୧୯୦୬— ଏତଦ୍ଦ୍ୱାରା ଶ୍ରମଜୀବୀମାନେ ଶାନ୍ତିପୂର୍ଣ୍ଣ ଭାବରେ ଧର୍ମଘଟ ଓ ପିକେଟିଂ କରିବାର ଅଧିକାର ପ୍ରାପ୍ତ ହେଲେ ।

୨ । ଶ୍ରମଜୀବୀଙ୍କ କ୍ଷତିପୂରଣ ଆଇନ (Workmen's Compensation Act ) ୧୯୦୬ – ଏତଦ୍ଦ୍ୱାରା ଶ୍ରମଜୀବୀମାନେ କାର୍ଯ୍ୟରେ ନିଯୁକ୍ତ ଥିବା ସମୟରେ ଆଘାତପ୍ରାପ୍ତ ହେଲେ କିମ୍ବା କ୍ଷତିଗ୍ରସ୍ତ ହେଲେ ସ୍ୱୀୟ ପ୍ରଭୁଠାରୁ କ୍ଷତିପୂରଣ ଦାବି କରି ପାରିବେ ।

୩। କୋଇଲାଖଣି ଆଇନ (Coal-mine Act) ୧୯୦୮—ଏତଦ୍ଦ୍ୱାରା କୋଇଲା ଖଣିରେ କାର୍ଯ୍ୟ କରୁଥିବା ଶ୍ରମଜୀବୀମାନେ ଦୈନିକ ୮ ଘଣ୍ଟାରୁ ଅଧିକ କାର୍ଯ୍ୟ କରିବେ ନାହିଁ ସ୍ଥିର ହେଲା ।

୪। ପେନ୍‌ସନ୍ ଆଇନ୍ ( Old-age Pension Act ) ୧୯୦୮—ଏତଦ୍ଦ୍ୱାରା ୭୦ ବର୍ଷରୁ ଅଧିକ ବୟସ୍କ ଶ୍ରମଜୀବୀମାନେ ପ୍ରତି ସପ୍ତାହରେ ୫ ସିଲିଂଠାରୁ ୧ ସିଲିଂ ପେନ୍‌ସନ୍ ପାଇବାର ଅଧିକାରୀ ହେଲେ ।

୫। ଶ୍ରମିକ ପ୍ରତିଷ୍ଠାନ ( Labour Exchange ) ୧୯୦୯—ଏହି ପ୍ରତିଷ୍ଠାନ କାର୍ଯ୍ୟାନ୍ୱେଷୀ ଶ୍ରମିକମାନଙ୍କୁ କାର୍ଯ୍ୟ ଓ ଶ୍ରମିକ ନିଯୁକ୍ତ କରିବା ପ୍ରୟାସୀ ଲୋକମାନଙ୍କୁ ଶ୍ରମଜୀବୀ ଯୋଗାଇବା ଲାଗି ସ୍ଥାପିତ ହେଲା ।

୬। ଜାତୀୟ ଜୀବନବୀମା ନିୟମ ( National Insurance Act ) ୧୯୧୧—ଏତଦ୍ଦ୍ୱାରା ଶ୍ରମଜୀବୀମାନଙ୍କୁ ପୀଡ଼ିତାବସ୍ଥାରେ ଚିକିତ୍ସା ଓ ବେକାର ଅବସ୍ଥାରେ ଅର୍ଥ ସାହାଯ୍ୟ କରିବାର ବ୍ୟବସ୍ଥା କରାଗଲା ।

ଔପନିବେଶିକ ସେକ୍ରେଟେରୀ ଜୋସେଫ ଚେମ୍ବରଲେନ ଅବାଧ ବାଣିଜ୍ୟ ( Free trade ) ପରିବର୍ତ୍ତେ ଇଂଲଣ୍ଡର ଶିଳ୍ପ ରକ୍ଷାକଳ୍ପେ ଆମଦାନୀ ହେଉଥିବା ବାଣିଜ୍ୟ ଦ୍ରବ୍ୟର ଶୁଳ୍କ ବୃଦ୍ଧି କରି ଉପନିବେଶମାନଙ୍କ ସହିତ ସଦ୍‌ଭାବ ରକ୍ଷା ନିମିତ୍ତ ସେଗୁଡ଼ିକରୁ ଆମଦାନୀ ହେଉଥିବା ଦ୍ରବ୍ୟମାନଙ୍କର ଶୁଲ୍କ ରହିତ କରିବାକୁ ପ୍ରୟାସୀ ହୋଇଥିଲେ (Tariff Reform and Colonial Preference) । ମାତ୍ର ପ୍ରଧାନ ମନ୍ତ୍ରୀ ବେଲଫୋର ବିରୋଧୀ ହେବାରୁ ସେ ପଦତ୍ୟାଗ କଲେ ।

ସମର ବିଭାଗ ଓ ନୌବିଭାଗର କେତେକ ପରିବର୍ତ୍ତନ ମଧ୍ୟ ସାଧିତ ହୋଇଥିଲା । ପ୍ରଧାନ ସେନାପତିଙ୍କ ସ୍ଥାନରେ ସମର ପରିଷଦ

ସ୍ତବଗ ସୃଷ୍ଟି ହେଲା ଓ ନୌବାହିନୀର ପୁରାତନ ପୋତଗୁଡ଼ିକ ଧ୍ୱଂସ କରି ନୂତନ ରଣପୋତସମୂହ ନିର୍ମିତ ହେଲା ।

ସାଧାରଣ ସଭା ଓ ସାମନ୍ତ ସଭା ମଧ୍ୟରେ ବିବାଦ
୧୯୦୯—୧୯୧୦

ଏହି ସମୟରେ ସାଧାରଣ ସଭା ( House of Commons ) ଓ ସାମନ୍ତ ସଭା (House of Lords) ମଧ୍ୟରେ ଏକ ବିବାଦର ସୂତ୍ରପାତ ହେଲା । ଏହାର ପ୍ରଧାନ କାରଣ, ସାଧାରଣ ସଭାର ଅଧିକାଂଶ ସଭ୍ୟ ଉଦାରମତାବଲମ୍ବୀ (Liberals) ଥିଲେ; ମାତ୍ର ସାମନ୍ତ ସଭାର ଅଧି-କାଂଶ ରକ୍ଷଣଶୀଳ (Conservative)ଥିଲେ । ସୁତରାଂ ଉଭୟଙ୍କ ମଧ୍ୟରେ ପଦେ ପଦେ ମତାନ୍ତର ହେବାକୁ ଲାଗିଲା । ୧୯୦୬ ରେ ସାଧାରଣ ସଭାରେ ଗୃହୀତ ଶିକ୍ଷା ଆଇନ ( Education Bill ) ସାମନ୍ତମାନଙ୍କ ଦ୍ୱାରା କେତେକ ପରିମାଣରେ ପରିବର୍ତ୍ତିତ ହେଲା । ୧୯୦୮ରେ ପ୍ରଧାନମନ୍ତ୍ରୀ ଆସକୁଇଥ ମଦ କାରବାର ବିଷୟରେ କେତେକ ନିୟମ ପ୍ରଣୟନ କରିବାକୁ ଅଗ୍ରସର ହୁଅନ୍ତେ ତାହା ସାମନ୍ତମାନଙ୍କ ଦ୍ୱାରା ପରିତ୍ୟକ୍ତ ହେଲା ( Licensing Bill ) । ୧୯୦୯ ଖ୍ରୀଷ୍ଟାବ୍ଦରେ ଚାନସେଲର ଲଏଡ଼ ଜର୍ଜ ଦେଶର ଆୟବ୍ୟୟ ତାଲିକା (Budget—Finance Bill) ପାର୍ଲିମେଣ୍ଟରେ ଉପସ୍ଥାପିତ କଲେ । ସେଥିରେ ପେନସନ ଓ ନୌବାହିନୀର ବ୍ୟୟ ନିର୍ବାହାର୍ଥ ଭୂମିର କର ବୃଦ୍ଧି କରିବାର ପ୍ରସ୍ତାବ କରିଥିଲେ । ତାହା ପରିତ୍ୟକ୍ତ ହେଲା ଏବଂ ସାମନ୍ତମାନେ ଲୋକମତ ନିରୂପଣ ନିମିତ୍ତ ନୂତନ ସାଧାରଣ ନିର୍ବାଚନ କରିବାର ଇଚ୍ଛା ପ୍ରକାଶ କଲେ । ଏଥିରେ ସାଧାରଣ ସଭା କ୍ରୁଦ୍ଧ ହୋଇ ସ୍ଥିର କଲେ ଯେ, ଦେଶର ଅର୍ଥ ନୀତି (Money Bill)ଉପରେ ସାମନ୍ତ-ମାନଙ୍କର କୌଣସି ଅଧିକାର ରହିବ ନାହିଁ । ୧୯୧୦ ଖ୍ରୀଷ୍ଟାବ୍ଦରେ ସାଧାରଣ ନିର୍ବାଚନରେ ସାଧାରଣ ସଭାରେ ଉଦାରନୈତିକ ଦଳର ସଂଖ୍ୟାଧିକ୍ୟ ହେଲା ଏବଂ ଦେଶର ଆୟବ୍ୟୟ ତାଲିକା ( Finance Bill ) ଟି ମଞ୍ଜୁର ହେଲା ।

୧୯୧୦ ଖ୍ରୀଷ୍ଟାବ୍ଦରେ ସପ୍ତମ ଏଡୱାର୍ଡ ପରଲୋକ ଗମନ କରନ୍ତେ ତାହାଙ୍କ ପୁତ୍ର ପଞ୍ଚମ ଜର୍ଜ ୪୫ ବର୍ଷ ବୟସରେ ସିଂହାସନ ଅରୋହଣ କଲେ ।

---

## ପଞ୍ଚମ ଜର୍ଜ

୧୯୧୦—୧୯୩୬

( ଉଇଣ୍ଡସୋର ରାଜବଂଶ )



ପଞ୍ଚମ ଜର୍ଜଙ୍କ ସିଂହାସନ ଆରୋହଣ ଉତ୍ତାରେ ସାଧାରଣ ସଭା ସାମନ୍ତ ସଭାର କ୍ଷମତା ଲୋପ କରିବା ପାଇଁ ପାର୍ଲିମେଣ୍ଟ ଆକ୍ଟ ( Parliament Act ) ନାମକ ଗୋଟିଏ ଆଇନ ପ୍ରଣୟନ କରିବାକୁ ବଦ୍ଧପରିକର ହେଲେ ।

ପାର୍ଲିମେଣ୍ଟ ଆକ୍ଟ-୧୯୧୧

ସାମନ୍ତମାନେ ଏହାର ବିରୋଧୀ ହୋଇଥିଲେ; ମାତ୍ର ରାଜା ନୂତନ 'ପିୟାର' ( Peers ) ବୃଦ୍ଧି କରିବାକୁ ଅଗ୍ରସର ହୁଅନ୍ତେ ସାମନ୍ତମାନେ ବାଧ୍ୟ ହୋଇ ଏଥିରେ ସମ୍ମତି ପ୍ରଦାନ କଲେ । ନିମ୍ନଲିଖିତ ସର୍ତ୍ତଗୁଡ଼ିକ ପାର୍ଲିମେଣ୍ଟ ଆକ୍ଟରେ ସନ୍ନିବେଶିତ ଥିଲା ।

୧ । ଅର୍ଥନୀତି ବିଷୟରେ ( Money Bill ) ସାମନ୍ତ ସଭା ( House of Lord) ହସ୍ତକ୍ଷେପ କରିବେ ନାହିଁ ।

୨ । କୌଣସି ବିଲ ସାଧାରଣ ସଭାରେ ( House of Commons ) ତିନ ଥର ଗୃହୀତ ହେଲେ, ସେଥିରେ ସାମନ୍ତ ସଭା ( House of Lord ) ର କୌଣସି ଆପତ୍ତି ଗ୍ରାହ୍ୟ ହେବ ନାହିଁ ।

୩ । ସାଧାରଣ ନିର୍ବାଚିତ ପାର୍ଲିମେଣ୍ଟର ସ୍ଥିତିକାଳ ୭ ବର୍ଷ ସ୍ଥଳେ ୫ ବର୍ଷ ହେବ ।

୪ । ପାର୍ଲିମେଣ୍ଟର ସଭ୍ୟମାନେ ପ୍ରତ୍ୟେକେ ବାର୍ଷିକ ୪୦୦ ପାଉଣ୍ଡ ବୃତ୍ତି ପାଇବେ । (୧୯୩୨ରେ ଏହି ବୃତ୍ତି ବାର୍ଷିକ ୩୬୦ ପାଉଣ୍ଡ ହେବ ବୋଲି ନିର୍ଦ୍ଧିଷ୍ଟ ହେଲା) ।

ଏହି ପାର୍ଲିମେଣ୍ଟ ବିଲ ପାଶ କରିବାରେ ଜାତୀୟତାବାଦୀ ଆଇରିଶ୍ ଦଳ ପ୍ରଧାନ ମନ୍ତ୍ରୀ ଅସକୁଇଥଙ୍କୁ ଯଥେଷ୍ଟ ସାହାଯ୍ୟ କରିବାରୁ ପ୍ରତିଦାନସ୍ୱରୂପ ସେ ତୃତୀୟ ଆଇରିଶ ହୋମ ରୁଲ ଅନୁମୋଦିତ କରିଥିଲେ । ସାମନ୍ତ ସଭା ଏହି ବିଲ ତିନ ଥର ପ୍ରତ୍ୟାଖ୍ୟାନ କଲେହେଁ ପାର୍ଲିମେଣ୍ଟ ଆକ୍ଟ ବଳରେ ତାହା ଆଇନରେ ପରିଣତ ହୋଇଥିଲା । ମାତ୍ର ଏତଦ୍ଦ୍ୱାରା ଆୟର୍ଲାଣ୍ଡ ଦୁଇ ଭାଗରେ ବିଭକ୍ତ ହେଲା । ଦକ୍ଷିଣ

ଆୟର୍ଲାଣ୍ଡ ପାଇଁ ତୃତୀୟ ହୋମ ରୁଲ ବିଲ – ୧୯୧୨

ଅଂଶରେ ଜାତୀୟତାବାଦୀ ଅଲଷ୍ଟର ଦଳ ଏହି ହୋମ ରୁଲ ବିଲ ଗ୍ରହଣ କଲେ; ମାତ୍ର ଉତ୍ତରାଞ୍ଚଳରେ ପ୍ରୋଟେଷ୍ଟାଣ୍ଟ ଦଳ ଏହାର ଘୋର ବିରୋଧୀ ହୋଇ ଉଠିଲେ । ଏହି ସମୟରେ ଇଉରୋପରେ ମହାସମର (Great War) ଆରମ୍ଭ ହୁଅନ୍ତେ ଆଇରିଶମାନେ ସ୍ୱ ସ୍ୱ ବିବାଦ ଭୁଲି ଇଂଲଣ୍ଡର ସାହାଯ୍ୟାର୍ଥ ଜର୍ମାନୀ ବିରୁଦ୍ଧରେ ଅସ୍ତ୍ରଧାରଣ କଲେ; ମାତ୍ର ସିନଫିନ ନାମକ ଏକ ରାଜନୈତିକ ଦଳ ଆୟର୍ଲାଣ୍ଡରେ ଗୋଟିଏ ସ୍ୱାଧୀନ ସାଧାରଣତନ୍ତ୍ର ପ୍ରତିଷ୍ଠା ପାଇଁ ନାନା ପ୍ରକାର ଚେଷ୍ଟା କରୁଥିଲେ ।

୧୯୧୪ ଖ୍ରୀଷ୍ଟାବ୍ଦରେ ଇଉରୋପରେ ଏକ ବିଶ୍ୱବ୍ୟାପୀ ମହାସମର ଆରମ୍ଭ ହେଲା । ଏହାର କାରଣ ପୃଥିବୀ ଉପରେ ଜର୍ମାନୀର ଆଧିପତ୍ୟ ଲାଭର ଇଚ୍ଛା । ଏଥିପାଇଁ ସେ ଏହି ମହାସମରର ୫୦ ବର୍ଷ ପୂର୍ବରୁ ପ୍ରସ୍ତୁତ ହେଉଥିଲା । ୧୯୧୪, ୨୮ ଜୁନ, ସମର ଆରମ୍ଭର ଗୋଟିଏ ଉପଲକ୍ଷ ସୃଷ୍ଟି ହେଲା । ଅଷ୍ଟ୍ରିୟାର ଆର୍ଚ ଡ୍ୟୁକ ଫର୍ଡିନେଣ୍ଡ ସସ୍ତ୍ରୀକ ବସ୍‌ନିୟାର ରାଜଧାନୀ ସେରାଜେଭୋଠାରେ ନିହତ ହେଲେ । ଅଷ୍ଟ୍ରିଆ ଜର୍ମାନୀର ସାହାଯ୍ୟ ଲାଭ କରି ଯୁଦ୍ଧ ଆରମ୍ଭ କଲା । ସର୍ବିଆର ସ୍ଲାଭମାନଙ୍କ ରକ୍ଷାର୍ଥ ରୁଷିୟା ଅଗ୍ରସର ହେଲା ଏବଂ ରୁଷିଆର ବନ୍ଧୁ ଫ୍ରାନ୍‌ସ ଏଥିରେ ଯୋଗ ଦେଲା । ଜର୍ମାନୀ ବେଲଜିୟମର ପ୍ରତିବାଦ ଉପେକ୍ଷା କରି ତାହାର ମଧ୍ୟଦେଇ ଫ୍ରାନ୍‌ସ ଆକ୍ରମଣ କରିବାକୁ ଅଗ୍ରସର ହୁଅନ୍ତେ ସେ ତାଙ୍କୁ ବାଧା ଦେବାକୁ ଅଗ୍ରସର ହେଲେ । ଫଳରେ ବେଲଜିୟମ ବିଧ୍ୱସ୍ତ ହେଲା । ବେଲଜିୟମ ଓ ଫ୍ରାନ୍‌ସ ରକ୍ଷାର୍ଥ ଇଂଲଣ୍ଡ ଅଗ୍ରସର ହେଲା ଏବଂ ଇଂଲଣ୍ଡର ସାହାଯ୍ୟାର୍ଥ ଜାପାନ ଯୁଦ୍ଧରେ ଯୋଗ ଦେଲା । ଇଟାଲୀ ମଧ୍ୟ ମିତ୍ରଶକ୍ତିମାନଙ୍କ ସହିତ ୧୯୧୫ରେ ଯୋଗ ଦେଲା । ଜଳେ, ସ୍ଥଳେ ଅନ୍ତରୀକ୍ଷେ ଯୁଦ୍ଧ ଭୀଷଣ ଆକାର ଧାରଣ କଲା । ଇଂଲଣ୍ଡର ଉପନିବେଶ-ଗୁଡ଼ିକ ଆୟର୍ଲାଣ୍ଡ, ଭାରତବର୍ଷ ମିତ୍ରଶକ୍ତିଙ୍କ ସାହାଯ୍ୟାର୍ଥ ଅଗ୍ରସର ହେଲେ । ଏହି ଯୁଦ୍ଧରେ ଭାରତବର୍ଷ ଇଂଲଣ୍ଡକୁ ପ୍ରଚୁର ଅର୍ଥ, ସୈନ୍ୟ, ଖାଦ୍ୟ, ବସ୍ତ୍ର,

ମହାସମର
(Great war)
୧୯୧୪—୧୯୧୮

ଓ ଅନ୍ୟାନ୍ୟ ଯୁଦ୍ଧର ଉପକରଣ ଯୋଗାଇଥିଲା । ( ସୈନ୍ୟ—୧୦ ଲକ୍ଷ; ଅର୍ଥ ୧୦୦ କୋଟି ଟଙ୍କା ଓ ଭାରତୀୟ ରାଜାମାନଙ୍କ ଦ୍ୱାରା ପ୍ରଦତ୍ତ ୫୦ ଲକ୍ଷ ପାଉଣ୍ଡ ) ଏହି ଯୁଦ୍ଧରେ ଟ୍ରେଞ୍ଚଯୁଦ୍ଧ ( Trench Fighting ) ଆରମ୍ଭ ହେଲା । ଟ୍ୟାଙ୍କ, ଏରୋପ୍ଲେନ, ବୋମା, ବିଷାକ୍ତ ବାଷ୍ପ, ସବମେରିନ, ମାଇନ ପ୍ରଭୃତି ବ୍ୟବହୃତ ହୋଇ ଯେଉଁ ଲୋକକ୍ଷୟ ଓ ଧ୍ୱଂସ ସାଧନ କଲା, ତାହା ଅବର୍ଣ୍ଣନୀୟ । ଜର୍ମାନୀ ପୂର୍ବରୁ ଯୁଦ୍ଧାର୍ଥ ପ୍ରସ୍ତୁତ ଥିବାରୁ ମିତ୍ରଶକ୍ତିମାନଙ୍କର ବହୁ କ୍ଷତି ଓ ପରାଜୟ ଘଟିଥିଲା । ୧୯୧୬ ରେ ଆସକୁଇଥ ପଦତ୍ୟାଗ କରନ୍ତେ ଲଏଡ୍ ଜର୍ଜ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ହେଲେ । ସେ ଅତ୍ୟନ୍ତ ଦୃଢ଼ତାର ସହିତ ଯୁଦ୍ଧ ପରିଚାଳନ କରିବାକୁ ଲାଗିଲେ । ୧୯୧୭ ଖ୍ରୀଷ୍ଟାବ୍ଦରେ ରୁଷିଆରେ ଏକ ଅନ୍ତର୍ବିପ୍ଳବ ହେଲା । ଜାର ଦ୍ୱିତୀୟ ନିକୋଲାସ୍ ସିଂହାସନ ତ୍ୟାଗ କରି ପଳାୟନ କଲେ; ମାତ୍ର ଧୃତ ହୋଇ ସପରିବାର ନିହତ ହେଲେ । ଦେଶର ଗଣତନ୍ତ୍ରବାଦୀ 'ବଲସେଭିକ'-ମାନଙ୍କର ତାଣ୍ଡବ ଲୀଳା ଲାଗିଲା । ସେମାନେ ପୁରାତନ ଶାସନତନ୍ତ୍ର ଧ୍ୱଂସ କରି ନୂତନ ଗଣତନ୍ତ୍ରଶାସନ ପ୍ରତିଷ୍ଠା କରି ଜର୍ମାନୀ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହେଲେ । ଜର୍ମାନୀ ଓ ଅଷ୍ଟ୍ରିୟା ସର୍ବିୟା ଅଧିକାର କଲେ । ତୁରସ୍କ ଜର୍ମାନୀ ସହିତ ଯୋଗ ଦେଲା । ଅନ୍ତର୍ଜାତିକ ନିୟମ ଭଙ୍ଗ କରି ଜର୍ମାନୀ ସବମେରିନ, ମାଇନ ପ୍ରଭୃତି ସାହାଯ୍ୟରେ ବିଭିନ୍ନ ଦେଶର ବହୁ ବାଣିଜ୍ୟତରୀ ଧ୍ୱଂସ କଲା । ଅବଶେଷରେ ଆମେରିକାର ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ ଉଡ୍ରୋ ଉଇଲସନ୍ (Woodro Wilson) ଜର୍ମାନୀ ବିରୁଦ୍ଧରେ ମିତ୍ରଶକ୍ତିମାନଙ୍କ ସହିତ ଯୋଗ ଦେଲେ । ପ୍ରାୟ ୨ ଲକ୍ଷ ଆମେରିକାନ ସୈନ୍ୟ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ; କିନ୍ତୁ ଜର୍ମାନୀ ପରାଭୂତ ହେଲା ନାହିଁ । ଅବଶେଷରେ ଫରାସୀ ସେନାପତି ମାର୍ଶାଲ ଫକ୍ ସମସ୍ତ ମିତ୍ରଶକ୍ତିର ସେନାନାୟକ ନିଯୁକ୍ତ ହେଲେ । ଏକ ବ୍ୟକ୍ତି ଦ୍ୱାରା ଚାଳିତ ହେବାରୁ କ୍ରମେ ଯୁଦ୍ଧର ଗତି ପରିବର୍ତ୍ତିତ ହେଲା । ସର୍ବିୟା ମିତ୍ରଶକ୍ତିର ଅଧିକୃତ ହେଲା । ତୁରସ୍କ ମିତ୍ରଶକ୍ତିମାନଙ୍କ ସହିତ ସନ୍ଧି କରି ଯୁଦ୍ଧରୁ ନିବୃତ୍ତ ହେଲା । ଅଳ୍ପଦିନ ମଧ୍ୟରେ ଅଷ୍ଟ୍ରିୟା ମଧ୍ୟ ସେହି ପନ୍ଥା ଅବଲମ୍ବନ କଲା । ଜର୍ମାନୀ ନିଃସହାୟ ହୋଇ ଯୁଦ୍ଧ ଚଳାଇବାକୁ ଲାଗିଲା;

ମାତ୍ର ମିତ୍ରଶକ୍ତିମାନଙ୍କ ସମ୍ମୁଖରୁ କ୍ରମେ ତାହାଙ୍କୁ ପଶ୍ଚାତ୍ପଦ ହେବାକୁ ହେଲା । ଅବଶେଷରେ ଜର୍ମାନ ସୈନ୍ୟମାନେ ହିଣ୍ଡେନବର୍ଗ ଲାଇନରେ ଆଶ୍ରୟ ନେଇ ସନ୍ଧିର ପ୍ରସ୍ତାବ କଲେ । ୧୯୧୮ ନଭେମ୍ବର ୧୧ତାରିଖ ୧୧ଘଣ୍ଟା ସମୟରେ ଯୁଦ୍ଧସମାପ୍ତିର ଆଦେଶ ପ୍ରଚାରିତ ହେଲା । ଜର୍ମାନ ସମ୍ରାଟ କାଇଜର ହଲାଣ୍ଡରେ ଆଶ୍ରୟ ନେଲେ ।

୧୯୧୯ ଜୁନ ୨୮ତାରିଖରେ ମିତ୍ରଶକ୍ତିବର୍ଗଙ୍କର ଭର୍ସେଲସ୍‌ଠାରେ ଏକ ସମ୍ମିଳନୀ ହେଲା । ଏତଦ୍ଦ୍ୱାରା ଜର୍ମାନୀ ରାଜ୍ୟରକ୍ଷାର୍ଥ ଅଳ୍ପମାତ୍ର ସୈନ୍ୟ ରଖିବାର ଅଧିକାର ପାଇଲା ଓ ଫ୍ରାନ୍ସକୁ ଆଲ୍‌ସାସ ଲୋରେନ ପ୍ରଦେଶ ପ୍ରତ୍ୟର୍ପଣ କରିବାକୁ ପଡ଼ିଲା । ମିତ୍ରଶକ୍ତିମାନେ ଜର୍ମାନୀର ଉପନିବେଶ-ସମୂହ ଲାଭ କଲେ । ଅଷ୍ଟ୍ରିୟା ଓ ହଙ୍ଗେରୀ ରାଜ୍ୟରେ ସାଧାରଣତନ୍ତ୍ର ପ୍ରତିଷ୍ଠିତ ହେଲା । ଚେକୋସ୍ଲୋଭାକିଆ ପ୍ରଭୃତି କେତୋଟି ରାଜ୍ୟ ସ୍ୱାଧୀନତା ଲାଭ କଲେ । ପ୍ରେସିଡେଣ୍ଟ ଉଇଲସନଙ୍କ ପ୍ରସ୍ତାବ ଅନୁସାରେ ଯୁଦ୍ଧ ନିବାରଣ ଓ ପୃଥିବୀରେ ଶାନ୍ତି ସ୍ଥାପନ ନିମିତ୍ତ "ଗୋଟିଏ ରାଷ୍ଟ୍ରସଂଘ" ଗଠିତ ହେଲା, ୧୯୨୦ (League of Nations) । ଏହି ରାଷ୍ଟ୍ରସଂଘର ନିର୍ଦ୍ଦେଶମତେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ତୁରସ୍କ ଓ ଜର୍ମାନୀ ସାମ୍ରାଜ୍ୟର ଅନ୍ତର୍ଗତ ମେସୋପୋଟେମିୟା, ପାଲେଷ୍ଟାଇନ୍, ଟ୍ରାନ୍ସଜର୍ଡେନିୟା, ପୂର୍ବଆଫ୍ରିକା, ଟୋଗୋ ଲଣ୍ଡର ଶାସନଭାର ପ୍ରାପ୍ତ ହେଲେ ।

ଭର୍ସେଲସ ସନ୍ଧି (୨୮ଜୁନ, ୧୯୧୯)

ପ୍ରେସିଡେଣ୍ଟ ଉଇଲସନ୍ ସନ୍ଧିର ପ୍ରାକ୍‌କାଳରେ ୧୪ଟି ସର୍ତ୍ତ ନିର୍ଦ୍ଦେଶ କରିଥିଲେ (14 Points) । ତନ୍ମଧ୍ୟରୁ ୪ର୍ଥ ସର୍ତ୍ତ ଅନୁସାରେ ସ୍ଥିର ହୋଇଥିଲା ଯେ,ପୃଥିବୀରେ ଶାନ୍ତିସ୍ଥାପନାର୍ଥ ବିଭିନ୍ନ ଶକ୍ତିମାନେ ଯୁଦ୍ଧୋପକରଣ ହ୍ରାସ କରିବେ । ୧୯୨୧ରେ ପ୍ରେସିଡେଣ୍ଟ ହାର୍ଡ଼ିଂ ଆମେରିକାର ୱାସିଂଟନ୍‌ଠାରେ ଇଂଲଣ୍ଡ, ଫ୍ରାନ୍ସ, ଜାପାନ ପ୍ରଭୃତି ନୌଶକ୍ତିମାନଙ୍କୁ ନେଇ ଏକ ସମ୍ମିଳନୀ ଆହ୍ୱାନ କଲେ । ସେଥିରେ ପ୍ରଧାନ ଶକ୍ତିମାନେ ଯୁଦ୍ଧ

ଗୌରବର ହ୍ରାସ କରିବାକୁ ଅଙ୍ଗୀକାର କରିଥିଲେ । ୧୯୩୦ରେ ସମ୍ରାଟ ପଞ୍ଚମ ଜର୍ଜ ଲଣ୍ଡନଠାରେ ପୁନର୍ବାର ଏକ ସମ୍ମିଳନୀ ଆହ୍ୱାନ କରିଥିଲେ । ସେଥିରେ ମଧ୍ୟ ପ୍ରଧାନ ଶକ୍ତିବର୍ଗ ସ୍ୱ ସ୍ୱ ନୌବହର ହ୍ରାସ କରିବାକୁ ସ୍ୱୀକୃତ ହୋଇଥିଲେ; ମାତ୍ର ତାହା କାର୍ଯ୍ୟରେ ପରିଣତ ହୋଇ ନାହିଁ ।

ସ୍ତ୍ରୀଲୋକମାନଙ୍କର ଭୋଟାଧିକାର (Women's Suffrage)

ପାର୍ଲିମେଣ୍ଟର ସଭ୍ୟନିର୍ବାଚନ ବିଷୟରେ ସ୍ତ୍ରୀଲୋକମାନଙ୍କର ଭୋଟ ଦେବାର କ୍ଷମତା ନ ଥିବାରୁ ଦେଶର ଶିକ୍ଷିତା ମହିଳାମାନେ ଏକ ଆନ୍ଦୋଳନ ସୃଷ୍ଟି କରିଥିଲେ । ମହାସମର ସମୟରେ ମହିଳାମାନେ ଆହତ ସୈନ୍ୟମାନଙ୍କର ଶୁଶ୍ରୂଷା କରି ସର୍ବସାଧାରଣଙ୍କର କୃତଜ୍ଞତା ଅର୍ଜନ କରିଥିଲେ । ସୁତରାଂ ମହାସମର ଅବସାନ ହୁଅନ୍ତେ ୧୯୧୮ ଖ୍ରୀଷ୍ଟାବ୍ଦରେ ପ୍ରଧାନମନ୍ତ୍ରୀ ଲଏଡ଼ ଜର୍ଜଙ୍କ ସମୟରେ "ରିପ୍ରେଜେଣ୍ଟେସନ୍ ଅଫ୍ ଦ ପିପଲ୍ ଆକ୍ଟ" (Representation of the People Act) ନାମକ ଏକ ଆଇନ ପ୍ରବର୍ତ୍ତିତ ହେଲା । ଏତଦ୍ୱାରା ପୂର୍ଣ୍ଣବୟସ୍କ ସାଧାରଣ ଲୋକେ ଭୋଟର ଅଧିକାର ପାଇଲେ ଏବଂ ପ୍ରାୟ ୬୦ଲକ୍ଷ ମହିଳାଙ୍କୁ ଉକ୍ତ ଅଧିକାର ପ୍ରଦତ୍ତ ହେଲା । ଉକ୍ତ ବର୍ଷ ଫିସାରଙ୍କର ଶିକ୍ଷା ଆଇନଦ୍ୱାରା ଶିକ୍ଷା ଇଂଲଣ୍ଡରେ ବାଧ୍ୟତାମୂଳକ ହେଲା ଏବଂ ୫ବର୍ଷଠାରୁ ୧୪ବର୍ଷ ପ୍ରତ୍ୟେକ ବାଳକ ଶିକ୍ଷା ଲାଭ କରିବାକୁ ବାଧ୍ୟ ହେଲା । ପ୍ରାଥମିକ ସ୍କୁଲଗୁଡ଼ିକ ଅବୈତନିକ ହେଲା ।

ଭାରତ ଶାସନ ଆଇନ ୧୯୧୯

ମହାଯୁଦ୍ଧରେ ଭାରତବର୍ଷ ଇଂଲଣ୍ଡକୁ ଯଥେଷ୍ଟ ସାହାଯ୍ୟ କରି ଥିବାରୁ ୧୯୧୯ରେ ଭାରତରେ ଦ୍ୱୈଧ ଶାସନପ୍ରଣାଳୀ ପ୍ରଚଳିତ ହେଲା (Montague Chelmsford Reform) । ଏତଦ୍ୱାରା ଭାରତବାସୀମାନେ ଭାରତ ଶାସନ ବିଷୟରେ କେତେକ ଅଧିକାର ପାଇଲେ ।

**ଆଇରିଶ ଫ୍ରି ଷ୍ଟେଟ**

ଇଉରୋପୀୟ ମହାସମରର ଅବସାନ ହୁଅନ୍ତେ ଲଏଡ଼ ଜର୍ଜ ଆଇର୍ଲାଣ୍ଡକୁ ସନ୍ତୁଷ୍ଟ କରିବା ପାଇଁ ୧୯୨୦ ଖ୍ରୀଷ୍ଟାବ୍ଦରେ 'ଆଇର୍ଲାଣ୍ଡ ଶାସନ' ଆଇନ (Government of Ireland Act)ନାମକ ଏକ ଆଇନ ପ୍ରଣୟନ କଲେ; କିନ୍ତୁ ଏତଦ୍ଦ୍ୱାରା ସେଠାରେ ଗୋଟିଏ ଗୃହବିବାଦର ସୃଷ୍ଟି ହେଲା। ଅବଶେଷରେ ପ୍ରାୟ ଦୁଇବର୍ଷ ଗୃହବିବାଦ ଭିତରେ ୧୯୨୨ ଖ୍ରୀଷ୍ଟାବ୍ଦରେ ଆଇର୍ଲାଣ୍ଡର ଦକ୍ଷିଣଭାଗ ଆଇରିଶ ଫ୍ରି ଷ୍ଟେଟ ନାମ ଧାରଣ କରି ସ୍ୱତନ୍ତ୍ର ଶାସନ ଭାର ପ୍ରାପ୍ତ ହେଲା। ମାତ୍ର ଉତ୍ତର ଅଂଶ (ଅଲଷ୍ଟାର ପ୍ରଦେଶ) ବ୍ରିଟିଶ ଶାସନାଧୀନ ରହିଲା।

**ନୂତନ ଭାରତଶାସନ ଆଇନ—୧୯୩୫**

୧୯୧୯ ଖ୍ରୀଷ୍ଟାବ୍ଦର ଭାରତ ଶାସନ ଆଇନର କାର୍ଯ୍ୟକାରିତା ବିଷୟ ତଦନ୍ତ କରିବା ପାଇଁ ସାର ଜନ ସାଇମନଙ୍କ ନେତୃତ୍ୱରେ ୭ଜଣ ଇଂରାଜ ସଭ୍ୟଙ୍କ ଦ୍ୱାରା ଗଠିତ ଗୋଟିଏ ତଦନ୍ତ କମିଟି ନିଯୁକ୍ତ ହେଲା। ମାତ୍ର ଏହି କମିଟିରେ କୌଣସି ଭାରତୀୟ ସଭ୍ୟ ନ ଥିବାରୁ ଭାରତୀୟମାନେ ଇଂରାଜ ଓ ଭାରତୀୟ ସଭ୍ୟବୃନ୍ଦଙ୍କ ଗୋଟିଏ ଗୋଲଟେବୁଲ ବୈଠକ ପାଇଁ ପ୍ରାର୍ଥୀ ହେଲେ। ତଦନୁସାରେ ୧୯୩୦, ୩୧ ଓ ୩୨ରେ ଲଣ୍ଡନରେ ୩ଟି ଗୋଲଟେବୁଲ ବୈଠକ ହେଲା। ଏହାର ଫଳସ୍ୱରୂପ ୧୯୩୫ ଖ୍ରୀଷ୍ଟାବ୍ଦରେ ଏକ ନୂତନ ଭାରତ ଆଇନ ପ୍ରବର୍ତ୍ତିତ ହେଲା। ଏତଦ୍ଦ୍ୱାରା ସିନ୍ଧୁ ଓ ଓଡ଼ିଶା ଦୁଇଟି ନୂତନ ପ୍ରଦେଶ ଗଠିତ ହେଲା ଏବଂ ପ୍ରଦେଶମାନଙ୍କୁ କେତେକ ପରିମାଣରେ ସ୍ୱାୟତ୍ତଶାସନ ପ୍ରଦତ୍ତ ହେଲା।

**ରୌପ୍ୟଜୁବିଲି**

୧୯୩୫ ଖ୍ରୀଷ୍ଟାବ୍ଦରେ ସମ୍ରାଟ ପଞ୍ଚମଜର୍ଜଙ୍କର ରାଜତ୍ୱର ୨୫ବର୍ଷ ପୂର୍ଣ୍ଣ ହୁଅନ୍ତେ ସାମ୍ରାଜ୍ୟର ସର୍ବତ୍ର ମହାସମାରୋହରେ ରୌପ୍ୟଜୁବିଲି ଉତ୍ସବ ସୁସମ୍ପନ୍ନ ହେଲା।

ସମ୍ରାଟ ପଞ୍ଚମଜର୍ଜଙ୍କ ମୃତ୍ୟୁ

୧୯୩୬ ଖ୍ରୀଷ୍ଟାବ୍ଦ ଜାନୁୟାରୀ ତା ୨୦ ରିଖରେ ସମ୍ରାଟ ପଞ୍ଚମଜର୍ଜ ଇହଜଗତ ତ୍ୟାଗ କଲେ ।

---

## ଅଷ୍ଟମ ଏଡ୍‌ଓ୍ୱାର୍ଡ

### ୧୯୩୬

ଅଷ୍ଟମ ଏଡ୍‌ୱାର୍ଡଙ୍କ ସିଂହାସନ ତ୍ୟାଗ ଓ ଷଷ୍ଠ ଜର୍ଜଙ୍କ ସିଂହାସନଲାଭ

ସମ୍ରାଟ ପଞ୍ଚମଜର୍ଜଙ୍କ ମୃତ୍ୟୁ ହୁଅନ୍ତେ ତାହାଙ୍କର ଜ୍ୟେଷ୍ଠପୁତ୍ର ପ୍ରିନ୍‌ସ ଅଫ ଓ୍ୱେଲ୍‌ସ ଅଷ୍ଟମ ଏଡୱାର୍ଡ ଉପାଧି ସହ ସମ୍ରାଟ ବୋଲି ଘୋଷିତ ହେଲେ; ମାତ୍ର ତାହାଙ୍କର ବ୍ୟକ୍ତିଗତ ଅଧୀନତାରେ ବାଧ୍ୟ ପଡ଼ିବାରୁ ସେ ସିଂହାସନ ତ୍ୟାଗ କଲେ ଓ ତାହାଙ୍କର କନିଷ୍ଠ ଭ୍ରାତା ଡ୍ୟୁକ ଅଫ ୟର୍କ ଷଷ୍ଠ ଜର୍ଜ ଉପାଧି ପ୍ରାପ୍ତ ହୋଇ ୧୯୩୬ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କଲେ ।

---

## ପରିଶିଷ୍ଟ

### ଇଂଲଣ୍ଡର ରାଷ୍ଟ୍ରନୀତି, ପାର୍ଲିମେଣ୍ଟର ଅଧିକାର

ଷ୍ଟୁଆର୍ଟ ଯୁଗରେ ପାର୍ଲିମେଣ୍ଟ କ୍ଷମତାଶାଳୀ ହୋଇ ଉଠିଲା । ସେଥିରେ ଦୁଇଟି ଦଳ ସୃଷ୍ଟି ହେଲା । ମନ୍ତ୍ରୀମାନେ ସଂଖ୍ୟାଧିକ୍ୟ ଦଳରୁ ନିର୍ବାଚିତ ହେବାକୁ ଲାଗିଲେ ଓ କ୍ରମେ ରାଜକ୍ଷମତା ମନ୍ତ୍ରୀମାନଙ୍କ ହସ୍ତରେ ନ୍ୟସ୍ତ ହେଲା । ମନ୍ତ୍ରୀମାନେ ଉତ୍କୋଚ ପ୍ରଭୃତି ଦ୍ୱାରା ଭୋଟ ଦାତାମାନଙ୍କୁ ବଶୀଭୂତ କରି ସ୍ୱ ସ୍ୱ ଦଳର ଲୋକମାନଙ୍କ ମଧ୍ୟରୁ ପାର୍ଲିମେଣ୍ଟର ସଭ୍ୟ ନିର୍ବାଚିତ ହେବା ପାଇଁ ଯଥାସାଧ୍ୟ ଚେଷ୍ଟା କରୁଥିଲେ । କେବଳ

ଏବଙ୍ଗୀପନ୍ଥ ଲୋକମାନଙ୍କର ଭୋଟ ଦେବାର ଅଧିକାର ଥିଲା । ବରଂ କୃଷକ, ଶିଳ୍ପୀ, ଶ୍ରମଜୀବୀ ପ୍ରଭୃତିଙ୍କର ଭୋଟ ଦେବା ଅଧିକାର ନ ଥିଲା । ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡରେ ଶିଳ୍ପବିପ୍ଳବ ହେବାରୁ ବହୁ ପୁରାତନ ବର୍ଦ୍ଧିଷ୍ଣୁ ଗ୍ରାମ ପରିତ୍ୟକ୍ତ ହେଲା ଓ ବହୁ ନୂତନ ନଗର ସ୍ଥାପିତ ହେଲା । ମାତ୍ର ପୁରାତନ ନିୟମାନୁଯାୟୀ ପରିତ୍ୟକ୍ତ ଗ୍ରାମଗୁଡ଼ିକର ( Rotten Boroughs ) ସଭ୍ୟ ନିର୍ବାଚନ କ୍ଷମତା ଥିଲା । ନୂତନ ନଗରଗୁଡ଼ିକ ସେ କ୍ଷମତା ଲାଭ କରି ନ ଥିଲା । ସୁତରାଂ ଏହି ବିଷୟରେ ସଂସ୍କାର ଆବଶ୍ୟକ ହୋଇ ପଡ଼ିଲା । ଫଳସ୍ୱରୂପ ୧୮୩୨ ଖ୍ରୀଷ୍ଟାବ୍ଦରେ ପ୍ରଥମ ସଂସ୍କାର ଆଇନ (Reform Act) ପ୍ରବର୍ତ୍ତିତ ହେଲା । ଏତଦ୍ଦ୍ୱାରା ଧନୀ ଜମିଦାରମାନଙ୍କର ପ୍ରଭାବ ଲୁପ୍ତ ହୋଇ ମଧ୍ୟବିତ୍ତ ବ୍ୟକ୍ତିମାନଙ୍କର ପ୍ରଭାବ ସୁପ୍ରତିଷ୍ଠିତ ହେଲା । କିନ୍ତୁ ଏହି ସଂସ୍କାର ଦ୍ୱାରା ଶ୍ରମଜୀବୀମାନଙ୍କର କୌଣସି ସୁବିଧା ହେଲା ନାହିଁ । ସୁତରାଂ "ଚାର୍ଟିଷ୍ଟ" ଆନ୍ଦୋଳନ ଆରମ୍ଭ ହେଲା । ୧୮୬୭ ଖ୍ରୀଷ୍ଟାବ୍ଦରେ ଡିସ୍‌ରେଲିଙ୍କର ମନ୍ତ୍ରିତ୍ୱ କାଳରେ ଦ୍ୱିତୀୟ ସଂସ୍କାର ଆଇନଟି ପ୍ରବର୍ତ୍ତିତ ହେଲା । ଏତଦ୍ଦ୍ୱାରା ନଗର-ବାସୀ ଶ୍ରମଜୀବୀମାନେ ଭୋଟ ଅଧିକାର ଲାଭ କଲେ । ୧୮୭୨ରେ ଗ୍ଲାଡଷ୍ଟୋନଙ୍କ ପ୍ରଥମ ମନ୍ତ୍ରିତ୍ୱ କାଳରେ ବ୍ୟାଲଟ ଆଇନ ପ୍ରବର୍ତ୍ତିତ ହେବାରୁ ଭୋଟଦାତା-ମାନେ ଇଚ୍ଛାନୁଯାୟୀ ଭୋଟ ଦେବା ସୁବିଧା ଲାଭ କଲେ । ତତ୍ପରେ ୧୮୮୪ରେ ଗ୍ଲାଡଷ୍ଟୋନଙ୍କ ଦ୍ୱିତୀୟ ମନ୍ତ୍ରିତ୍ୱ କାଳରେ ତୃତୀୟ ସଂସ୍କାର ଆଇନ ପ୍ରବର୍ତ୍ତିତ ହୋଇ ପଲ୍ଲୀବାସୀ ଶ୍ରମଜୀବୀମାନଙ୍କୁ ଭୋଟ ଦେବା ଅଧିକାର ପ୍ରଦାନ କଲା ।

ପରବର୍ଷ ୧୮୮୫ରେ "ରିଡିଷ୍ଟ୍ରିବ୍ୟୁସନ ଅଫ ସିଟସ୍" (Redistribution of Seats) ନାମକ ଆଇନ ପ୍ରବର୍ତ୍ତିତ ହେଲା । ଏତଦ୍ଦ୍ୱାରା ଇଂଲଣ୍ଡ ସମାନ ସମାନ ନିର୍ବାଚନ ଅଞ୍ଚଳରେ ବିଭକ୍ତ ହେଲା । ୧୯୧୧ ଖ୍ରୀଷ୍ଟାବ୍ଦରେ "ପାର୍ଲିମେଣ୍ଟ ଆକ୍ଟ" ପ୍ରବର୍ତ୍ତିତ ହେବାରୁ ୭ ବର୍ଷ ପରିବର୍ତ୍ତେ ୫ ବର୍ଷ ଅନ୍ତରରେ ପାର୍ଲିମେଣ୍ଟରେ ନୂତନ ସଭ୍ୟ ନିର୍ବାଚିତ ହେଲେ; ପାର୍ଲିମେଣ୍ଟ ସଭ୍ୟମାନଙ୍କର ବାର୍ଷିକ ବୃତ୍ତି ନିର୍ଦ୍ଦିଷ୍ଟ ହେଲା ଓ ସାମନ୍ତମାନଙ୍କ (House of Lords)ର

କ୍ଷମତା ହ୍ରାସ ହୋଇ ସାଧାରଣ ସଭାର (House of Commons) କ୍ଷମତା ଯଥେଷ୍ଟ ବୃଦ୍ଧି ହେଲା । ଏଥିଉତ୍ତାରେ ୧୯୧୮ ଖ୍ରୀଷ୍ଟାବ୍ଦରେ "ଜନପ୍ରତିନିଧି ଆଇନ"(Representation of the People Act) ପ୍ରବର୍ତ୍ତିତ ହୋଇ ... ପ୍ରାୟ ୬୦ଲକ୍ଷ ମହିଳା ଭୋଟ ଦେବା ଓ ମେମ୍ବର ହେବା ଅଧିକାର ପାଇ... ଏବଂ ୧୯୨୮ରେ ୨୧ବର୍ଷରୁ ଊର୍ଦ୍ଧ୍ୱ ପ୍ରତ୍ୟେକ ସ୍ତ୍ରୀକୁ ଉକ୍ତ ଅଧିକାର ଦିଆ ହେଲା । ବର୍ତ୍ତମାନ ଇଂଲଣ୍ଡର ପ୍ରତ୍ୟେକ ବ୍ୟକ୍ତି ପାର୍ଲିମେଣ୍ଟର ସଭ୍ୟ ନିର୍ବାଚନ କ୍ଷମତା ଲାଭ କରିଅଛି ।

---

୧୮୩୨—ପ୍ରଥମ ସଂସ୍କାର ଆଇନ—(First Reform Act)
୧୮୬୭—ଦ୍ୱିତୀୟ ସଂସ୍କାର ଆଇନ—(Second Reform Act)
୧୮୭୨—ବ୍ୟାଲଟ ଅକ୍ଟ—(Ballot Act)
୧୮୮୪—ତୃତୀୟ ସଂସ୍କାର ଆଇନ (Third Refronr Act)
୧୮୮୫—ରେଡ଼ିଷ୍ଟ୍ରିବ୍ୟୁସନ ଅଫ୍ ସିଟସ୍ (Redistribution of Seats)
୧୯୧୧—ପାର୍ଲିମେଣ୍ଟ ଅକ୍ଟ (Parliament Act)
୧୯୧୮—ଜନପ୍ରତିନିଧି ଆଇନ (Representation of the People Act)
୧୯୨୮— " " "

---

THE END

Printed by M. A. Hadi, at the L. N. Press, Cuttack, 1939 -1000